# ସାରଳା କଥା ପ୍ରତିଭା

ସମ୍ପାଦନା ଓ ସଙ୍କଳନ :

ସାରଳା ସାହିତ୍ୟ ସଂସଦ



ଓଡ଼ିଶା ବୁକ୍ ଷ୍ଟୋର

ସାରଳା କଥା ପ୍ରତିଭା

ସମ୍ପାଦନା ଓ ସଙ୍କଳନ :
ସାରଳା ସାହିତ୍ୟ ସଂସଦ, କଟକ



ପ୍ରକାଶକ :
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ ୭୫୩ ୦୦୨

ପ୍ରଥମ ପ୍ରକାଶ :
ମାଘ ସପ୍ତମୀ, ୧୯୯୫

ପ୍ରଚ୍ଛଦ :
ଶିବ ପାଣିଗ୍ରାହୀ

ମୁଦ୍ରଣ :
ରେଖା ପ୍ରେସ
ବାଙ୍କି ସାହି, କଟକ-୯

**SARALA KATHA PRATIVA**

Published on behalf of
**Sarala Sahitya Sansad**

by
Govinda Charan Patra
**ORISSA BOOK STORE**
Cuttack-753 002

1st Edition
Magha Saptami, 1995

**Price : Rs. 50/-**

ISBN 81-7400-075-5

# ଭୂମିକା

ମହାକବି ସାରଳା ଦାସଙ୍କ ସ୍ମୃତି ରକ୍ଷାପାଇଁ ଓଡ଼ିଶାର ବାଣୀପୀଠ କଟକଠାରେ 'ସାରଳା ସାହିତ୍ୟ ସଂସଦ'ର ପ୍ରତିଷ୍ଠା । ଏହା ଓଡ଼ିଶାର ଏକ ଅଗ୍ରଗଣ୍ୟ ସାହିତ୍ୟାନୁଷ୍ଠାନ । ମହାକବି ସାରଳା ଦାସଙ୍କ ସ୍ମୃତିରକ୍ଷା ସହିତ ତାଙ୍କ ରଚିତ ମହାଭାରତ, ଚଣ୍ଡୀପୁରାଣ, ରାମାୟଣ ପ୍ରଭୃତିକୁ ଲୋକପ୍ରିୟ କରାଇବାରେ ଏହି ଅନୁଷ୍ଠାନ ଅନବରତ କାର୍ଯ୍ୟକରି ଆସିଛି । ଓଡ଼ିଆ ସାହିତ୍ୟର ବିଭିନ୍ନ ମହାରଥୀଙ୍କ ସ୍ମୃତିରକ୍ଷାରେ ଏହି ସଂସଦର ଭୂମିକା ଉଲ୍ଲେଖଯୋଗ୍ୟ । ସଂସଦ ପ୍ରତିଷ୍ଠାର ମାତ୍ର ତେରବର୍ଷ ପୂରିଛି । ଏତେ ଅଳ୍ପ ସମୟ ମଧ୍ୟରେ ସୀମିତ ସମ୍ବଳ ସତ୍ତ୍ୱେ ସଂସଦ ଊଣେଇଶ ଖଣ୍ଡ ପୁସ୍ତକ ପ୍ରକାଶ କରିସାରିଛି । ଏହି ପୁସ୍ତକଗୁଡ଼ିକ ହେଉଛି 'ସାରଳା ସାହିତ୍ୟ ସମୀକ୍ଷା', 'ମହାଭାରତର ପୃଷ୍ଠଭୂମି : ବ୍ୟାସଦେବ ଓ ସାରଳା ଦାସ', 'ସାରଳା ମହାଭାରତ ଚରିତ୍ର ଚିତ୍ରଶାଳା', 'ସାରଳା ମହାଭାରତର ଆଖ୍ୟାନ', 'ସାରଳା କଥା ସରିତ', 'ଆଦିକବି ସ୍ମରଣିକା', 'ସାରଳା କଥା କାନନ', 'ସାରଳା କଥା କଲ୍ଲୋଳ', 'ସାରଳା ସୃଷ୍ଟିର ଦିଗ ଦିଗନ୍ତ', 'ସାରଳା ଦାସ କଥା ସାଗର' (ହିନ୍ଦୀ), 'Stories from Sarala's Mahabharat', 'କଥା ଭାଗବତ', 'କଥା ରାମାୟଣ', 'ଉତ୍କଳର କବି ଜୟଦେବ', 'ଯୁଗପୁରୁଷ ଫକୀରମୋହନ', 'ଅଚ୍ୟୁତାନନ୍ଦ କଥା ସରିତ', 'ସାରଳା କଥା ବିତାନ', 'ଗଙ୍ଗାଧର କାବ୍ୟ ମାନସ', 'ନୃସିଂହ କଥା ସମ୍ଭାର' । ଚଳିତ ବର୍ଷ ଆଉ ଦୁଇଟି ନୂଆ ପ୍ରକାଶନ ହେଉଛି 'ସାରସ୍ୱତ ପୁରୁଷ ମଧୁସୂଦନ' ଓ 'ସାରଳା କଥା ପ୍ରତିଭା' ।

ଭକ୍ତକବି ମଧୁସୂଦନଙ୍କ କୃତି ଓ କୀର୍ତ୍ତିର ମୂଲ୍ୟାଙ୍କନମୂଳକ ଏକ ଆଲୋଚନାତ୍ମକ ପୁସ୍ତକ ସଂସଦ ଚଳିତ ବର୍ଷ ପ୍ରକାଶ କରୁଛି । ପୁନଶ୍ଚ

କବି ସାରଳା ଦାସଙ୍କ ଚଣ୍ଡୀପୁରାଣ ଓ ବିଲଙ୍କା ରାମାୟଣରେ ଥିବା କଥା-ଗୁଡ଼ିକୁ ଓଡ଼ିଶାର ଅଗଣିତ ପାଠକ ପାଠିକାଙ୍କ ନିକଟରେ ଏକ ଆଧୁନିକା ଗଳ୍ପ ସଂକଳନ ଆକାରରେ ପହଞ୍ଚାଇ ଦେବାର ଚେଷ୍ଟା କରିଛୁ ।

ସାରଳା ସାହିତ୍ୟ ସଂସଦର କାର୍ଯ୍ୟକଳାପ କେବଳ ପୁସ୍ତକ ପ୍ରକାଶନରେ ସୀମିତ ରହିନାହିଁ । ବିଗତ ବର୍ଷମାନଙ୍କରେ ସଂସଦ ପକ୍ଷରୁ ବହୁ ଆଲୋଚନାଚକ୍ର ଅନୁଷ୍ଠିତ ହୋଇସାରିଛି । ସିମଳାଠାରେ ମହାଭାରତ ଉପରେ ଜାତୀୟ ଆଲୋଚନାଚକ୍ର, କଲିକତାଠାରେ ସାରଳା ସାହିତ୍ୟ ଉପରେ ଅନୁଷ୍ଠିତ ସମ୍ମିଳନୀରେ ସଂସଦର ଯୋଗଦାନ ଉଲ୍ଲେଖନୀୟ । ଏତଦ୍‌ବ୍ୟତୀତ ବିଗତବର୍ଷ କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ସାରଳା ସାହିତ୍ୟ ସଂସଦର ମିଳିତ ଆନୁକୂଲ୍ୟରେ ସନ୍ଥ ସାହିତ୍ୟ ଶୀର୍ଷକ ଜାତୀୟ ଆଲୋଚନାଚକ୍ରର ଆୟୋଜନ ବହୁ ପ୍ରଶଂସିତ ପଦକ୍ଷେପ । ଅନୁଷ୍ଠାନର ସାମ୍ବତ୍ସରିକ ଉତ୍ସବମାନଙ୍କରେ ଆମ ଦେଶର ବହୁ ବିଦ୍ୱାନ ଓ ସ୍ୱନାମଧନ୍ୟ ସାହିତ୍ୟିକ ଯୋଗଦାନ କରି ଆମକୁ ଉତ୍ସାହିତ କରିଛନ୍ତି । ଯଥା କେନ୍ଦ୍ର ସାହିତ୍ୟ ଏକାଡେମୀର ପୂର୍ବତନ ସଭାପତି ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ଔପନ୍ୟାସିକ ଡଃ ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟ, କେନ୍ଦ୍ର ସାହିତ୍ୟ ଏକାଡେମୀର ସମ୍ପାଦକ ଡଃ ଇନ୍ଦ୍ରନାଥ ଚୌଧୁରୀ, ବିଶିଷ୍ଟ ହିନ୍ଦୀ ସାହିତ୍ୟିକ ଡଃ ନାମର୍ଓ୍ୱର ସିଂହ, ବିଶିଷ୍ଟ ବଙ୍ଗୀୟ କବି ଶ୍ରୀ ଆଶୀଷ ସାନ୍ୟାଲ୍, ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଡଃ ବିଶ୍ୱମ୍ଭର ନାଥ ପାଣ୍ଡେ, ମଣିପୁରର ପୂର୍ବତନ ରାଜ୍ୟପାଳ ଶ୍ରୀଯୁକ୍ତ ଚିନ୍ତାମଣି ପାଣିଗ୍ରାହୀ, ପ୍ରବୀଣ ସାହିତ୍ୟିକ ଓ ସାମ୍ବାଦିକ ଡଃ ରାଧାନାଥ ରଥ, ଲୋକସଭାର ପୂର୍ବତନ ବାଚସ୍ପତି ଶ୍ରୀଯୁକ୍ତ ରବି ରାୟ, ପ୍ରଖ୍ୟାତ ସାହିତ୍ୟିକ ଓ ଐତିହାସିକ ଡଃ ହରେକୃଷ୍ଣ ମହତାବ, ବିଶିଷ୍ଟ ଐତିହାସିକ ଡଃ ମନ୍ମଥ ନାଥ ଦାସ, ଭାଷାବିତ୍ ଡଃ ଦେବୀ ପ୍ରସନ୍ନ ପଟ୍ଟନାୟକ, ଜ୍ଞାନପୀଠ ପୁରସ୍କାରପ୍ରାପ୍ତ କବି ଶ୍ରୀ ସଚ୍ଚି ରାଉତରାୟ, ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ପ୍ରଖ୍ୟାତ ବଙ୍ଗୀୟ କବି ଶ୍ରୀ ସୁଭାଷ ମୁଖୋପାଧ୍ୟାୟ, ପ୍ରଖ୍ୟାତ ହିନ୍ଦୀ ସାହିତ୍ୟିକ ଡଃ ଶିବ ପ୍ରସାଦ ସିଂହ, ପ୍ରଫେସର ବାଲ୍‌ସୌରି ରେଡ୍‌ଡୀ ପ୍ରମୁଖ ।

ସାରଳା ସାହିତ୍ୟର ଗବେଷଣା କ୍ଷେତ୍ରରେ ଉଚ୍ଚତର ପରମ୍ପରା ସୃଷ୍ଟି କରିଥିବାରୁ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଡଃ

ବଂଶୀଧର ମହାନ୍ତିଙ୍କୁ ସଂସଦ ପକ୍ଷରୁ ସମ୍ବର୍ଦ୍ଧନା ଦିଆଯାଇଛି । ୧୯୮୭ରୁ ସାରଳା ସାହିତ୍ୟ ସଂସଦ 'ସାରଳା ସମ୍ମାନ' ପ୍ରଦାନ କରୁଛି । ବିଗତ ବର୍ଷମାନଙ୍କରେ ଏହି ସମ୍ମାନରେ ସମ୍ମାନିତ ହୋଇଥିବା ଗବେଷକ ଓ ସାହିତ୍ୟିକମାନେ ହେଉଛନ୍ତି ଡଃ କୃଷ୍ଣ ଚରଣ ସାହୁ, ଡଃ ଦୀନବନ୍ଧୁ ରଥ, ଡଃ କୁଞ୍ଜବିହାରୀ ତ୍ରିପାଠୀ, ଡଃ ସତ୍ୟନାରାୟଣ ରାଜଗୁରୁ, ପ୍ରଫେସର ଭୁବନେଶ୍ୱର ବେହେରା, ଚିତ୍ତରଞ୍ଜନ ଦାସ, ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତି, ଶ୍ରୀ ରାଜକିଶୋର ରାୟ । ଚଳିତ ବର୍ଷର 'ସାରଳା ସମ୍ମାନ' ବିଜେତା ହେଉଛନ୍ତି ଗବେଷକ ଓ ପ୍ରଖ୍ୟାତ ସାହିତ୍ୟିକ ଶ୍ରୀ ପଠାଣି ପଟ୍ଟନାୟକ ।

ସାରଳା ସାହିତ୍ୟ ସଂସଦର ବିଭିନ୍ନ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାରେ ସଂସଦର ମୁଖ୍ୟ ଉପଦେଷ୍ଟା ପ୍ରାକ୍ତନ ମୁଖ୍ୟ ନ୍ୟାୟାଧୀଶ ଶ୍ରୀ ରଙ୍ଗନାଥ ମିଶ୍ରଙ୍କ ପ୍ରେରଣା, ସଭାପତି ଶ୍ରୀ ବସନ୍ତ କୁମାର ବିଶ୍ୱାଳ, ସମ୍ପାଦକ ଇଞ୍ଜିନିୟର ପ୍ରଭାକର ସ୍ୱାଇଁ ପ୍ରମୁଖଙ୍କ ଉଦ୍ୟମ ଏହି ଅବକାଶରେ ସ୍ମରଣୀୟ ।

ଆଜି ପ୍ରକାଶିତ 'ସାରଳା କଥା ପ୍ରତିଭା' ଓଡ଼ିଶାର ବହୁ ପ୍ରଥିତଯଶା ଗାଳ୍ପିକଙ୍କ ଲେଖାରେ ସମୃଦ୍ଧ । ସେମାନଙ୍କୁ ମୋର ଅନ୍ତରର କୃତଜ୍ଞତା ଜ୍ଞାପନ କରୁଛି । ଓଡ଼ିଶାର ବିଶିଷ୍ଟ ପ୍ରକାଶକ 'ଓଡ଼ିଶା ବୁକ୍ ଷ୍ଟୋର'ର ସ୍ୱତ୍ୱାଧିକାରୀ ଶ୍ରୀ ଗୋବର୍ଦ୍ଧନ ଚରଣ ପାତ୍ର ଅକୁଣ୍ଠ ଚିତ୍ତରେ ଏହି ପୁସ୍ତକର ପ୍ରକାଶନ ଦାୟିତ୍ୱ ନେଇଥିବାରୁ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ସାଧୁବାଦ ଜଣାଉଛି ।

ସଂସଦର ଓ ମୋର ଆଶା, ଓଡ଼ିଶାର ଅଗଣିତ ପାଠକମାନଙ୍କ ଦ୍ୱାରା ଏହି ଗଳ୍ପ ପୁସ୍ତକଟି ବହୁଳଭାବରେ ଆଦୃତ ହେବ ।

ସହଦେବ ସାହୁ
ଉପଦେଷ୍ଟା
ସାରଳା ସାହିତ୍ୟ ସଂସଦ

କଟକ
ତା ୧୫ । ୨ । ୯୫ ରିଖ

# ସୂଚିପତ୍ର

## ଦ୍ୱିତୀୟ ଭାଗ





# ଆସୁରିକ ଶକ୍ତିର ଦୁର୍ବଳତା : ବୈଲୋଚନ ଚରିତ

ଶ୍ରୀ ସହଦେବ ସାହୁ

କାଳବିକାଳର ଆଖି ମୁହୂର୍ତ୍ତକ ପାଇଁ ବନ୍ଦ ହୋଇଗଲା । ଯୁଦ୍ଧର ଧାରାବିବରଣୀ ଯୋଗାଇବା ଲାଗି ସେମାନେ ନିଯୁକ୍ତ । ପର୍ବତ ପଛଆଡ଼େ ସେମାନେ ଦେଖୁଥିଲେ ।

ଦୂତର କାମରେ ଭାବପ୍ରବଣତାର ସ୍ଥାନ ନାହିଁ । ନମସ୍ୟ ବୀରମାନଙ୍କ ମୃତ୍ୟୁ ଅସହ୍ୟ ହେଲେ ହେଁ ଦୁଃଖ ଓ ଅଶ୍ରୁକୁ ସମ୍ଭାଳି ନେଲେ । କିନ୍ତୁ ଭୟ ଓ ଆଶଙ୍କାକୁ ଲୁଚାଇ ପାରିଲେ ନାହିଁ । ଶର ବେଗରେ ଧାଇଁଗଲେ ମହିଷର ଦରବାରକୁ ।

ସେମାନଙ୍କ ଆଖି ଆଗରେ କିଭଳି ବଡ଼ ବଡ଼ ବୀରମାନେ ନିଶ୍ଚିହ୍ନ ହୋଇଗଲେ କାଳବିକାଳ ବାଷ୍ପରୁଦ୍ଧ କଣ୍ଠରେ ବର୍ଣ୍ଣନା କଲେ ।

ରକ୍ତବୀର୍ଯ୍ୟ, ମଧୁ କୈଟଭ, ବୀରଷଣ୍ଡ, ବିଡ଼ାଳାକ୍ଷ, କାଳମାଳା, କାଳଦଣ୍ଡ ଓ ଭଟ ଆଦି ଯେତେ ବୀର ଥିଲେ, ସମସ୍ତେ ଦେବୀମାନଙ୍କ ସହ ଯୁଦ୍ଧରେ ପ୍ରାଣ ହରାଇଲେ । ସେମାନଙ୍କ ସଙ୍ଗରେ ଯେତେ ବଳ ଗଲେ, ସେମାନେ ମଧ୍ୟ ନିଶ୍ଚିହ୍ନ ହୋଇଗଲେ । ଚଣ୍ଡୀଚାମୁଣ୍ଡାମାନେ ସେମାନଙ୍କ ଅସ୍ଥି, ଚର୍ମ, ପିଣ୍ଡ, ବୃକ୍କ ଆଦି ପୋଛିନେଲେ । ରକ୍ତ ଟୋପାଏ ମଧ୍ୟ ଭୂଇଁରେ ପଡ଼ିଥିବାର ଦିଶିନାହିଁ । ପର୍ବତ ଉପରେ ଅଦ୍ଭୁତ ନାରୀଟିଏ ବସିଛି, ତାହାରି ନିର୍ଦ୍ଦେଶରେ ଏସବୁ ଯୁଦ୍ଧ ।

ଏଭଳି ମର୍ମନ୍ତୁଦ ବାର୍ତ୍ତା ଶୁଣି ମହିଷ ନିଜକୁ ସମ୍ଭାଳି ପାରିଲା ନାହିଁ । ଜଗତିରୁ ଖସିପଡ଼ିଲା । ବିମୋଚନ ତାକୁ କୋଳକରି ଧରିଲା । ମୁହଁରେ ଜଳ ସିଞ୍ଚିଲା ।

ଚେତନା ଫେରି ପାଇ ମହିଷ ଘରନିଃଶ୍ୱାସ ଛାଡ଼ିଲା । ସତେ ଯେପରି ତା'ର ଶେଷକାଳ ଆସିଯାଇଛି । ଅସୁର ପ୍ରକୃତି ଭିତରେ ମାନବୀୟ ପ୍ରକୃତି ଲୁଚି ରହିଛି ଏବଂ ଦୈବ ପ୍ରକୃତି ପାଇବାର ଇଚ୍ଛା ଅଛି । ମହିଷ ଅସୁର ରୂପେ ଖ୍ୟାତ ହେଲେ ବି ସ୍ୱର୍ଗ ଜିଣିଛି, ଦେବସୁଲଭ ଗୁଣଗୁଡ଼ିକୁ ଆସୁରିକ ଶକ୍ତିର ଆୟତ୍ତକୁ ଆଣିଛି ।

ମହିଷର ଚେତନା ଆସିବା ଦେଖି ଜଗତି ତଳେ ଠିଆ ହୋଇଥିବା ପ୍ରଜାଗଣ ବସି ପଡ଼ିଲେ । ମୀରା, ଉର୍ମିଳା, ହଜରାକ୍ଷ, ନମିରା ଆଦି ମଧ୍ୟ । ମହିଷାସୁର ଆଣ୍ଠେଇପଡ଼ିଲା, ମୁଣ୍ଡରେ ହାତ ଚାପିଡ଼ିଇ ହେଲା । ନିଜର ଦୁଃଖ ବାଣ୍ଟିନିଲା । ସମସ୍ତେ ଶୁଣୁଥାନ୍ତି ।

ଶୁଦ୍ଧ ଉଚ୍ଚକୁଳରେ ତା'ର ଜନ୍ମ । ପିତାମହ କଶ୍ୟପ ସାଧାରଣ ଲୋକ ନୁହନ୍ତି । ସେ ଜଣେ ମୁନି । ତାଙ୍କ ବଂଶଜ ଦକ୍ଷଙ୍କ ପୁତ୍ରୀ ସିଂହିକା । ଦୈବବିପାକରୁ ସେହିଠାରୁ ରାକ୍ଷସ ଜନ୍ମ । ମହିଷ କହିଗଲିଲା, ମୁଁ ରାହୁ ଅଂଶରେ ଜନ୍ମନେଲି । ସେହି କାରଣରୁ ଚନ୍ଦ୍ର ଓ ସୂର୍ଯ୍ୟ ମୋ'ର ବଇରି ହେଲେ । ତଥାପି ମୋ' ବଂଶରେ ଅଜସ୍ର ଅମର ବୀରମାନଙ୍କ ଜନ୍ମ । ମୁଁ ବା କମ୍ ହୁଅନ୍ତି କପରି ? ମୁଁ ବ୍ରହ୍ମାଙ୍କ ପୂଜାକରି ସ୍ୱର୍ଗ ଜିଣିବାର ସ୍ୱପ୍ନ ଦେଖିଲି ।

ମହିଷ ନିଜର ତପସ୍ୟା ବର୍ଣ୍ଣନା କଲା । ଦେହକୁ କଷ୍ଟ ଦେଇ ଘୋର ତପସ୍ୟା କରି ସେ ବ୍ରହ୍ମାଙ୍କୁ ଖୁସି କଲା । ବ୍ରହ୍ମା ବରଦେଲେ । ମହିଷ ବିଷ୍ଣୁଙ୍କ ହାତରେ ମରିବ ନାହିଁ । ରୁଦ୍ର, ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, ପବନ, ଯମ ଓ ଅଗ୍ନି ଆଦି ତାକୁ ହରାଇ ପାରିବେ ନାହିଁ । ପ୍ରଳୟକାଳ ପର୍ଯ୍ୟନ୍ତ ସେ ବୃଦ୍ଧ ହେବ ନାହିଁ । କେହି ତା' ସଙ୍ଗେ ଯୁଦ୍ଧକରି ଜିତିପାରିବେ ନାହିଁ । ନାଗପାଶ, କାଳପାଶ, ଜଳପାଶ ଦ୍ୱାରା ସେ ବଧ ହେବ ନାହିଁ । ସୁଦର୍ଶନ ଚକ୍ର, କାଳଚକ୍ର ବା ଭୂଷଣ୍ଡଚକ୍ର ପଡ଼ିଲେ ବି ତା'ର ଦେହ ଖଣ୍ଡିଆଖାବରା

ହେବନାହିଁ । ବ୍ରହ୍ମଶର, ପାଶୁପତ ଶର, ନାରାୟଣ ଶର ତା' ଦେହକୁ ଭେଦିବ ନାହିଁ । ବ୍ରହ୍ମା ସବୁକଥା ହଁ କରିଦେଲେ ।

ଏତକ କହିସାରି ମହିଷ ଅନୁତାପ କଲା, ମୁଁ ଏଡ଼େ ବୋକାଟେ ? ସବୁ ମାଗିଲି; କେବଳ ସ୍ତ୍ରୀ ହାତରେ ମରିବି ନାହିଁ ବୋଲି ମାଗିବାକୁ ଭୁଲିଗଲି । ସେପରି ମାଗିବା ଯେ ଦରକାର, ମୁଁ ଭୁଲିଗଲି ।

ମନ୍ତ୍ରୀ ଅନ୍ଧକ ଏସବୁ ଶୁଣୁଥିଲା ! କହିଲା, ପ୍ରଭୁ ତୋ' ବଂଶ ଇତିହାସ ତ ଏହିପରି । ତୋ' ବଂଶର ବୀରମାନେ ବେଶି ଗର୍ବୀ ହୋଇ ବରଗ୍ରହଣରେ ହାରିଛନ୍ତି । ତୁ ତାହିଁରୁ ବାଦ୍ ପଡ଼ିବୁ କିପରି ? ଶୁଣିବୁ ତୋ'ର ପୂର୍ବଜମାନଙ୍କ କଥା ?

ଅନ୍ଧକ ମହିଷ ବଂଶର ଇତିହାସ ବର୍ଣ୍ଣନା କଲା । ତୋ' ଉପର ବଂଶରେ ଶଙ୍ଖାସୁର ବୋଲି ଜଣେ ବୀର ଥିଲା । ସେ ବ୍ରହ୍ମାଙ୍କ ବେଦ ଚୋରି କରିନେଲା । ସମୁଦ୍ର ଭିତରେ ଲୁଚି ରହିଗଲା । ଋଷିଲୋକ, ମଣିଷ ବା ଦେବତା ତାକୁ ମାରିପାରିବେ ନାହିଁ । ଭଗବାନ ମାଛ ରୂପରେ ତା'ର ପ୍ରାଣ ନେଇ ବେଦ ଉଦ୍ଧାର କଲେ । ଶଙ୍ଖାସୁରର ପୁଅ କୁଣ୍ଡଳାସୁର ବି ଏହିଭଳି ଅମର ବର ମାଗିଥିଲା । ତାକୁ ଭଗବାନ କଇଁଛ ରୂପରେ ମାରିଥିଲେ । କୁଣ୍ଡଳାସୁରର ପୁଅ ଅବୃମା ବଡ଼ ଦର୍ପୀ । ତାକୁ ମଧ୍ୟ ନାରାୟଣ ମାରିଲେ । ଅବମାର ପୁଅ ହିରଣ୍ୟକଶିପୁ ନାରାୟଣଙ୍କ ଦ୍ୱାରା ନିହତ ହେବା କଥା ତ ତୁମେ ଜାଣୁ । ତା'ର ପୁଅ ପ୍ରହ୍ଲାଦ ମହା ବୈଷ୍ଣବ ଥିଲା । ପ୍ରହ୍ଲାଦର ପୁଅ ହେଲା ବୈରୋଚନ । ବୈରୋଚନ ଚରିତ ଅଜବ । ଅମାପ ବଳ ଓ ଆସୁରିକ ଶକ୍ତିକୁ ସ୍ତ୍ରୀଶକ୍ତି କିଭଳି ନଷ୍ଟ କରିପାରେ, ବୈରୋଚନର ଚରିତ ତାହାର ଏକ ଉତ୍କୃଷ୍ଟ ଉଦାହରଣ ।

ସୃଷ୍ଟିକର୍ତ୍ତାଙ୍କୁ ସେବାକରି ସେ ଅମର ବର ପାଇଥିଲା । ବ୍ରହ୍ମାଙ୍କ ବରରେ ତା'ରି ମୃତ୍ୟୁ ରହସ୍ୟ ତାକୁ ହିଁ ଜଣାଥିଲା । ଦେବ ଦାନବ ଦ୍ୱାରା ନିହତ ହେବ ନାହିଁ । ସ୍ୱୟଂ ବିଷ୍ଣୁ ଯୁଦ୍ଧରେ ହାରିବେ । ରାତିରେ ମରିବ ନାହିଁ କି ଦିନରେ ମରିବ ନାହିଁ । ଘରେ ମରିବ ନାହିଁ କି ବାହାରେ ମରିବ ନାହିଁ । ତାକୁ ହରାଇବାର ପୌରୁଷତ୍ୱ ଇନ୍ଦ୍ର, ଯମ, ପବନ, ବିଷ୍ଣୁ ଆଦି କାହାରିଠାରେ ନାହିଁ । ଏଭଳି ଦୁର୍ଲ୍ଲଭ ବର ପାଇଥିବା ବୈରୋଚନ

କାହାକୁ ବା ଡରନ୍ତା ? ପୁଣି ତା' ମୃତ୍ୟୁର ଭେଦ ଆଉ କେହି ଜାଣନ୍ତି ନାହିଁ । ନିଜ ମୁଠାରେ ନିଜ ମୃତ୍ୟୁର ରହସ୍ୟ ରଖି ବୈଲୋଚନ ଅମର ହୋଇଗଲା ବୋଲି ଭାବିନେଲା ।

ଅନ୍ଧକ ମନ୍ତ୍ରୀ କହି ଚାଲିଥାଏ । ବୈଲୋଚନର ଉପଦ୍ରବରେ ଦେବତା-ମାନେ ବଡ଼ କଲବଲ ହେଲେ । ମହାସମୁଦ୍ରରେ ଲୁଚିଲେ । ବିଷ୍ଣୁଙ୍କୁ ଗୁହାରି କଲେ । ସେମାନଙ୍କ ବିକଳ ଶୁଣି ବିଷ୍ଣୁ ସ୍ତ୍ରୀ ରୂପରେ ଅବତାର ହେଲେ । ତାଙ୍କର ନାମ ହେଲା ମାଳତି । ମାୟା ରୂପରେ ମାଳେନ୍ଦ୍ରୀ ବନରେ ବୁଲାବୁଲି କଲେ ।

ବୈଲୋଚନ ମୃଗୟା ପାଇଁ ଦିନେ ବନଯାତ୍ରା କଲା । ସବୁପ୍ରକାର ଶୁଭ ଲକ୍ଷଣ ଦେଖି ସେ ବନଯାତ୍ରା କରିଥାଏ । ସେ ଦିନ ବି କରିଥିଲା । ଦିନ ଥିଲା : କୁମ୍ଭ ଶୁକ୍ଳପକ୍ଷ ତ୍ରୟୋଦଶୀ ରବିବାର । ପୁଷ୍ୟା ଭୋଗି-ସାରିଛି । ଅଶ୍ଳେଷା ଦେଢ ପ୍ରହର ହୋଇଛି । ସେ ବାହାରିବା ବେଳକୁ ପ୍ରୀତିଯୋଗ । ବଣ ରାସ୍ତାରେ ବୁଲୁ ବୁଲୁ ମାଳତି ତା' ଆଖିରେ ପଡ଼ିଲା । କି ଅପରୂପ ସୌନ୍ଦର୍ଯ୍ୟ ? ବୈଲୋଚନ ମୋହିତ ହୋଇଗଲା । ମାଳତିକୁ ରାଣୀ କରିବାର ପ୍ରବଳ ଇଚ୍ଛା ବୈଲୋଚନକୁ ଆଗେଇନେଲା । ମାଳତି ସମ୍ମୁଖରେ ଉପସ୍ଥିତ ହୋଇ ବୈଲୋଚନ ଖୁବ ଅନୁନୟ ବିନୟ କଲା ।

ଅନ୍ଧକ କଥା ସମସ୍ତ ଅଟକିଗଲା । ମହିଷ ପଚାରିଲା, ତା'ପରେ କ'ଣ ହେଲା ? ଶୀଘ୍ର କୁହ ।

ଅନ୍ଧକ କହିଲା ! ଶୁମ୍ଭ ତୋ' ବଂଶର ଇତିହାସ ତ ଏହି ପ୍ରକାରରି । ସମସ୍ତ ସ୍ତ୍ରୀମାନଙ୍କ ହାତରେ ମରିଛନ୍ତି । ଚଣ୍ଡ, ମୁଣ୍ଡ, ଶୁମ୍ଭ, ନିଶୁମ୍ଭ ଭଳି ପରାକ୍ରମୀ ସେନାପତିମାନେ ସ୍ତ୍ରୀମାନଙ୍କ ମୋହ ଫାଶରେ ବାନ୍ଧିହୋଇ ମରିଛନ୍ତି । ସୁନ୍ଦରୀ ସ୍ତ୍ରୀ ପାଇବାର ଲୋଭ ସେମାନଙ୍କର ମୃତ୍ୟୁର କାରଣ ହୋଇଛି । ପର୍ବତ ଉପରେ ସେଇଁ ଅଦ୍ଭୁତ ନାରୀଟିଏ ବସିଛି ବୋଲି ତୁ ଶୁଣିଛୁ, ଏସବୁ ତାହାରି କୃତି ।

ଏ ପର୍ଯ୍ୟନ୍ତ ଶୁମ୍ଭ ନାରୀଚରିତ୍ର ବୁଝିପାରି ନାହିଁ । ଯୁଗଯୁଗରେ ନାରୀଙ୍କ ଚରିତ୍ର ଓ ଚରିତ ଏଭଳି । ତୋତେ ଏ ବିଷୟରେ କ'ଣ ବା ବୁଝେଇବି ?

ମହର୍ଷ ପଚ୍ଚରିଲ୍, ତାହାହେଲେ ବୈଲୋଚନ ମାଳତିକୁ ପାଇଲ କପରି ?

ଅନ୍ଧକ ଉତ୍ତର ଦେଲ, ବୈଲୋଚନ ଖୁବ୍ କାର୍ପଣ୍ୟ କଲ । ବହୁତ ଅନୁନୟ ବିନୟ କଲ ।

ଶେଷରେ ମାଳତି ରାଜହେଲ, କିନ୍ତୁ ଗୋଟିଏ ସର୍ତ୍ତରେ । ବୈଲୋଚନ ସତ୍ୟ କରିବ ଯେ ସେ ଅନ୍ୟ କୌଣସି ସ୍ତ୍ରୀକୁ ପାଖରେ ରଖିବ ନାହିଁ ।

କାମାଗ୍ନିରେ ଜଳୁଥିବା ବୈଲୋଚନ ସତ୍ୟକଲ । ସହସ୍ର ସଙ୍ଗିନୀକୁ ତ୍ୟାଗ କଲ ।

ମାଳତିକୁ ହାଦୋଳାରେ ବସାଇ ରାଜଧାନୀକୁ ଆଣିଲ । ସବୁ ସ୍ତ୍ରୀମାନଙ୍କୁ ଦୂରେଇ ଦେଲ ।

ଅନ୍ଧକ ଚୁପ ହୋଇଗଲ ଢେଁପ ଢୋକିଲ ।

ମହର୍ଷ ଅତି ଉତ୍ସୁକ ହୋଇ ପଚ୍ଚରିଲ : ତା'ପରେ କ'ଣ ହେଲ ?

ଅନ୍ଧକ କହିଲ : ସବୁ କଥା ବର୍ଣ୍ଣନା କରି କହିବାକୁ ସମୟ ନାହିଁ । ସଂକ୍ଷେପରେ କହୁଛୁ । ସେତେବେଳେ ମୁଁ ବୈଲୋଚନର ମନ୍ତ୍ରୀ ଥିଲ । ମାଳତି ଭଳି ନାରୀ ରତ୍ନ ମୁଁ ଦେଖି ନ ଥିଲ । ମୁଁ ତ କହୁଛି ସମସ୍ତ ତା' ରୂପ ଦେଖି ମୋହିତ ହୋଇଗଲ । ବୈଲୋଚନ ତ ସହଜେ ତା' ମୋହରେ ଆତ୍ମହରା ହୋଇଥିଲ ।

ବୈଲୋଚନ ରାଜ୍ୟ ଚିନ୍ତା ଛାଡ଼ିଦେଲ । ମୋ' ଉପରେ ସବୁ ଅର୍ପିଦେଲ । ସବୁବେଳେ ମାଳତି ପାଖରେ ରହିଲ । ଦିବା ରାତ୍ର ପ୍ରଭେଦ ବାରିଲ ନାହିଁ ।

କାଳକ୍ରମେ ମାଳତି ଗର୍ଭବତୀ ହେଲ । ବୈଲୋଚନ ରାଜ୍ୟସାରା ଖୁବ୍ ମେଳା ମହୋତ୍ସବ କଲ । ଯଜ୍ଞ ଓ ହୋମଆଦି କର୍ମ ସହିତ ବନ୍ଦାପନା ଅରିଷ୍ଟଶାନ୍ତ ଯଜ୍ଞ ଓ କର୍ମସିଦ୍ଧି ଉପାସନା ଆଦି କଲ । ବହୁତ ଦାନ ଧର୍ମ କଲ ।

କ୍ରମେ କ୍ରମେ ମାଳତୀର ଗର୍ଭ ନଅମାସ ହୋଇଗଲା । ବୃଷମାସ କୃଷ୍ଣପକ୍ଷ ଏକାଦଶୀ ଦିନ ବୈଚିତ୍ରୀଚନର ଜୀବନରେ ନୂଆ ମୋଡ଼ ଆସିଲା । ସେଦିନ ସେ ମାଳତୀକୁ କୋଳରେ ଧରି ପ୍ରେମସମ୍ଭାଷଣ କରୁଥାଏ । ମାଳତୀ ଅତି ସ୍ନେହରେ ମୃଗଚର୍ମଗୋଟିଏ ମାଗିଲା ।

ବୈଲୋଚନ ଚିନ୍ତାରେ ପଡ଼ିଲା । ଯେଉଁ ମାଳତୀକୁ ସେ ମୁହୂର୍ତ୍ତକ ଲାଗି ପାଖଛଡ଼ା କରୁ ନାହିଁ, ତାକୁ ଛାଡ଼ି ଏକା ଏକା ଯିବାକୁ ମନ ହେଉ ନାହିଁ । କହିଲା, ପ୍ରିୟତମ ! ତୁମେ ଯାହା ମାଗୁଛ ତାହା ଆଣିଦେବି । କିନ୍ତୁ ତୁମକୁ ଛାଡ଼ି ବନକୁ ଯିବାକୁ ଆଦୌ ଇଚ୍ଛା ହେଉ ନାହିଁ ।

ମାଳତୀ ମଧ୍ୟ ଅନୁରୂପ ପ୍ରେମସମ୍ଭାଷଣ କଲା । ତୁମକୁ ଛାଡ଼ି ମୋର ବି ଏକୁଟିଆ ରହିବାକୁ ଇଚ୍ଛା ହେଉ ନାହିଁ । କ'ଣ କରିବି ? ମୃଗ ଚର୍ମଗୋଟିଏ ପାଇବାକୁ ମୋର ଭାରି ଇଚ୍ଛା ହେଉଛି । ଯଦି ତୁମେ ବେଣ୍ଟ-ବିନୋଦନ ଲାଗି ବନକୁ ଯିବ, ତୁମେ ନ ଆସିବା ଯାଏ ମୁଁ ସ୍ନାନ, ଭୋଜନ ସବୁ ଛାଡ଼ିଦେବି । ଶିକାରରୁ ଫେରିବା ବାଟକୁ ଚାହିଁ ରହିଥିବି ।

ଠିକଏ ଥମିଯାଇ ଅନ୍ଧକ ନିଜର ମନ୍ତବ୍ୟ ଦେଲା । ଛିମୁ ! ନାରୀ ଚରିତ୍ର କପରି ଦେଖ । ଉପରେ ପୀରତି ଦେଖାଇ ଭିତରେ ଭିତରେ ବିଶ୍ୱାସଘାତକତା କରନ୍ତି । ମାଳତୀ ବୈଲୋଚନକୁ ମାରିବା ଲାଗି କୂଟ ପାଞ୍ଚିଥିଲା, ଏ କଥା ବୈଲୋଚନକୁ ଜଣା ନଥିଲା । ଭୂତ ଭବିଷ୍ୟ ଜାଣିବାର ବର ବୈଲୋଚନ ପାଇଥିଲା । କିନ୍ତୁ ସ୍ତ୍ରୀ ମୋହରେ ସେ ଗଣନା କରିବାର ଅବସର ହରାଇଥିଲା ।

ବୈଲୋଚନର ପ୍ରତ୍ୟୁତ୍ତର ଆଣିବା ଲାଗି ମାଳତୀ ଖୁବ୍ ଦୁଃଖୀ ହୋଇଗଲା ଭଳି ଅଭିନୟ କଲା । କହିଲା; ତୁମ ବିନା ମୁଁ ଜୀବନ ଧରି ରହିପାରିବି ନାହିଁ । ଅଗମ୍ୟ ବନସ୍ତକୁ ଯିବ ଯେ ଯଦି କିଛି ଅସୁବିଧା ଘଟିଲା; କି ବିପଦ ପଡ଼ିଲା, ମୁଁ ଜାଣିବି କପରି ?

ବୈଲୋଚନ ବାହାସ୍ଫୋଟ ମାରି କହିଲା, ମୋତେ ମାରିବାକୁ କେହି ଜନ୍ମହୋଇ ନାହିଁ । ବ୍ରହ୍ମା ମୋତେ ବର ଦେଇଛନ୍ତି, ଅସ୍ତ୍ରଶସ୍ତ୍ରରେ ମରିବି ନାହିଁ । ଯମର କାଳଦଣ୍ଡରେ ବି ମୁଁ ଅବଧ୍ୟ । ଇନ୍ଦ୍ର, କୁବେର ଆଦିକୁ ଯୁଦ୍ଧରେ ହରାଇଦେବି । ନିଆଁରେ ପୋଡ଼ିବି ନାହିଁ କି ପାଣିରେ

ଗୁଡ଼ିବ ନାହିଁ । ଚନ୍ଦ୍ର, ସୂର୍ଯ୍ୟ, ବାୟୁ ଆଦି ଦେବଦେବୀମାନେ ମୋ' ସରି ହେବେ ନାହିଁ । ମୋ' ଦେହ ଅକାଟ, ଅଭୁଟ ରହିବ । ମୁଁ ଭୂତ ଭବିଷ୍ୟତ ଜାଣିଛି । ଆଉ ମାୟା, ଅମାୟା ଭିତରେ ପ୍ରଭେଦ ଜାଣିଛି । ରାତିରେ ମରିବ ନାହିଁ କି ଦିନରେ ମରିବ ନାହିଁ । ଘରେ ମରିବ ନାହିଁ କି ବାହାରେ ମରିବ ନାହିଁ । ବିଷ୍ଣୁ ମଧ୍ୟ ମୋତେ ମାରିପାରିବ ନାହିଁ । ତେଣୁ ମୋ'ର କି ବିପଦ ଆସିବ ?

ତା'ପରେ ବୈଲୋଚନ ନିଜ ମୃତ୍ୟୁର ରହସ୍ୟ ଖୋଲିଦେଲା । ମୋ ମୁଣ୍ଡ ବାଳ ଭିତରେ ଗୋଟିଏ ପିଙ୍ଗଳ ବର୍ଣ୍ଣର ବାଳ ଅଛି । ଦିନ ହୋଇ ନଥିବ କି ରାତି ହୋଇ ନଥିବ, ଘରେ ନଥିବ କି ବାହାରେ ନଥିବ, ସେହି ଅବସ୍ଥାରେ ଯଦି କୌଣସି ସ୍ତ୍ରୀଲୋକ ବାଳଟିକୁ ଉପାଡ଼ି ଦେବ, ତେବେ ମୋର ମୃତ୍ୟୁ ହେବ । ଅନ୍ୟ କୌଣସି ଉପାୟରେ ମୁଁ ମରିବି ନାହିଁ ।

ମାଳତୀର ଆଲିଙ୍ଗନରେ ଥାଇ ବୈଲୋଚନ କହିଲା, ତୁମେ ମୋ' ପ୍ରିୟତମ ହୋଇଥିବାରୁ ଏ ରହସ୍ୟ କହିଲି । ଜାଣିଲ ? ମୋତେ ବିଧାତା ଏଭଳି ବର ଦେଇଛି ଯେ ମୁଁ ମରିବି ନାହିଁ ।

ଖୁସିରେ ଗଦ୍‌ଗଦ ହୋଇ ମାଳତୀ କହିଲା; ଏବେ ମୋର ଭୟ ଦୂର ହେଲା ।

ମାଳତୀକୁ ଆଲିଙ୍ଗନ ସହ ଚୁମ୍ବନ ଦେଇ ରାଜା ବୈଲୋଚନ ଅସ୍ତ୍ର-ଶସ୍ତ୍ର ସଜ୍ଜିତ ସୈନ୍ୟବାହିନୀ ଧରି ବାହାରିଲା ।

କିନ୍ତୁ ବୈଲୋଚନକୁ ଜଣା ନଥିଲା ମାଳତୀର ମାୟା । ସେ ଏମିତି ମାୟାଜାଲ ବିଛାଇଥିଲା ଯେ ବୈଲୋଚନ ବଣ ଜୀବମାନଙ୍କୁ ଦେଖିପାରିଲା ନାହିଁ । ତେଣେ ବୈଲୋଚନର ମୁଣ୍ଡସାରା ଉକୁଣି ଭର୍ତ୍ତି ହୋଇଗଲା । ମନ ରହିଲା ଉକୁଣି ପାଖରେ । ସବୁବେଳେ ନଖରେ କୁଣ୍ଡେଇ ହେଲା । ବଣ ଭିତରେ କେତେବେଳେ ଜନ୍ତୁଟିଏ ଗଲା କି ଆସିଲା ସେ ଲକ୍ଷ୍ୟ କରିପାରୁ ନଥିଲା ।

ମାଳତୀର ମାୟାରେ ସେ ଜୀବଜନ୍ତୁ ଦେଖିପାରିଲା ନାହିଁ । ଉକୁଣୀର ଦାଉ ବି ସମ୍ଭାଳି ପାରିଲା ନାହିଁ । ତରତରରେ ପ୍ରାସାଦକୁ ଲେଉଟିଗଲା । ନିଜର ଅସାମର୍ଥ୍ୟକୁ ଲୁଚାଇବା ଲାଗି ସେ କହିଲା ସଖି ତୋ' ଚିନ୍ତାରେ ମୁଁ

ଏତେ ବ୍ୟସ୍ତ ହେଲ ଯେ ମୋ' ଆଖିକୁ କୌଣସି ଜୀବଜନ୍ତୁ ଦିଶିଲେ ନାହିଁ । ମୃଗଚର୍ମଟି ପାଆନ୍ତ ବା କପରି ? ତୋ' ଚିନ୍ତାରେ ମୁଁ ଫେରି ଆସିଲି ।

ମାଳତୀ କହିଲେ ବ୍ୟସ୍ତ ହୁଅ ନାହିଁ । ସ୍ନାନ ଭୋଜନ ଆଦି ସାର, ତା'ପରେ କଥାବାର୍ତ୍ତା ।

ସ୍ନାନ ଭୋଜନ ଆଦି ସାରି ବୈଲୋଚନ ଉକୁଣିର ଦାଉରେ ଅସମ୍ଭାଳ ହୋଇ ପଡ଼ିଲା । ଶୀଘ୍ର ମାଳତୀ ପାଖକୁ ଆସି ମୁଣ୍ଡ ଦେଖାଇଲା । ଉକୁଣି ଉପଦ୍ରବ କଥା କହିଲା । ଏତେ କଣ୍ଡୁ କାହିଁକି ହେଉଛି ପ୍ରଶ୍ନ କଲା ।

ମାଳତୀ ପାଖରେ ଥିଲେ ବୈଲୋଚନ ପ୍ରଣୟ ରସ ଛଡ଼ା ଅନ୍ୟ କୌଣସି ଚିନ୍ତା କରିପାରେ ନାହିଁ, କିନ୍ତୁ ଆଜି ତା' ମଥାର କଣ୍ଡୁ ଏତେ ଅସହ୍ୟ ଯେ ସେ ପ୍ରଣୟ ପ୍ରାର୍ଥନା କରିପାରୁ ନାହିଁ । କରୁଛି ଉକୁଣି ମାରିବାର ପ୍ରାର୍ଥନା ।

ମାଳତୀ କହିଲା, ଟିକିଏ ଶୋଇଯାଅ । ମୁଣ୍ଡରେ ତ ଉକୁଣି ଭର୍ତ୍ତି । ମୁଁ ପାନିଆ ଆଣେ । ଉକୁଣି ଗୋଟି ଗୋଟି କରି ମାରିବି ।

ମାଳତି ପାନିଆ ଧରି ବାଳକୁ ଭାଗ ଭାଗ କଲା, ଆଙ୍ଗୁଳିରେ ବାଳ ଗୋଟି ଗୋଟିକିଆ କଲା । ଗୋଟି ଗୋଟିକରି ଉକୁଣି ଖୋଜିଲା । ମାଳତୀ ଦ୍ୱାରବନ୍ଧ ପାଖରେ ବସିଲା । ଅନ୍ଧାରକୁ ପିଠିକରି । ଗୋଟି ଗୋଟି ଉକୁଣି ଚିମୁଟି ଆଣି ନଖ ଉପରେ ରଖି ମାରିଲା । ସୂର୍ଯ୍ୟାସ୍ତ ହେବାକୁ ଆଉ ଗୋଟିଏ କ୍ଷଣ ଥାଏ । ଗୋଟିଏ ପାହାଚରେ ବସି ମାଳତୀ ମୁଣ୍ଡ ଉପର ଓଢ଼ଣାକୁ ଖସାଇ ଦେଇଥାଏ । ଅଣ୍ଟାଠାରୁ ତଳ ଘର ଭିତରେ ଅଛି, ଅଣ୍ଟା ଉପର ଘର ବାହାରେ ଅଛି । ବୈଲୋଚନ ବି ସେହିଭଳି ଶୋଇଛି ।

ମାଳତୀ ବୈଲୋଚନକୁ ସମ୍ବୋଧନ କରି କହିଲା, 'ପ୍ରିୟତମ ବର୍ତ୍ତମାନ ଗୋଧୂଳି ହେଲଣି । ଅନ୍ଧାର ମାଡ଼ି ଆସିବ । ଏବେ ଥାଉ ! ପରେ ବାକି ଉକୁଣିତକ ମାରିବା ।

ବୈଲୋଚନ କହିଲା ନାହିଁ ନାହିଁ । ବଡ଼ କୁଣ୍ଡେଇ ହେଉଛି । ଉକୁଣିର ଉତ୍ପାତ ମୁଁ ସହି ପାରୁନାହିଁ । ସବୁ ସାରିବା ଯାଏ ମାର ।

ଉକୁଣି ଖୋଜିବା ଆଳରେ ମାଳତୀ ପିଙ୍ଗଳ ବର୍ଣ୍ଣ ବାଳଟିକୁ ଖୋଜିଲା । ପିଙ୍ଗଳ ବାଳଟିକୁ ଠାବ କଲାକ୍ଷଣି ବଡ଼ ଖୁସି ହୋଇଗଲା । କିନ୍ତୁ ଖୁସିକୁ ମନ ଭିତରେ ଚପାଇ ରଖିଲା ।

ମୁହଁପୋଡ଼ି ବୈଲୋଚନ ଶୋଇଥାଏ । ଏଣେ ମାଳତୀକୁ ସମ୍ବୋଧନ କରି କହୁଥାଏ, ଯେତେ ଉକୁଣି ପାରୁଛ ମାରିଯାଅ । ତୁମେ ବାଳ କୁଣ୍ଡାଇଲେ ମୋତେ ବେଶ୍ ଭଲ ଲାଗୁ ଛି ।

ଅନ୍ଧକ ମହିଷକୁ ଚେତାଇ ଦେଲା । ମନେଅଛି ତ ? ଶୁମ୍ଭ, ଭଲକରି ଶୁଣ୍ । ଘର ନୁହେଁ କି ବାହାର ନୁହେଁ । ରାତି ନୁହେଁ କି ଦିନ ନୁହେଁ । ପୁଣି ମାଳତୀ ପୁରୁଷ ନୁହେଁ । ମାଳତୀ ଉକୁଣି ମାରୁ ମାରୁ ପିଙ୍ଗଳ ବାଳଟିକୁ ପାଇଛି । ମାଳତୀ ଧରିଛି ଟିପରେ ।

ହଠାତ୍ ମାଳତୀ ବସ୍ତ୍ରୁରୂପ ପ୍ରକାଶ କଲା ।

ମଦ୍ୟପାନ ପ୍ରଭାବରେ ବୈଲୋଚନ ଅଚେତ ହୋଇଗଲା । ମାଳତୀ ତା' ପିଠିରେ ପାଦ ଥୋଇ ହୁଁକାର ଶବ୍ଦକରି ପିଙ୍ଗଳ ବାଳଟିକୁ ଛିଣ୍ଡି-ଦେଲା । ବୈଲୋଚନ ପ୍ରଚଣ୍ଡ ଶବ୍ଦକଲା । ତା'ର ପ୍ରାଣଛଡ଼ା ଗର୍ଜନ ଗୃହଆଡ଼ କମ୍ପାଇ ଦେଲା । ସାରା ବ୍ରହ୍ମାଣ୍ଡ କମ୍ପିଲା ।

ଅନ୍ଧକ କାହାଣୀ ଶେଷ କରିବା ପୂର୍ବରୁ କହିଲା—ଶୁମ୍ଭ, ଶୁଣିଲ ତ ସ୍ତ୍ରୀକୁ ବିଶ୍ୱାସ କରି ବୈଲୋଚନ କପରି ନାଶ ଗଲା ? ଦେବତାମାନେ ଏହିପରି ବର ଦିଅନ୍ତି । ଗୋଟିଏ ହାତରେ ବର ଦିଅନ୍ତି ତ ଆଉ ଗୋଟିଏ ହାତରେ ପ୍ରାଣ ନିଅନ୍ତି । ଏହି କାରଣରୁ ଶୁମ୍ଭ ନିଶୁମ୍ଭ ନିହତ ହୋଇଛି । ରକ୍ତବୀର୍ଯ୍ୟର ରକ୍ତଟୋପାରୁ ସହସ୍ର ସହସ୍ର ରକ୍ତବୀର୍ଯ୍ୟ ଜନ୍ମ ହେବେ ବୋଲି ସେ ବର ପାଇଥିଲା । କିନ୍ତୁ ଟୋପାଏ ହେଲେ ରକ୍ତ ଭୂଇଁରେ ପଡ଼ିଲା ନାହିଁ । ସ୍ତ୍ରୀ ରୂପରେ ଅବତାର ହୋଇ ବସ୍ତ୍ରୁ ଏଭଳି କରନ୍ତି ।

ଏକଥା ଶୁଣି ମହିଷାସୁର ନିଜର ବିପଦ ବୁଝିଲି । ସେ ପାଇଥିବା ଅମର ବରରେ ସ୍ତ୍ରୀଠାରୁ ରକ୍ଷା ପାଇବାର ସର୍ତ୍ତ ନଥିଲା । ଏବେ ତାକୁ କିଏ ରକ୍ଷା କରିବ ?

ବୈଲୋଚନର କାହାଣୀ ମହିଷର ମୁଣ୍ଡ ଭିତରେ ବାରମ୍ବାର ଦୋହରାଇ ହେଲା ।

# ମହିଷାସୁରର ପରିଣୟ

**ବୀଣାପାଣି ମହାନ୍ତି**

ସିଂହଳ ଓ କୁଶ ଦ୍ୱୀପରେ ରାଜା ହେଲା ପରେ ମକର ମାସ ଶୁକ୍ଳ ତ୍ରୟୋଦଶୀ ଦିନ ବୃହସ୍ପତି ବାର୍‌ରେ ମହିଷାସୁର ଦକ୍ଷିଣ ଦିଗକୁ ଯାତ୍ରା ଆରମ୍ଭ କଲା । ତୁରୀ ନାଦ କରି, ଦୁଇପାର୍ଶ୍ୱରେ ଚଣ୍ଡମୁଣ୍ଡ, ଆଗପଛ, ବାମ ଡାହାଣରେ ଅସୁର ସୈନ୍ୟ ଘୋର ଗର୍ଜନ କରି ମହିଷାସୁର ସହିତ ଚତୁର୍ଦ୍ଦିଗରେ ଚହଲ ପକାଇ ଚନ୍ଦ୍ର ଦ୍ୱୀପରେ ପ୍ରବେଶ କଲେ । ଅସୁରମାନଙ୍କର କଳକଳା ନାଦ, ବିକଟାଳ ରୂପ ଦେଖି ଦେବତାମାନେ ଭୟରେ ବିଚଳିତ ହୋଇ କୁଶଦ୍ୱୀପରେ ଯାଇ ଆଶ୍ରୟ ନେଲେ । ତାହା ଦେଖି ମହିଷାସୁର ଖୁସି ହୋଇ ଚନ୍ଦ୍ରଦ୍ୱୀପକୁ ଗଲା । ପ୍ରବଳ ପ୍ରତାପୀ ବଳିଷ୍ଠ ଖ୍ରୀମକାନ୍ତ ଅସୁରମାନେ ସାରା ଦେଶ ଉଜାଡ଼ ଛାରଖାର କରିଦେଲେ, ଯେଉଁଠି ଯାହା ପାଇଲେ ତାହାର ବାଛବିଚାର ନ କରି ଭୋଜନ କଲେ ଓ ସେମାନଙ୍କୁ ନଅଣ୍ଟ ପଡ଼ିଲା ।

ଚନ୍ଦ୍ରଦ୍ୱୀପର ରାଜା ଭୃଷଣ୍ଡି କଲା ବଂଶୀ ତଥା ପରମ ଧାର୍ମିକ ଚନ୍ଦ୍ରନେମି ଥିଲେ । ବ୍ରହ୍ମଉପାସକ, ନୈଷ୍ଠିକ ଚନ୍ଦ୍ରନେମିଙ୍କୁ ମହିଷାସୁର କବଳିତ କରିବା ଏତେ ସହଜ ହେବ ନାହିଁ ଜାଣି ଚଣ୍ଡମୁଣ୍ଡ ଚନ୍ଦ୍ର-ଦ୍ୱୀପରେ ମହିଷାସୁରକୁ ଦୌରାତ୍ମ୍ୟ ନ କରିବାକୁ ଅନୁରୋଧ କଲେ । ବାହୁବଳରେ ଚନ୍ଦ୍ରନେମିଙ୍କୁ ପରାସ୍ତ କରିବା ସମ୍ଭବପର ନ ଥିବାରୁ ତାଙ୍କ ସହିତ ମୈତ୍ରୀ ବା ବନ୍ଧୁଭାବ ପୋଷଣ କରିବା ପାଇଁ ମହିଷାସୁରକୁ ଚଣ୍ଡମୁଣ୍ଡ ଉପଦେଶ ଦେଲେ । ମହିଷାସୁର ତତ୍‌କ୍ଷଣାତ୍ ଉଲୂକ ମନ୍ତ୍ରୀ

ବଳରେ ସୈନ୍ୟସାମନ୍ତଙ୍କୁ ଗୁପ୍ତକରି ରଖିଲ ଓ ସେମାନଙ୍କର ଅତ୍ୟାଗ୍ଭର ଦୃଶ୍ୟ ହେଲ ନାହିଁ । ସେପରିକ ମନ୍ତ୍ରିଷାପୁର ମଧ୍ୟ ନିଜେ ନିଜକୁ ଅଦୃଶ୍ୟ କରି ରଖିଲ ।

ସେହି ସମୟରେ ଚନ୍ଦ୍ରନେମିଙ୍କ ପତ୍ନୀ ଚନ୍ଦ୍ରରେଖା ଔରସରୁ ଜାତ କନ୍ୟା ଚନ୍ଦ୍ରାବତୀର ସ୍ୱୟମ୍ବର ସଭାର ଆୟୋଜନ ହେଉଥାଏ । ଅପରୂପା ସୁନ୍ଦରୀ ଚନ୍ଦ୍ରାବତୀ ପାଇଁ ସୁଯୋଗ୍ୟ ପାତ୍ରଟିଏ ଚନ୍ଦ୍ରନେମି ଖୋଜି ନ ପାଇବାରୁ ବହୁ ରଜାଙ୍କୁ ସ୍ୱୟମ୍ବର ସଭାକୁ ନିମନ୍ତ୍ରଣ କରିଥାନ୍ତି । ତିରିଶ ଯୋଜନ ଚନ୍ଦ୍ରଦ୍ୱୀପ ରାଜ୍ୟର ଚତୁର୍ଦ୍ଦିଗରେ ପଞ୍ଚଦଶ ଲକ୍ଷ ରାଜାଙ୍କର ରାଜତ୍ୱ ହୋଇ ରହିଥାଏ । ଚନ୍ଦ୍ରଗିରି ପର୍ବତର ମଧ୍ୟଭାଗରେ ସପ୍ତକୁଣ୍ଡରେ ଥିବା ଅମୃତକୁ ପାଞ୍ଚକୋଟି ଗନ୍ଧର୍ବ ଜଗି ରହିଥାନ୍ତି । ସେହି ଗିରିଦେଶରେ ପ୍ରତ୍ୟହ ଚନ୍ଦ୍ର ଉଦୟ ହୁଅନ୍ତି, ତେଣୁ ସବୁ ରାଜାମାନେ ଚନ୍ଦ୍ରଦେବଙ୍କୁ ଭକ୍ତି ସହକାରେ ପୂଜା କରନ୍ତି । ସେହି ଦ୍ୱୀପର ରାଜା ଚନ୍ଦ୍ରନେମି କନ୍ୟାର ସ୍ୱୟମ୍ବର ପାଇଁ ବିଭିନ୍ନ ରାଜାଙ୍କ ପାଖକୁ ନିମନ୍ତ୍ରଣ ପତ୍ର ଦୂତ ହସ୍ତରେ ପଠାଇଲେ ।

ସ୍ୱୟମ୍ବର ବାର୍ତ୍ତା ପାଇ ରଜାମାନେ ଅତ୍ୟନ୍ତ ଖୁସି ହୋଇ ନିଜ ରାଜ୍ୟର ପତାକା ଧରି ସୈନ୍ୟସାମନ୍ତ ସହ ଚନ୍ଦ୍ରଦ୍ୱୀପକୁ ଯାତ୍ରା ଆରମ୍ଭ କଲେ । ପଦ୍ମଦ୍ୱୀପର ରାଜା ଦେବବ୍ରହ୍ମା ଅନଳକ ରାଜ୍ୟର ରାଜା ବୀର-ସେନ ସାତକୋଟି ସୈନ୍ୟ ନେଇ ପହଞ୍ଚିଲେ । ପରାର୍ଦ୍ଧ ରାଜ୍ୟର ରାଜା ଲବଙ୍ଗରାୟେ ଆଠକୋଟି ସୈନ୍ୟ ନେଇ ପହଞ୍ଚିଲେ । ସେହିପରି ଅନଙ୍ଗ ଦେଶ ନୃପତି ଅନଙ୍ଗସେନ, ମଳୟ ଦେଶ ନୃପତି ମଳୟ ସେନ, କପାଳ ଦେଶର ରାଜା ତ୍ରିଶ୍ରମଲେସନ, ଯଙ୍ଗବନ୍ତ ଦେଶ ରାଜା ଲକ୍ଷ୍ମୀପାଦବୀର, ଅବନ୍ତୀର ରାଜା କଳ୍ପପାକ୍ଷ, ଚଣ୍ଡୀଦ୍ୱୀପ ରାଜା ମାଳମାଧବ ଓ ବର୍ଜ୍ଜପାଳ ଦେଶ ରାଜା ସର୍ଜ୍ଜଦାସ ବହୁ ସୈନ୍ୟସାମନ୍ତ ନେଇ ପହଞ୍ଚିଲେ । ଏହାଛଡ଼ା ଦୂରଦୂରାନ୍ତର ଅଗଣିତ ରାଜା ସୈନ୍ୟସାମନ୍ତ ନେଇ ଆଠ • ଉପରେ ଚନ୍ଦ୍ରଦ୍ୱୀପରେ ପହଞ୍ଚିଲେ । ରକ୍ତବୀର୍ଯ୍ୟ ଓ ବଡ଼ାଳାକ୍ଷେ ନାମ୍ନୀ ଦୁଇ ବୀର ଚନ୍ଦ୍ରନେମିଙ୍କ ଆଦେଶରେ ରାଜାମାନଙ୍କର ପୂଜା ଅର୍ଚ୍ଚନା କଲେ । ରାଜା ମାନେ ଆସନ ଗ୍ରହଣ କଲାପରେ ଚନ୍ଦ୍ରନେମି ତାଙ୍କର ମନକଥା ଖୋଲି

କହିଲେ । ଜମ୍ବୁଦ୍ୱୀପ ରଜା ନନ୍ଦରତ୍ନଙ୍କ କନ୍ୟା ଶକୁନ୍ତଳାକୁ ସେ ନିଜେ ସ୍ୱୟମ୍ବର ସଭାରେ ଭେଟିଥିଲେ ଓ ଶକୁନ୍ତଳା ତାଙ୍କୁ ବରଣମାଳ ଦେଇ-ଥିଲେ । ପରବର୍ତ୍ତୀ ସମୟରେ ଶକୁନ୍ତଳାଙ୍କ ନାମ ଚନ୍ଦ୍ରରେଖା ବୋଲି ରଖିଥିଲେ । ଚନ୍ଦ୍ରନେମି ଓ ଚନ୍ଦ୍ରରେଖାଙ୍କର କନ୍ୟା ଚନ୍ଦ୍ରାବତୀର ସ୍ୱୟମ୍ବର ସଭାର ସେ ଆୟୋଜନ କରିଛନ୍ତି ଗୋଟିଏ ସର୍ତ୍ତରେ ବୋଲି ସୂଚନା ଦେଲେ ।

ଉପସ୍ଥିତ ରାଜାମାନେ ସର୍ତ୍ତ ଜାଣିବାକୁ ଆବେଗରେ ପ୍ରଶ୍ନ କଲେ । ଚନ୍ଦ୍ରନେମି ବିନୟରେ କହିଲେ —

"ମୁଁ ଯେତେବେଳେ ସବୁ ରାଜାମାନଙ୍କୁ ନିମନ୍ତ୍ରଣ କରିଛି, ସେତେବେଳେ କାହାକୁ କିଛି ମନା କରି ପାରିବିନି । ମୋର ସର୍ତ୍ତ ଯିଏ ପୂରଣ କରି ପାରିବ, ସେଇ ମୋର କନ୍ୟାର ପାଣିଗ୍ରହଣ କରିବ । ସେଇ ସର୍ତ୍ତ ହେଲା ଏଇ ଚନ୍ଦ୍ରଦ୍ୱୀପର ଐଶାନ୍ୟ କୋଣରେ ଚନ୍ଦ୍ରଦେବଙ୍କ ପାଖରେ ଏକ ମଣିସ୍ତମ୍ଭ ମୁଁ ସ୍ଥାପନ କରିଛି । ସେ ସ୍ତମ୍ଭକୁ ଘେରି ସପ୍ତ ସାଗର ରହିଛି । ସେହି ସ୍ତମ୍ଭ ନାନା ରତ୍ନରେ ଖଚିତ ହୋଇ ପାଞ୍ଚଶ ଯୋଜନ ଲମ୍ବି ରହିଛି । ସେ ସ୍ତମ୍ଭର ଶୀର୍ଷଦେଶ ଲକ୍ଷ ଲକ୍ଷ ଯୋଜନ ଓ ତା' ଉପରେ ବରୁଣରାଜା ଉପବେଶନ କରି ଯେଉଁ ତେଜ ପ୍ରକାଶ କରନ୍ତି ତାହା ସାରା ପୃଥିବୀକୁ ଆଲୋକିତ କରେ । ଏହି ମଣିସ୍ତମ୍ଭକୁ ପଶ୍ଚିମପଟରୁ ଶରବିଦ୍ଧ କରି ଯିଏ ପୂର୍ବପଟରେ ଶର କାଢ଼ି ପାରିବ ତାରି ହାତରେ ମୁଁ କନ୍ୟାକୁ ସମର୍ପଣ କରିବି । ମୁଁ ସାତଦିନ ଧରି ଏହି ସ୍ୱୟମ୍ବର ସଭା କାର୍ଯ୍ୟ ଚଳାଇବି ଓ ସମସ୍ତଙ୍କୁ ଆତିଥ୍ୟ ଦେବି ।"

ଏ କଥା ଶୁଣି ସମସ୍ତ ରାଜା ବଳଦ ବାହନରେ ଖର ବେଗରେ ଯାଇଁ ମଣିସ୍ତମ୍ଭ ପାଖରେ ପହଞ୍ଚି ତାକୁ ନିରୀକ୍ଷଣ କରି ହତୋତ୍ସାହ ହେଲେ । ବିରାଟ ସ୍ତମ୍ଭକୁ ଭେଦ କରିବାର ଶକ୍ତି ସେମାନଙ୍କର ନାହିଁ ଜାଣି ପାରିଲେ ଓ ଚନ୍ଦ୍ରନେମିଙ୍କୁ ଅନ୍ୟ କିଛି ସର୍ତ୍ତ ଥିଲେ କହିବାକୁ ଅନୁରୋଧ କଲେ । କିନ୍ତୁ ତାଙ୍କର ଅନ୍ୟ କିଛି ବ୍ରତ ନଥିଲା ତେଣୁ ସେ ବାରମ୍ବାର ସେଇ ସର୍ତ୍ତଟିକୁ ହିଁ ଦୋହରାଇଲେ । ଅନ୍ୟ ଉପାୟ ନ ଦେଖି ହଲପ ରାଜା କହିଲେ—"ଆଗେ ସଭାସ୍ଥଳକୁ କନ୍ୟାକୁ ଆଣ । ଆମେ ତାର ସୌନ୍ଦର୍ଯ୍ୟ ଦେଖିଲେ ଯାଇଁ ଲକ୍ଷ ବିନ୍ଧିବୁ କି ନାହିଁ ବିଚାର କରିବୁ !"

ଚନ୍ଦ୍ରନେମି ତତ୍କ୍ଷଣାତ କନ୍ୟା ଚନ୍ଦ୍ରାବତୀଙ୍କୁ ସଭାସ୍ଥଳକୁ ଅଣିବା ପାଇଁ ଆଦେଶ ଦେଲେ । ଚନ୍ଦ୍ରାବତୀ ଅପୂର୍ବ ସାଜସଜ୍ଜାରେ ମଣ୍ଡିତ ହୋଇ ସଭାସ୍ଥଳରେ ପ୍ରବେଶ କରୁଥିଲେ ଚତୁର୍ଦ୍ଦିଗ ତାର ଝଟକ ଉଠିଲା । ସମସ୍ତେ ତଟସ୍ଥ ହୋଇ କନ୍ୟାକୁ ଗୃହିଁ ତାର ସୌନ୍ଦର୍ଯ୍ୟ ରୂପର ଜୟଗାନ କରୁଥିଲା ବେଳେ ନରଯୂଧ ଦେଶର ରାଜା ନରସିଂହ ବରେଣ୍ୟ ରାଜାମାନଙ୍କୁ କହିଲେ ଯେ ସୌନ୍ଦର୍ଯ୍ୟ ବର୍ଣ୍ଣନା ବା ଦର୍ଶନ କରିବାର ଏହା ଉପଯୁକ୍ତ ସମୟ ନୁହେଁ । ଯିଏ ପ୍ରକୃତରେ ବୀରଶ୍ରେଷ୍ଠ ଓ ମଣିସ୍ତମ୍ଭକୁ ଲକ୍ଷ୍ୟଭେଦ ଫଟାଇ ପାରିବ, ସେ କେବଳ ଏହି ରୂପବତୀ କନ୍ୟାର ପାଣିଗ୍ରହଣ କରିବ ।

ଏ କଥା ଶୁଣି ରାଜାମାନେ ଗୋଟି ଗୋଟି କରି ଲକ୍ଷ୍ୟ ବନ୍ଧିବା ଆରମ୍ଭ କଲେ । କାହାର ଶର ଦୁଇ ତାଳତ, ଅନ୍ୟ କାହାର ତିନତାଳ, ପାଞ୍ଚତାଳ, ଷୋଳତାଳ ପର୍ଯ୍ୟନ୍ତ ମଣିସ୍ତମ୍ଭ ଭିତରେ ପ୍ରବେଶ କରି ନିଶ୍ଚିହ୍ନ ହୋଇଗଲା । କୌଣସି ଗୋଟିଏ ରାଜାଙ୍କର ଶର ମଣିସ୍ତମ୍ଭକୁ ଭେଦ କରି ପାରିଲା ନାହିଁ । ରାଜାମାନେ ହତଚକିତ ବସି ଓ ବିଷାଦଗ୍ରସ୍ତ ହେବା ସମୟରେ ମହିଷାସୁର ମାୟା ବଳରେ ନିଜ ଶରୀରକୁ ଗୋପନ କରି ଚନ୍ଦ୍ରାବତୀଙ୍କୁ ଦୂରରୁ ଦେଖି ମୁଗ୍ଧ ହେଲା । ସଙ୍ଗେ, ସଙ୍ଗେ ସେ ଆସି ସଭାସ୍ଥଳରେ ସୈନ୍ୟସାମନ୍ତ ସହ ପହଞ୍ଚିଗଲା । ଅସୁର ସୈନ୍ୟମାନଙ୍କର ପିଙ୍ଗଳକେଶ, ଊର୍ଦ୍ଧ୍ୱବାହୁ ଓ ଘୋର ଗର୍ଜନ ଶୁଣି ନିମନ୍ତ୍ରିତ ରାଜାମାନେ ଭୟରେ ସଭାଗୃହ ପଳାଇଗଲେ । ଚନ୍ଦ୍ରନେମି ମହିଷାସୁରକୁ ଗୃହିଁଲେ ସେ କହିଲା—"ହେ ରାଜା ! ମୁଁ ଶୂନ୍ୟ ପଥରେ ଥାଇ ଏ ସ୍ୱୟମ୍ବର ଆୟୋଜନ ଓ ଲକ୍ଷ୍ୟବନ୍ଧା ଦେଖୁଥିଲି । ମୁଁ ଯଦି ଲକ୍ଷ୍ୟବନ୍ଧ ପାରିବ ତେବେ ମତେ କନ୍ୟାକୁ ସମର୍ପଣ କରିବ କି ?" ଚନ୍ଦ୍ରନେମି ତତ୍‌କ୍ଷଣାତ ସମ୍ମତି ଜଣାଇଲେ । ମହିଷାସୁର ଖୁସି ହୋଇ ଲୌହସାର ଧନୁଟିଏ ଧରିଲା । ସେଇ ଶରରେ ବ୍ରହ୍ମରୁଦ୍ର କଉଶିକ ଓ ବଜ୍ର ଆଦି ତିନିଟି ଶର ଏକ ସଙ୍ଗରେ ଟଙ୍କି ମଣିସ୍ତମ୍ଭକୁ ବିଦ୍ଧ କଲା । ପ୍ରଚଣ୍ଡ ଶବ୍ଦ କରି ସ୍ତମ୍ଭର ପଶ୍ଚିମରୁ ପୂର୍ବ ଦିଗକୁ ଫୁଟି ଶର ବାହାରିଗଲା । ବ୍ରହ୍ମାଙ୍କ ବରଦାନରେ ମହିଷାସୁର କେବଳ ଅମିତ ପରାକ୍ରମୀ ନୁହେଁ, କାମଦେବଙ୍କଠୁ ବଳି ସୌନ୍ଦର୍ଯ୍ୟର ମଧ୍ୟ ଅଧିକାରୀ । ସମସ୍ତେ ମହିଷାସୁରର ବଳବୀର୍ଯ୍ୟ ସୌନ୍ଦର୍ଯ୍ୟ ଦେଖି ସାଧୁବାଦ ଜଣାଇଲେ ।

ଚନ୍ଦ୍ରନେମି ମହିଷାସୁର ହସ୍ତରେ ଚନ୍ଦ୍ରାବତୀଙ୍କୁ ଅର୍ପଣ କରି ନିଜ ଭବନକୁ ନିମନ୍ତ୍ରଣ କଲେ । ବିବାହର ଆୟୋଜନ କଲେ ଚନ୍ଦ୍ରନେମି । ନାନା ଉତ୍ସବ ଅନୁଷ୍ଠିତ ହେଲା । ଅସୁରଙ୍କର ପୁରୋହିତ ଗୁରୁ ଶୁକ୍ରାଚାର୍ଯ୍ୟ ଆସି ବିବାହ କାର୍ଯ୍ୟ ଶେଷ କଲେ । ନିଜ ସୈନ୍ୟସାମନ୍ତ ସହ ଦଶଦିନ ଚନ୍ଦ୍ରଦ୍ୱୀପରେ ରହିଲାପରେ ମହିଷାସୁର ଚନ୍ଦ୍ରନେମିଙ୍କୁ ପ୍ରଣାମ କରି ନିଜ ରାଜ୍ୟକୁ ଫେରିବା ପାଇଁ ଅନୁମତି ମାଗିଲା ଓ ତାହା ସହିତ ରକ୍ତବୀର୍ଯ୍ୟ ବିଡ଼ାଳାକ୍ଷ ଦୁଇବୀରଙ୍କୁ ତାର ନିଜ ରାଜ୍ୟକୁ ନେବାପାଇଁ ଚନ୍ଦ୍ରନେମିଙ୍କୁ ଅନୁରୋଧ କଲା । ଚନ୍ଦ୍ରନେମି ନାନା ଯାନଯୌତୁକ ସହ ଦୁଇ ବୀରଙ୍କୁ ମହିଷାସୁରଙ୍କୁ ଉପହାର ଦେଇ ବିଦାୟ କଲେ ।

ଏହାପରେ ମହିଷାସୁର ଚନ୍ଦ୍ରାବତୀ ସହ ନିଜ ରାଜ୍ୟ ସିଂହଳ ଦ୍ୱୀପକୁ ଫେରି ଆସିଲା । ରକ୍ତବୀର୍ଯ୍ୟ ଓ ବିଡ଼ାଳାକ୍ଷ ଦୁଇ ବୀରଙ୍କୁ ରାଜାର ସମ୍ମାନ ଦେଇ ନିଜ ରାଜ୍ୟରେ ରଖିଲା । ମଦନ ସହିତ ରତି ଯେପରି, ମହିଷାସୁର ସହ ଚନ୍ଦ୍ରାବତୀ ସେହିପରି ଅତି ସୁଖ ଓ ଆନନ୍ଦରେ ନିଜ ରାଜ୍ୟ ସିଂହଳ ଦ୍ୱୀପରେ କିଛିକାଳ ହିଂସା ଦ୍ୱେଷ ଆକ୍ରମଣ ନିଶାରୁ ଶାନ୍ତ ହୋଇ ରାଜତ୍ୱ କଲା ।



# ମହିଷାସୁରର ରଥ

ମାନସୀ ଦାସ

ଦାରୁଣ ସମ୍ବାଦଟି ଆସି ପହଞ୍ଚିବା ସମୟକୁ ମହାରାଜା ପୂଜାଗୃହ ମଧ୍ୟରେ ଥିଲେ । ମହାରାଜା ପୂଜାରେ ବସିଥିବା ସମୟରେ ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ କରିବା ସମସ୍ତଙ୍କ ପାଇଁ ନିଷେଧ ଥିଲା । ବାର୍ତ୍ତାଳାପ ତ ଦୂରର କଥା । ସ୍ନାନପରେ ଶୁଦ୍ଧଚିତ୍ତ ଶୁଦ୍ଧଗାତ୍ର ମହାରାଜା ଶ୍ୱେତ ପଟ୍ଟବସ୍ତ୍ର ପିନ୍ଧି ପୂଜାରେ ବସନ୍ତି । ସମ୍ମୁଖରେ ଥାଏ ଚତୁରାନନଙ୍କର ସୁବର୍ଣ୍ଣ ପ୍ରତିମୂର୍ତ୍ତି । ମହାରାଜା ସ୍ୱହସ୍ତରେ ଦୀପ, ଧୂପ, ନୈବେଦ୍ୟ ସଜାଡ଼ନ୍ତି । ଅସ୍ପଷ୍ଟ କଣ୍ଠର ମନ୍ତ୍ରୋଚ୍ଚାରଣ ମଧ୍ୟରେ ମୂର୍ତ୍ତିକୁ ଫୁଲରେ ସଜାନ୍ତି । ଅଗୁରୁ, ଚନ୍ଦନର ଗନ୍ଧରେ ସୁବାସିତ ପ୍ରକୋଷ୍ଠ ପାରିଜାତ, ଶ୍ୱେତଚମ୍ପା, ଜୁଇ, ଅପରାଜିତାର ଗନ୍ଧରେ ଆହୁରି ମହକି ଉଠେ । ଅବଶେଷରେ ରାଜା ମୂର୍ତ୍ତି ଗଳାରେ ଲମ୍ବାଇ ଦିଅନ୍ତି ବ୍ରଜମଲ୍ଲୀର ମାଳ । ବିଶାଳ ମୂର୍ତ୍ତିରେ ଆଜାନୁଲମ୍ବିତ ମଲ୍ଲୀଗୁଚ୍ଛର ମାଳରେ ଅନୁପମ ହୋଇଉଠେ ବିରଞ୍ଚିଙ୍କର ପଦ୍ମାସନର ଠାଣି । ବ୍ରହ୍ମା ଅପୂଜିତ ଦେବତା । କିନ୍ତୁ ସେ ହିଁ ତ ତାଙ୍କର ପରମ ଆରାଧ୍ୟ ଦେବ ।

ଝୀନ ଉତ୍ତରୀୟ ମଧ୍ୟରୁ କେବଳ ସ୍ୱର୍ଣ୍ଣ ଉପବୀତଟି ଝଟକି ଉଠୁଥାଏ । ସମସ୍ତ ଅଳଙ୍କାର ବିରହିତ ମହାରାଜା ସେତେବେଳେ ଏକ ଅପୂର୍ବ ଦୀପ୍ତିରେ ଝଲସି ଉଠୁଥାନ୍ତି । ସେ ଭକ୍ତିଭାବରେ କ୍ରମଶଃ ସମାବିଷ୍ଟ ହୋଇଉଠନ୍ତି । କୁଆଡେ଼ ଲୁଚିଯାଏ ଶତତ ଅହଂକାର, ଗର୍ବଗରିମା, ଆସୁରିକ ଔଦ୍ଧତ୍ୟର ବୋଧହୀନ ପରିପ୍ରକାଶ ।

ମହାରାଜାଙ୍କର ଏହି ଭାବ-ପରିବେଷ୍ଟିତ ରୂପଟି ମହାରାଣୀଙ୍କ ପାଇଁ ଅତି ଲୋଭନୀୟ ଥିଲା । ସାମୟିକ ଅଥଚ ସୁନ୍ଦର । ଏକ ସମୟରେ ରାଜା-ରାଣୀ ଦୁହେଁ ମିଶି ପୂଜା ଦେଉଥିଲେ । ସେତେବେଳେ କେବଳ ଦେବତା ନୁହେଁ, ପତିଭକ୍ତିରେ ଗଦ୍‌ଗଦ ହୋଇ ଉଠୁଥିଲେ ରାଣୀ । କିନ୍ତୁ ମାତ୍ର ଅଳ୍ପ କେତେଦିନ ମଧ୍ୟରେ ହିଁ ତା'ର ପରିସମାପ୍ତି ଘଟିଲା । ରାଜା ଦୋଷାରୋପ କଲେ—ରାଣୀଙ୍କ କଙ୍କଣର ଧ୍ୱନି, ପଦମଞ୍ଜୀରର ରୁଣୁଝୁଣୁ ନିକ୍ୱଣ ତାଙ୍କ ଧ୍ୟାନରେ ବ୍ୟାଘାତ ଘଟାଉଛି । ସେ କାମାସକ୍ତ ହୋଇ ଉଠୁଛନ୍ତି ।

ଏହି ଦୋଷାରୋପ, ଏହି ନିଷ୍ଠୁର ଭର୍ତ୍ସନା ଏକାନ୍ତରେ ନୁହେଁ, ସମସ୍ତ ଦାସଦାସୀଗଣଙ୍କ ସମ୍ମୁଖରେ ହିଁ ଥିଲା । ସୁକୋମଳା ରାଣୀଙ୍କ ମନ ସେଦିନ ବ୍ୟଥାଭାରରେ ଲଇଁ ପଡ଼ିଥିଲା । ଅପମାନରେ ମୁଖମଣ୍ଡଳ ପାଟଳ ରଙ୍ଗ ଧାରଣ କରିଥିଲା । ତଥାପି ରାଣୀ ଚନ୍ଦ୍ରାବତୀ ଧୈର୍ଯ୍ୟ ନହରାଇ ନତବଦନରେ କହିଥିଲେ—ମୁଁ ମଧ୍ୟ ଆପଣଙ୍କ ଭଳି ସ୍ନାନ ସମୟକୁ ସମ୍ପୂର୍ଣ୍ଣ ନିରାଭରଣା ହୋଇଯିବି । ପୂଜା କକ୍ଷକୁ ଯିବା ସମୟରେ ମୋ ହାତରେ ଶଙ୍ଖା ଦୁଇପଟ ବ୍ୟତୀତ ଅନ୍ୟ କୌଣସି ଅଳଙ୍କାର ନଥିବ ।

—ତମର ସେ ଉଜ୍ଜ୍ୱଳ ଲାଲରଙ୍ଗର ଶଙ୍ଖା ମଧ୍ୟ ମୋତେ ବେଳେ ବେଳେ ଅଶୀବ କାମାସକ୍ତ କରିପକାଏ ।

ରାଜା ନାରୀମାନଙ୍କ ପ୍ରତି ସେତେ ସମ୍ମାନଶୀଳ ନୁହନ୍ତି ବୋଲି ଚନ୍ଦ୍ରାବତୀ ବିବାହ ପୂର୍ବରୁ ଶୁଣିଥିଲେ । କିନ୍ତୁ ବିବାହର ଗୋଟିଏ ମାସ ନ ପୂରୁଣୁ ତାଙ୍କୁ ଏଭଳି ଅପମାନର ସମ୍ମୁଖୀନ ହେବାପାଇଁ ପଡ଼ିବ ବୋଲି ସେ କେବେ ଭାବି ନଥିଲେ ।

ଦୂତ ନିକଟରୁ ସମ୍ବାଦଟି ଶୁଣି ମହାରାଣୀ ଆତଙ୍କରେ ଶିହରି ଉଠିଲେ ଏବଂ ଶିହରି ଉଠୁଥିଲେ ନବରର ଅନ୍ୟ ରାଣୀମାନେ, ଦାସଦାସୀ, ପାତ୍ରମନ୍ତ୍ରୀ ଏବଂ ଉପସ୍ଥିତ ପ୍ରଜାପାଟକଗଣ । ତଥାପି ସମସ୍ତେ ଧୈର୍ଯ୍ୟଧରି ରାଜାଙ୍କର ମଣୋହି ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ । ମଣୋହି ସମୟରେ ଯେପରି ଉପସ୍ଥିତ କାହାର ମୁଖଭାବ ଦେଖି ରାଜା ସନ୍ଦେହ ନ କରନ୍ତି; ସେଥିପ୍ରତି ମହାରାଣୀ ସତର୍କ କରିଦେଇଥିଲେ । ପରେ ଦରବାର ଆରମ୍ଭ

କଲେ ରାଜା ସମସ୍ତଙ୍କୁ ଭୁଲିଯାଆନ୍ତି । ମଧ୍ୟାହ୍ନ ଭୋଜନର ବେଳ ଗଡ଼ିଯାଏ । ଥରେ ଥରେ ଅନ୍ତିମକାଳ ଅପରାହ୍ଣରେ ମହାରାଜ ଅନ୍ତଃପୁରକୁ ଫେରନ୍ତି । ...ମହାରାଣୀ କ୍ରମେ ଚିନ୍ତିତ ହୋଇ ଉଠୁଥିଲେ । ହୁଏତ ଏଥର ସ୍ୱୟଂ ମହାରାଜା ଯୁଦ୍ଧଯାତ୍ରା କରିପାରନ୍ତି ।

କାଳ, ବିକାଳ ଦୂତଦ୍ୱୟ ଏହି ସମ୍ବାଦ ଧରି ଆସିଥିଲେ ମଧ୍ୟ ରାଜା ମହିଷାସୁରଙ୍କ ସାମନାରେ ଏଭଳି ଦୁଃଖଦ ଘଟଣାର ବର୍ଣ୍ଣନା କରିବା ନିମନ୍ତେ ସେମାନେ ପଛଘୁଞ୍ଚା ଦେଉଥିଲେ । ପ୍ରିୟ ମହାରାଜାଙ୍କ କ୍ରୋଧ ଅପେକ୍ଷା ଆଶୁ-ଶୋକାକ୍ରାନ୍ତତା ହିଁ ସେ ଦୁହିଁଙ୍କୁ ବେଶୀ ବିବ୍ରତ କରୁଥିଲା । ଏଭଳି ଦୁଃସମ୍ବାଦ ପୂର୍ବରୁ ମଧ୍ୟ କାଳ, ବିକାଳ ଆଣିଥିଲେ—କାନ୍ତିମାଳା, ବିଡ଼ାଳାକ୍ଷ ରକ୍ତବୀଜ, କାଳଦଣ୍ଡ, ବୀରଘଣ୍ଟ ଆଦି ବୀରବିକ୍ରମୀଙ୍କର ମୃତ୍ୟୁ ସମ୍ବାଦ । ଅତଏବ ସେମାନେ ରଣଜୟୀ ହୋଇ ବାହୁଡ଼ିବେ ବୋଲି ମହିଷରାଜ ଏକ ପ୍ରକାର ନିଶ୍ଚିତ ଥିଲେ । ତାଙ୍କର ଶାସନ କାଳରେ କେତେ ଯୁଦ୍ଧ କରିଛନ୍ତି, କେତେ ରାଜ୍ୟରେ ଆକ୍ରମଣ । କିନ୍ତୁ ଏଭଳି ବିପର୍ଯ୍ୟୟ ପୂର୍ବରୁ କେବେ ଘଟିନଥିଲା ।

ହିରଣ୍ୟଗର୍ଭ ପର୍ବତ ପଛରେ ଲୁଚିରହି ଦୂତଦ୍ୱୟ ମହିଷ-ରାଜାଙ୍କ ସେନାବାହିନୀର ପତନ ଦେଖୁଥିଲେ । ଦେଖୁଥିଲେ କିଭଳି ଯୁଦ୍ଧରତ ସୈନ୍ୟମାନଙ୍କର ବିଚ୍ଛିନ୍ନ ଶରୀର ଗୋଟି ଗୋଟି ହୋଇ ଭୂମି ଉପରେ ଟଳିପଡୁଥିଲେ, ତା ସହିତ ଟଳିପଡ଼ୁଥିଲେ ମହିଷରାଜାଙ୍କ ସେନାପତି ବୃନ୍ଦ । ବୀରଙ୍କ ଉଷ୍ମ ରକ୍ତରେ ମେଦିନୀ କ୍ରମେ ସଦ୍ୟ ମୁକୁଳିତ ଜବା କୁସୁମର ରଙ୍ଗ ଧାରଣ କରୁଥିଲା । ସେମାନଙ୍କ ମୃତ୍ୟୁକାଳୀନ ଆର୍ତ୍ତ ଚିତ୍କାରରେ କମ୍ପି ଉଠୁଥିଲା ସମଗ୍ର ଭୁବନମଣ୍ଡଳ ।

ମହାରାଜା ପ୍ରଥମେ କାଳ-ବିକାଳଙ୍କ ବକ୍ତବ୍ୟକୁ ବିଶ୍ୱାସ କରିପାରିଲେ ନାହିଁ । ଏହା କଦାପି ସତ୍ୟ ନୁହେଁ—ସତ୍ୟ ହୋଇ ନପାରେ; ଚଞ୍ଚଳମତି ବହିର ନିଛକ ଏକ ଭିତ୍ତିହୀନ ସ୍ୱପ୍ନ ମାତ୍ର ! ସତେଇଶ ସାଗର ସୈନ୍ୟବାହିନୀ, ଅଠେଇଶ ଜଣ ବୀର୍ଯ୍ୟବାନ୍ ପୃଥ୍ୱୀଜୟୀ ସେନାପତିଙ୍କର ନିଧନ, ତାହା ପୁଣି ଗୋଟାଏ ସାମାନ୍ୟ ନାରୀର ହାତରେ ? ଅସମ୍ଭବ । କିନ୍ତୁ କଳ୍ପନାକୁ ଆଶ୍ରୟକରି ସତ୍ୟ ନିକଟରୁ କେତେ ସମୟ ପଛଘୁଞ୍ଚା

ଦେଇଦେବ ? ତାହାର ସାମ୍ନା କରିବାକୁ ହିଁ ତ ପଡ଼ିବ । ତେଣୁ ପର ମୁହୂର୍ତ୍ତରେ ସେ ସିଂହାସନରୁ ଉଠି ଭୂତଳରେ କଚ୍ଛଡ଼ିହୋଇ ପଡ଼ିଲେ । —ମୋର ସହୋଦର ସମବୀର ଯମଦଣ୍ଡ, କଙ୍କାସୁର, ଚଣ୍ଡାସୁର, ସୁ ପ୍ରଚଣ୍ଡାସୁର, ଧଙ୍କାସୁର, ପୁଷ୍ପସମ ଅତି ଆପଣାର ଶତଶିର, ସହସ୍ରଶିର, ଜପାସୁର, ଧପାସୁର···ଏମାନଙ୍କର ନାମ ଶୁଣିବାମାତ୍ରେ ଦେବତାଗଣ ସ୍ୱର୍ଗରେ ବାତ୍ୟା-ପ୍ରପୀଡ଼ିତ ପତ୍ରଭଳି କମ୍ପି ଉଠୁଥିଲେ । ହେ ବାଣାସୁର, ଦାତାସୁର, ହେ ମୋର ଧନୁର୍ଦ୍ଧର ସେନାପତିମାନେ, କିଭଳି ତୁମ୍ଭମାନଙ୍କର ପତନ ଘଟିଲା ? ଏଭଳି ଅସମ୍ଭବ କଥା କିଭଳି ସମ୍ଭବ ହେଲା ? କାଳ, ତୁ ସତ କହୁଛୁ ? ଦୂତ ବିକାଳ, ତୁ ନିଜ ଆଖିରେ ଏସବୁ ଦେଖି ଆସିଛୁ ? ପର୍ବତ ସନ୍ଧିରେ ବସି ଦୁହେଁ ମଦ୍ୟପାନ କରୁନଥିଲେ ତ ?

କ୍ରୋଧ ଓ ବ୍ୟାକୁଳତାରେ ମହିଷରାଜାଙ୍କର କଣ୍ଠ ଅବରୁଦ୍ଧ ହୋଇଯାଇଥିଲା । ସେ କେତେବେଳେ କ୍ରୋଧାନ୍ଧହୋଇ ସମ୍ମୁଖରେ ଦଣ୍ଡାୟମାନ ହେବାଭଳି ପ୍ରତୀତ ହେଉଥିବା ପରମ ଶତ୍ରୁ ଉପରକୁ ତରବାରି ଚାଳନା କରୁଥିଲେ, କେତେବେଳେ ପ୍ରହରୀ ହାତରୁ ବର୍ଚ୍ଛା ଟାଣିଆଣି ଶୂନ୍ୟକୁ ନିକ୍ଷେପ କରୁଥିଲେ, ପୁଣି କେତେବେଳେ ଛିନ୍ନମୂଳ ବଟବୃକ୍ଷ ଭଳି ଭୂମିରେ କଚ୍ଛଡ଼ିହୋଇ ପଡୁଥିଲେ ।

ଉପସ୍ଥିତ ସମସ୍ତେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହୋଇଥିଲେ । ମହାରାଜାଙ୍କର ଦୁଃଖବିବଶ କାତରତାର ଅନ୍ତିମ ଅବସ୍ଥାକୁ ଧୈର୍ଯ୍ୟର ସହିତ ଅପେକ୍ଷା କରି ରହିଥିଲେ । ପ୍ରବଳ ପରାକ୍ରମୀ ମହିଷରାଜଙ୍କର କ୍ରୋଧ-ଉତ୍ତେଜନାରେ ଅଭ୍ୟସ୍ତ ପାରିଷଦବର୍ଗ ଏତାଦୃଶ ଦୁର୍ବଳତା, ବ୍ୟାକୁଳଭାବ ଏବଂ ତଦ୍‌ଜନିତ ଉଚ୍ଚ କ୍ରନ୍ଦନରୋଳକୁ ସହଜରେ ଗ୍ରହଣକରି ପାରୁନଥିଲେ । କ୍ରମେ ଏକ ଅସହାୟତାର ଅନୁଭବ ସେମାନଙ୍କୁ ମୋହାଚ୍ଛନ୍ନ କରିବାକୁ ଆରମ୍ଭ କରୁଥିଲା । କାଳବିମୋଚନ ତେଣୁ ବେଶୀକ୍ଷଣ ଆଉ ନିଷ୍କ୍ରିୟ ହୋଇ ରହିପାରିଲେ ନାହିଁ । ମୂର୍ଚ୍ଛା ପ୍ରାପ୍ତ ହୋଇ ଗାଲିଚାରେ ପଡ଼ି ରହିଥିବା ରାଜାଙ୍କୁ ଟେକି ଉପରକୁ ଉଠାଇଲେ । କହିଲେ, ବିଶାଳ ହାତୀକୁ ମଧ୍ୟ ଗୋଟିଏ କ୍ଷୁଦ୍ରାଦପି କ୍ଷୁଦ୍ର ପିମ୍ପୁଡ଼ି ଯନ୍ତ୍ରଣାରେ ଛଟପଟ କରାଇପାରେ । ଏହା ତାର ଦେହଜ ଶକ୍ତି ନୁହେଁ, ବୁଦ୍ଧି ବଳରେ ହିଁ ସମ୍ଭବ ହୁଏ" ।

—ବୁଦ୍ଧି ! ଜଣେ ସ୍ତ୍ରୀଲୋକର ମୁଣ୍ଡରେ କେତେ ବୁଦ୍ଧି ଥାଏ ତା' କଣ ମୋତେ ଜଣାନାହିଁ ।

ମହିଷରାଜଙ୍କର ଏହିଭଳି ନୀରବାଧ୍ୟ ମନ୍ତବ୍ୟଟି ଏକୁ ହିଁ ଜାଲ ହିମୋଚନ ଅପେକ୍ଷା କରୁଥିଲେ । ଅପେକ୍ଷା କରୁଥିଲେ ନାରୀମାନଙ୍କ ପ୍ରତି ଥିବା ଏକାନ୍ତ ଅବଜ୍ଞା, ହେୟଭାବର ଅନ୍ତ ପରିଚିତ ଉଦ୍‌ଗୀରଣକୁ । କ୍ରୋଧ କିନ୍ତୁ କ୍ରମଶଃ ଆଶଙ୍କାରେ ରୂପାନ୍ତରିତ ହେଉଥିଲା । ମହାରାଜା କ୍ରମେ ଭୟଭୀତ ହୋଇ ଉଠୁଥିଲେ । ପ୍ରଥମକରି ମନରେ ନିଜ ଜୀବନପ୍ରତି ବିପଦର ଆଶଙ୍କା ସଞ୍ଚରିତ ହେଉଥିଲା । ଶିଶୁଂପା ବଟବୃକ୍ଷ ତଳେ ଅଶୀ ସହସ୍ରବର୍ଷର କଠୋର ନିରବଚ୍ଛିନ୍ନ ତପସ୍ୟା ଫଳରେ ସେ ବ୍ରହ୍ମାଙ୍କ ଆଶୀର୍ବାଦ ଲାଭ କରିଛନ୍ତି । ଅମରତ୍ୱର ଆଶୀର୍ବାଦ—ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର, ମହେଶ୍ୱର କେହି ତାଙ୍କୁ ବଧ କରିପାରିବେ ନାହିଁ । ଅନ୍ୟ ଦେବତାମାନେ ତ ଛାର । ସେହି ଦମ୍ଭ କ୍ରମେ ପ୍ରଭଞ୍ଜନ ହୋଇ ଆସୁଥିଲା ।

ଯୁଦ୍ଧରେ ସୈନ୍ୟ-ସାମନ୍ତ ଓ ସେନାପତିଗଣଙ୍କର ପରାଜୟ ଓ ମୃତ୍ୟୁ ଖବର ଚଣ୍ଡ, ମୁଣ୍ଡ ନେଇ ଆସିଥିଲେ । ଯୁଦ୍ଧର ପ୍ରଥମ ପର୍ଯ୍ୟାୟରେ । ମନ୍ତ୍ରୀ ଅନ୍ଧକ ତାଙ୍କୁ ସେତେବେଳେ ଏହାହିଁ କହିଥିଲେ—ଯେଉଁ ନାରୀ ସ୍ୱୟଂ ଆପଣଭଳି ପରାକ୍ରମଶାଳୀ ଯୋଦ୍ଧାକୁ ଯୁଦ୍ଧର ଆହ୍ୱାନ ଦେଉଛି ସେ ଜଣେ ସାମାନ୍ୟ ନାରୀ ନୁହେଁ । ସେ ବିଷ୍ଣୁଙ୍କର ଛଦ୍ମବେଶ । ମୋହିନୀ ରୂପ ଧାରଣକରି ସେ ରାକ୍ଷସଗଣକୁ କିଭଳି ନିଜର କପଟତାରେ ଭୁଲାଇ ଦେଇଥିଲେ ମନେ ପକାନ୍ତୁ । କେହି ଜଣେ ହେଲେ ଦୈତ୍ୟ ତାଙ୍କ ଛଳଭରାକୁ ବୁଝିପାରି ନଥିଲା । ...ଆପଣ ଯୁଦ୍ଧକ୍ଷେତ୍ରକୁ ଯାଇ ତାର ଶକ୍ତି ପରୀକ୍ଷା କରନ୍ତୁ ।

ମହିଷରାଜଙ୍କ ଗର୍ଜନରେ ମନ୍ତ୍ରୀ ଅନ୍ଧକଙ୍କର ବାକିତକ ଶବ୍ଦ ଅସ୍ଫୁଟ ରହିଯାଇଥିଲା । ଅନ୍ଧକଙ୍କୁ ସେ ଭୀରୁ ବୋଲି ଧିକ୍କାର କରିଥିଲେ । କ୍ରୋଧାନ୍ଧ ହୋଇ ଚଣ୍ଡ-ମୁଣ୍ଡଙ୍କୁ ଆଜ୍ଞା ଦେଇଥିଲେ, ବୀର ଦୁଃଶାସନ ଭଳି ଯାଅ । ସେ ମୂର୍ଖୀ, ଚତୁରୀର କେଶ ଧରି ମୋ' ସଭାକୁ ଟାଣି ଟାଣି ନେଇଆସ । ଦେଖିବା, ତା'ର କେତେ ରଣଶକ୍ତି !

ମହାରାଜା ମନେ ମନେ ଅଶାନ୍ତରୁ ବୋହବରଉ ଥିଲେ – ହୁଏତ ଅଷ୍ଟକଙ୍କ କଥା ହିଁ ଠିକ୍ ଥିଲା । ସେ ଚିରକାଳ ପାଇଁ ଅମର ରହିବେ । ବାର୍ଦ୍ଧକ୍ୟ ତାଙ୍କୁ ସ୍ପର୍ଶ କରିବ ନାହିଁ । ପ୍ରଳୟ ପର୍ଯ୍ୟନ୍ତ ଅଜେୟ ହୋଇ ରହିବେ—ଆଉ ମାତ୍ର ଗୋଟିଏ ବାକ୍ୟକୁ ସେ ସେଥିରେ ଯୋଗକରି ନ ଥିଲେ । ମହିଷରାଜଙ୍କ ମନରେ ଅନୁତାପ ଆସୁଥିଲା—ନାରୀଶକ୍ତିକୁ ହେୟଜ୍ଞାନ ନ କରି, ସେ ନାରୀ ଦ୍ୱାରା ଅବଧ ରହିବେ ବୋଲି ବ୍ରହ୍ମାଙ୍କ ଠାରୁ ସେତେବେଳେ ବରଟିଏ ମାଗି ନେଇଥିଲେ ବିଷ୍ଣୁ ଏଭଳି ସୁଯୋଗ କଦାପି ପାଇ ନ ଥା'ନ୍ତେ ।

ମହାରାଜାଙ୍କ ପ୍ରତିହିଂସିତ ମନର ଛବି କ୍ରମେ ତାଙ୍କ ମୁଖମଣ୍ଡଳରେ ସୁସ୍ପଷ୍ଟ ହୋଇ ଆସୁଥିଲା । କାଳ ବିମୋଚନଙ୍କ ଆଖିକୁ ତାହା ଏଡ଼ାଇ ଯାଇ ନଥିଲା । ସେ ଏହିଭଳି ସୁଯୋଗକୁ ହିଁ ଅପେକ୍ଷା କରୁଥିଲେ ଏବଂ ତାହା ସହିତ ନିଜ ମନକୁ ଦୃଢ଼ କରୁଥିଲେ ଯେ, ସେ ଏଥର ଆଉ ପଛଘୁଞ୍ଚା ଦେବେ ନାହିଁ । ଯୁକ୍ତି, ପ୍ରରୋଚନାରେ ମହାରାଜାଙ୍କ ମନରେ ପ୍ରଭାବ ପକାଇବ । ସନ୍ଧି ପାଇଁ ସମ୍ମତ କରିବେ । ନଚେତ୍ ଏତେ ବିଶାଳ ଓ ସମୃଦ୍ଧ ରାଜ୍ୟ ଅଚିରେ ବୀରଶୂନ୍ୟ ହୋଇ ପଡ଼ିବ ।

ମହାରାଜା ମଧ୍ୟ ତାହାହିଁ ଅନୁଭବ କରୁଥିଲେ ଏବଂ ସେଥିପାଇଁ ବ୍ୟଥିତ ହୋଇ ଉଠୁଥିଲେ ଯେ, ଅଷ୍ଟକଙ୍କ ଉପଦେଶକୁ ସେତେବେଳେ ଗ୍ରହଣ କରି ନେଇଥିଲେ ବଜ୍ରାଙ୍ଗ, ବାଣାସୁରଙ୍କ ଭଳି ମହାଯୋଦ୍ଧାଙ୍କର ଏଭଳି ଅକାଳ ମୃତ୍ୟୁ ହୁଏତ ହୋଇ ନ ଥା'ନ୍ତା ।

କାଳବିମୋଚନଙ୍କ ଉପଦେଶକୁ ମହିଷରାଜ ବିନା ବାକ୍ୟରେ ତେଣୁ ଗ୍ରହଣ କରି ନେଇଥିଲେ । ରାଜରଥ ସଜ୍ଜିତ କରିବା ପାଇଁ ସାରଥି ଧୂମ୍ରଲୋଚନଙ୍କୁ ତତ୍‌କ୍ଷଣାତ୍ ଆଦେଶ ଦେଇଥିଲେ ।

× × × ବ୍ରହ୍ମ ଅଭିଶାପଗ୍ରସ୍ତ ଅଭିମନ୍ୟୁ ପୁତ୍ର ପରୀକ୍ଷିତଙ୍କୁ ତକ୍ଷକ ସର୍ପ ଦଂଶନ କରିଥିଲା । ପରୀକ୍ଷିତଙ୍କର ସମଗ୍ର ଶରୀର ଉଗ୍ର ବିଷର ଜ୍ୱାଳାରେ କ୍ରମେ ଜର୍ଜରିତ ହୋଇ ଉଠୁଥିଲା । ଶୁକମୁନି ରାଜାଙ୍କର ଜୀବନର ଅନ୍ତିମ ସମୟରେ ଦେବଦେବୀଙ୍କ ବିଷୟରେ କାହାଣୀମାନ କହି ତାଙ୍କର ଯନ୍ତ୍ରଣା ଉପଶମ ପାଇଁ ଚେଷ୍ଟା କରୁଥିଲେ । ଅନ୍ତର ମଧ୍ୟରେ

ଧର୍ମବାନ ଥାଇ ମୃତ୍ୟୁ ହେଲେ ରାଜାଙ୍କର ସ୍ୱର୍ଗଯାତ୍ରା ଅଧିକ ସୁଗମ ହେବ ବୋଲି ଧର୍ମପ୍ରାଣ ଶୁକମୁନି ସେହିଭଳି ପରିବେଶଟିଏ ସୃଷ୍ଟି କରିବାର ପ୍ରଯତ୍ନ କରୁଥିଲେ । ବ୍ରହ୍ମା-ବିଷ୍ଣୁ-ମହେଶ୍ୱରଙ୍କ ବଳ-ବୀର୍ଯ୍ୟରେ ପ୍ରତିଭାତ ଦେବୀ ଦୁର୍ଗା କିଭଳି ଦୈତ୍ୟ ମହିଷାସୁରଙ୍କୁ ବଧକରି ଦେବତାଗଣଙ୍କୁ ବିପଦମୁକ୍ତ କରିଥିଲେ, ସେହି ବୃତ୍ତାନ୍ତ ଶୁକମୁନି କହୁଥିଲେ । ହଠାତ୍ ସେ ଗଳ୍ପ ମଝିରେ ଅଟକିଗଲେ । ମଣିମୁକ୍ତା ଖଚିତ ମହିଷରାଜଙ୍କର ସେହି ବିସ୍ମିତ ରଥର ପ୍ରତିଛବି ଶୁକମୁନିଙ୍କ ମାନସପଟରେ ଉଭା ହେଲା ।

ରାଜା ପରୀକ୍ଷିତ ପ୍ରଶ୍ନକଲେ—ମୁନିବର, ଆପଣ ନୀରବ ରହିଗଲେ ଯେ !

—ସେହି ଅପୂର୍ବ ରାଜରଥ ବିଷୟରେ ଟିକେ ବିଶ୍ରାନ୍ତି କରୁଛି ମହାରାଜ । ମୋର ବିଶ୍ୱାସ, ଆପଣଙ୍କୁ ତାହା ଶୁଣିବା ପାଇଁ ଭଲଲାଗିବ । ତାହାର ସୌନ୍ଦର୍ଯ୍ୟ ଯେପରି ଅନୁପମ ଇତିହାସ ତାହାଠାରୁ ବଳି ବୈଚିତ୍ର୍ୟମୟ ।

ମହିଷରାଜର ରଥ "ସୂର୍ଯ୍ୟମଣ୍ଡଳ ରଥ" । ତାହା ବ୍ରହ୍ମଜାତ ହୀରା, ଗଜମୁକ୍ତା, ମାଣିକ୍ୟ ଆଦିରେ ଏଭଳି ସଜ୍ଜିତ ଯେ, ସେଥିରୁ ଆଦିତ୍ୟଙ୍କର ଜ୍ୟୋତି ପ୍ରକଟିତ ହେବା ଭଳି ମନେହୁଏ । ତାହାର ସ୍ତମ୍ଭମାନ ମର୍କତ ମଣିରେ ତିଆରି । ପାଦଚକ୍ରମାନ ହୀରା ଖଚିତ । କଳସ-ମାନଙ୍କରେ ଅଷ୍ଟରତ୍ନ ଖଞ୍ଜାଯାଇଛି । ରଥଟିର କାୟା ଅତି ବିଶାଳ । ତାହାର ଚୂଡ଼ାରେ ଖଚିତ ଲକ୍ଷ ଲକ୍ଷ ବାତ୍ୟା ଆନ୍ଦୋଳିତ ଧ୍ୱଜାପତାକା ପର୍ବତ ପଛରୁ ଉଦିତ-ସୂର୍ଯ୍ୟର ଶୋଭା ଧାରଣ କରେ । ତାହାର ଚକଗୁଡ଼ିକ ମଧ୍ୟ ଦୁର୍ମୂଲ୍ୟ ରତ୍ନଖଚିତ । ଝୁରିଗୁଡ଼ିକ ମାଣିକ୍ୟ ଖଚିତ;···

ସୂର୍ଯ୍ୟମଣ୍ଡଳ ରଥର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ଶୁକମୁନି ଯେପରି ଶତମୁଖ । କିନ୍ତୁ ରାଜା ପରୀକ୍ଷିତ ତାହାର ଇତିହାସ ଜାଣିବା ପାଇଁ ଅଧୈର୍ଯ୍ୟ ହୋଇ ଉଠିଲେ—ମହାମୁନି, ଦେବତା ଆଦିତ୍ୟଙ୍କର ରଥକୁ ମହିଷାସୁର ଭଳି ପାଷାଣ୍ଡ ପାଇଲା କିପରି ? ସପ୍ତଅଶ୍ୱ ଯୋଚିତ ରଥର ସାରଥି ଧୂମ୍ରଲୋଚନ ନୁହେଁ, ସ୍ୱୟଂ ଅରୁଣ ଦେବ ବୋଲି···।

ଯନ୍ତ୍ରଣା ଜର୍ଜରିତ ମହାରାଜାଙ୍କର ଏହି କୌତୁହଳ ଦେଖି ଶୁକମୁନି ପ୍ରୀତ ହେଲେ । ଏହାହିଁ ତ ସେ ଶୁଣୁଥିଲେ । ତେଣୁ ମମତାମୟ କଣ୍ଠରେ କହିଲେ, ଆପଣଙ୍କ ପ୍ରଶ୍ନ ଯଥାର୍ଥ । କାହିଁ ସୂର୍ଯ୍ୟଦେବ, କାହିଁ ମହିଷାସୁର ଦୈତ୍ୟ ! କିନ୍ତୁ ଦୁର୍ଯ୍ୟୋଗ ଏମିତି ଯେ, ସ୍ୱର୍ଗ ପଥରେ ଥରେ ସୂର୍ଯ୍ୟ-ଦେବଙ୍କର ରାହୁ ସହିତ ଭେଟ ହୋଇଗଲା । ଆପଣ ଜାଣନ୍ତି, ବିଷ୍ଣୁଙ୍କ ଚକ୍ରରେ ଛେଦିତ ହୋଇଥିଲେ ମଧ୍ୟ ଅମୃତ ପାନ ଯୋଗୁ ରାହୁ, କେତୁ ଅମର ରହିଥିଲେ ।

ରାହୁ ସୂର୍ଯ୍ୟଦେବଙ୍କୁ ଅତର୍କିତ ଆକ୍ରମଣ କରିବା ପାଇଁ ଧାଇଁଲା । ସୂର୍ଯ୍ୟଦେବ ରଥରୁ ଧାଇଁ ପଳାଇଲେ ଏବଂ କ୍ଷୀର ସମୁଦ୍ର ଗର୍ଭରେ ଲୁଚିଗଲେ । ପ୍ରତିହିଂସା ପରାୟଣ ରାହୁ ସୂର୍ଯ୍ୟଙ୍କୁ ନ ପାଇ ରଥଟିକୁ ଗିଳିଦେଲା ଏବଂ ଅନନ୍ତଗିରି ନିକଟରେ ତାହାକୁ ଗର୍ଭ ମଧ୍ୟରୁ ଉଦ୍‌ଗାର କରି ଚାଲିଗଲା । ଦେବ ଆଦିତ୍ୟ ଦୈତ୍ୟର ଉଚ୍ଛିଷ୍ଟ ରଥକୁ ଆଉ ଗ୍ରହଣ କଲେ ନାହିଁ । ବିଶ୍ୱକର୍ମାଙ୍କୁ ଅନ୍ୟ ଏକ ରଥ ପାଇଁ ବିବାଦ କଲେ । କିନ୍ତୁ ରାହୁପୁତ୍ର ଅମ୍ବୁ ସେହି ଦେବଭୋଗ୍ୟ ରଥକୁ ନିଜ ରାଜ୍ୟକୁ ନେଇ ଯିବାରୁ ପ୍ରତ୍ୟକ୍ଷ ଯୁଦ୍ଧରେ ଅମ୍ବୁକୁ ବଧକରି ଇନ୍ଦ୍ରଦେବ ରଥଟିକୁ ସ୍ୱର୍ଗକୁ ନେଇ ଗଲେ । କାରଣ ଏଭଳି ରଥ ଦୈତ୍ୟ ସେବାରେ ଲଗିବା ଦେବତାଙ୍କ ପାଇଁ ଘୋର ଅସମ୍ମାନ ଜନକ । କିନ୍ତୁ ପିତୃହତ୍ୟାର ପ୍ରତିଶୋଧ ନେବା ପାଇଁ ମୟଦାନବ ଅଚିରେ ଇନ୍ଦ୍ରପୁରୀ ଆକ୍ରମଣ କଲା । ସେ ଶିବଙ୍କ ପ୍ରାସାଦରେ ବଳୀୟାନ ହୋଇଥିଲା ।

ଇନ୍ଦ୍ରଦେବ ଯୁଦ୍ଧରେ ହାରି ଅମରପୁର ଛାଡ଼ି ଲୁଚିଲେ । ମୟ ଇନ୍ଦ୍ରପୁର ଲୁଣ୍ଠନ କଲା ଏବଂ ସୂର୍ଯ୍ୟମଣ୍ଡଳ ରଥକୁ ଦୈତ୍ୟପୁରକୁ ଧରି ଆସିଲା । କିନ୍ତୁ ଉଦ୍ଧତ ମୟଦାନବ ତାହାକୁ ବେଶୀଦିନ ଭୋଗକରି ପାରିଲା ନାହିଁ । ସେ ବିଷ୍ଣୁଙ୍କ ହାତରେ ନିହତ ହେଲା ଏବଂ ବିଷ୍ଣୁ ପୁନଶ୍ଚ ସେହି ରଥକୁ ସ୍ୱର୍ଗପୁରକୁ ନେଇ ଗଲେ ।

ମୟର ପୁତ୍ର ଅନ୍ଧକ ପ୍ରଚଣ୍ଡ ବଳଶାଳୀ ହେଲା । ତାହାର ଦୌରାତ୍ମ୍ୟରେ ଦେବମଣ୍ଡଳ ଥରହର ହୋଇ ଉଠିଲା । ସେ ଅବଶେଷରେ ଶିବଙ୍କ ହସ୍ତରେ ନିହତ ହେଲା ଏବଂ ତା'ର ପୁତ୍ରଦ୍ୱୟ, ରକ୍ଷକ, ଭକ୍ଷକ ବିଷ୍ଣୁଙ୍କ ହସ୍ତରେ । ବିଷ୍ଣୁ ପୁନଶ୍ଚ ସ୍ୱର୍ଗପୁରରେ ନେଇ ରଥକୁ ରଖିଲେ ।

କିନ୍ତୁ ରଥର ଭାଗ୍ୟ ଏମିତି ବିଚିତ୍ର ଯେ, ତାହା ପ୍ରତ୍ୟେକ ଦାନବ ଅଧିକୃତ ହେଉଥାଏ । ତେଣୁ ରକ୍ଷ, ଭକ୍ଷକଙ୍କର ପୁତ୍ର ହେତି ଓ ପ୍ରହେତି ପୁନଶ୍ଚ ଦେବଲୋକ ଆକ୍ରମଣରେ ବିଜୟୀ ହୋଇ ରଥକୁ ଦନୁଜ ଲୋକକୁ ନେଇ ଆସିଲେ ।

ଦାନବମାନଙ୍କ ଅତ୍ୟାଚାରରେ ତ୍ରିଲୋକ ଥରହର ହେଲା । ଇନ୍ଦ୍ର ସେମାନଙ୍କ ଉପରେ ଯାଇ ଲୁଚିଲେ । ରାଜାଶୂନ୍ୟ ଦେବଲୋକରେ ଦେବତା, ଅପ୍ସରା, କିନ୍ନରଗଣ ରାକ୍ଷସମାନଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ଉଠିଲେ । ଭୂଲୋକବାସୀ ତଥା ମୁନିଋଷିମାନଙ୍କ ଅବସ୍ଥା ଆହୁରି ଦୟନୀୟ ହୋଇ ଉଠିଲା । ଅବଶେଷରେ ବିଷ୍ଣୁ ପାପୀ ଦଳନ ପାଇଁ ନର ରୂପରେ ଜନ୍ମ ନେଲେ—ଦେବକୀଙ୍କ ଅଷ୍ଟମ ଗର୍ଭରେ ଶ୍ରୀକୃଷ୍ଣ ଅବତାରରେ । ସେ ହେତି ପ୍ରହେତିଙ୍କୁ ଦମନ କରି ସୂର୍ଯ୍ୟମଣ୍ଡଳ ରଥକୁ ସଙ୍ଗରେ ନେଇଗଲେ । ଏଥରି ତାହାକୁ ସଞ୍ଜୀବନୀଙ୍କ ଦାୟିତ୍ୱରେ ରଖିଲେ ।

ହେତି-ପ୍ରହେତିଙ୍କର ଉତ୍ତରାଧିକାରୀ ବଜ୍ରାଙ୍ଗ ରଥଟି ପାଇବା ପାଇଁ ବ୍ୟାକୁଳ ହୋଇ ଉଠିଲା । ଅବଶେଷରେ ସମଲୋକ ଆକ୍ରମଣ କରି ବଜ୍ରାଙ୍ଗ ରଥର ଅଧିକାରୀ ହେଲା । ରଥ ସାହାଯ୍ୟରେ ସେ ଅଦମନୀୟ ହୋଇ ଉଠିଲା । ପୁନଶ୍ଚ ଦେବତାମାନେ ଅନନ୍ତଶୟନଶାୟୀଙ୍କୁ ପ୍ରାର୍ଥନା କଲେ । ନାରାୟଣ ରୂପରେ ବିଷ୍ଣୁ ଚତୁର୍ଭୁଜ ମୂର୍ତ୍ତି ହୋଇ ସେମାନଙ୍କ ସମ୍ମୁଖରେ ପ୍ରକଟିତ ହେଲେ । ସେମାନଙ୍କୁ ଆଶ୍ୱାସନା ଦେଲେ । ବଜ୍ରାଙ୍ଗ ସହିତ ବିଷ୍ଣୁଙ୍କର ସମ୍ମୁଖ ଯୁଦ୍ଧ ହେଲା । ତାହାକୁ ବଧକରି ବିଷ୍ଣୁ ପୁନଶ୍ଚ ରଥକୁ ନେଇ ପାତାଳପୁରରେ ରଖିଲେ ।

ସମ୍ପ୍ରତି ଦେବତାମାନେ ସୂର୍ଯ୍ୟମଣ୍ଡଳ ରଥକୁ ନେଇ ହେଉଥିବା ବିପର୍ଯ୍ୟୟକୁ ଭୁଲି ନିଶ୍ଚିନ୍ତ ମନରେ ନିଜ ନିଜର କର୍ତ୍ତବ୍ୟରେ ବ୍ୟସ୍ତ ରହିଲେ । କିନ୍ତୁ ବଜ୍ରାଙ୍ଗର ଶିଶୁପୁତ୍ର ଦୁହେଁ ଏକଥା ଭୁଲି ନଥିଲେ । ବୀର ପିତାଙ୍କର ଅକାଳ ମୃତ୍ୟୁର କାହାଣୀ ଶୁଣି ଶୁଣି ସେମାନେ ବଡ଼ ହେଲେ । କିଶୋର ବୟସରୁ ହିଁ ପିତୃହତ୍ୟାର ପ୍ରତିଶୋଧ ପାଇଁ ବଦ୍ଧ-ପରିକର ହୋଇଥିଲେ । ଦୁହେଁ ସିଦ୍ଧିପ୍ରାପ୍ତି ନିମନ୍ତେ ଘୋର ତପସ୍ୟା

କଲେ । ସୂର୍ଯ୍ୟଦେବତା ପ୍ରୀତ ହୋଇ ତାହାଙ୍କୁ ଜଗତ୍‌ଜୟୀ ହେବାର ବର ପ୍ରଦାନ କଲେ । ଏହା ପରେ ଦୈତ୍ୟ ଦେବତାଙ୍କର ସଂଘର୍ଷର ପୁନରାବୃତ୍ତି । ସେମାନେ ଅଭିଯାନର ପ୍ରାରମ୍ଭରେ ହିଁ ରଥଟିକୁ ସଙ୍ଗରେ ନେଇ ଯାଇଥିଲେ । ଦାନବମାନଙ୍କ ଅତ୍ୟାଚାର ଦିନୁଦିନ ବଢ଼ିଲା । ବିଷ୍ଣୁ ଅବଶେଷରେ ଜନାର୍ଦ୍ଦନ ରୂପ ଧାରଣ କରି ମାଳି, ସୁମାଳିଙ୍କୁ ହତ୍ୟା କଲେ । ସୂର୍ଯ୍ୟମଣ୍ଡଳ ରଥକୁ ନେଇ ସ୍ୱୟଂ ବ୍ରହ୍ମାଙ୍କ ପ୍ରାସାଦରେ ରଖିଲେ ।

ବିଷ୍ଣୁ ରଥର ସୁରକ୍ଷା ବିଷୟରେ ଏଥର ନିଶ୍ଚିନ୍ତ ହୋଇ ଅନନ୍ତଶୟନ କଲେ । ସୁନୀଳ ସାଗର ବକ୍ଷରେ ଶେଷନାଗଙ୍କର କୁଣ୍ଡଳୀ-କୃତ ଶରୀରର ସୁକୋମଳ ଶଯ୍ୟା । ନିକଟରେ ହରିପ୍ରିୟା ମହାଲକ୍ଷ୍ମୀ । କେତେବେଳେ ବିଷ୍ଣୁଙ୍କ ସହିତ ଆଳାପ କରୁଛନ୍ତି ତ କେତେବେଳେ ପଦ ଉପରେ ହସ୍ତ ସଞ୍ଚାଳନ କରୁଛନ୍ତି । ବିଷ୍ଣୁ ତାହାଙ୍କୁ ବାରଣ କରି କହିଲେ—ଥାଉ ଲକ୍ଷ୍ମୀ । ତମେ ଜଗତ୍ ଜନନୀ । ମୋର ଏଭଳି ପାଦସେବା କଲେ ତମର ପୁତ୍ରକନ୍ୟାମାନେ ମୋ' ଉପରେ ରାଗିଯିବେ ଯେ, ମୁଁ ତମକୁ ସବୁବେଳେ ଦାସୀଭଳି ଖଟାଉଛି ।

ଏହି ବାରଣ କରିବା ସହିତ କିଞ୍ଚିତ୍ ପରିହାସ ମଧ୍ୟ ଥିଲା ।

ମହାଲକ୍ଷ୍ମୀ ସ୍ମିତହାସ୍ୟ ମଧ୍ୟରେ ପ୍ରତ୍ୟୁତ୍ତର ଦେଲେ—ଧରଣୀ ମାତା ନିଜକୁ ତପ୍ତ ଶୁଷ୍କ କରିଦେଲେ ଯାଇଁ ଆକାଶ ପିତା ତା'ର ସନ୍ତାନମାନଙ୍କୁ କରୁଣା ବାରି ବର୍ଷି ଦିଅନ୍ତି, ଅନ୍ୟଥା ନାହିଁ । ମୁଁ ଆପଣଙ୍କର ପଦସେବା କରୁଥିବା ଦୃଶ୍ୟରେ ତ ମୋ'ର ସନ୍ତାନମାନେ ଚର ଅଭ୍ୟସ୍ତ ।...ମୋର ମଧ୍ୟ ଧରଣୀ ଭଳି ଅବସ୍ଥା । କାଳେ ଆପଣ ମୋର ସନ୍ତାନମାନଙ୍କୁ ବିପଦରୁ ରକ୍ଷା କରିବାରେ...

ମହାଲକ୍ଷ୍ମୀଙ୍କର ଏହି ଉକ୍ତି ବିଷ୍ଣୁଙ୍କ ପରିହାସର ପ୍ରତ୍ୟୁତ୍ତର ହିଁ ଥିଲା । କିନ୍ତୁ ବିଷ୍ଣୁଙ୍କର ତନ୍ଦ୍ରାଳସ ଆଖି ଦୁଇଟି ବିସ୍ଫାରିତ ହୋଇଗଲା । ସେ ତତ୍‌କ୍ଷଣାତ୍ ପାଦ ଘୁଞ୍ଚାଇ ଉଠିବସିଲେ । ପତ୍ନୀଙ୍କର କୋପକୁ ତାଙ୍କର ବଡ଼ ଭୟ ।

ବିଷ୍ଣୁଙ୍କର ଉପଦ୍ରବ ଦେଖି ମହାଲକ୍ଷ୍ମୀ ଜୋରରେ ହସିଉଠିଲେ । ତାଙ୍କ ମୁଖମଣ୍ଡଳରେ ସୂର୍ଯ୍ୟଙ୍କର କଚି କିରଣ ଆସି ଝଲସିହୋଇ ଯାଉଥିଲା । ନାଗଦେବ ଫଣା ବୁଲାଇ ତାଙ୍କୁ ଆଡ଼ୁଆଳ କଲେ । ଏହି ସମୟରେ ଦୂରରୁ ଚିତ୍କାର ଶୁଣାଗଲା । ଅଟ୍ଟହାସ୍ୟର ବଜ୍ରଗମ୍ଭୀର ନିନାଦ ସହିତ ବ୍ୟାକୁଳ ନାରୀକଣ୍ଠର କରୁଣ କ୍ରନ୍ଦନର ଧ୍ୱନି—ଏକ ନୁହେଁ, ଅନେକ ।

ଶ୍ରୀବିଷ୍ଣୁ ଦିବ୍ୟଚକ୍ଷୁରେ ସବୁ ଦେଖି ପାରୁଥିଲେ ।

ମାଳିପୁତ୍ର ମଧୁଦୈତ୍ୟର ତପସ୍ୟାରେ ପ୍ରୀତ ହୋଇ ଶିବ ତାହାକୁ ବର ଦେଲେ । ସେହି ବରରେ ବଳୀୟାନ ଦୈତ୍ୟ ସଙ୍ଗେ ସଙ୍ଗେ ସ୍ୱର୍ଗଲୋକ ଆକ୍ରମଣ କଲା । ସ୍ୱୟଂ ବ୍ରହ୍ମା ତା'ର ପରାକ୍ରମରେ ଉପଦ୍ରୁତ ହୋଇ ଦେବଲୋକରୁ ପଳାୟନ କଲେ । ମଧୁଦୈତ୍ୟ ଅନାୟାସରେ ସୂର୍ଯ୍ୟମଣ୍ଡଳ ରଥଟିକୁ ଅକ୍ତିଆର କଲା । ତାହାକୁ ଆରୋହଣ କରି ମୂଢ଼ ଦୈତ୍ୟ ଦେବଲୋକ ସାରା ଘୂରିବୁଲିଲା । ଅପ୍ସରାମାନଙ୍କୁ ବଳପୂର୍ବକ ରଥକୁ ଉଠାଇ ଆଣିଲା । ବିଷ୍ଣୁଙ୍କ ସହିତ ଭେଟ ହେବା ସମୟକୁ ସେ ଷୋଳସହସ୍ର ଅପ୍ସରାଙ୍କୁ ଧରି ନିଜ ଦେଶକୁ ଫେରୁଥିଲା । ଗରୁଡ଼ ଉପରେ ବସି ବିଷ୍ଣୁ ତାହା ସହିତ ଯୁଦ୍ଧ କଲେ । ଭୟତ୍ରସ୍ତ ଦେବତାମାନେ ସେହି ଯୁଦ୍ଧକୁ ଦୂରରେ ରହି ଦେଖୁଥିଲେ । ଅବଶେଷରେ ଦୈତ୍ୟ ନିଧନ ହେଲା । ଦେବତାଗଣ ବିଷ୍ଣୁଙ୍କର ପଦବନ୍ଦନା କଲେ । ବ୍ରହ୍ମା ଆଶ୍ୱସ୍ତ ହେଲେ । ଆଦର ସମ୍ଭାଷଣ କରି ବିଷ୍ଣୁଙ୍କୁ ନୂତନ ନାମଟିଏ ଦେଲେ—'ମଧୁସୂଦନ' ।

ରଥଟିକୁ ନେଇ ଏଥର ବରୁଣ ଦେବତାଙ୍କ ଜିମାରେ ଦେଇ, ଶ୍ରମକ୍ଳାନ୍ତ ବିଷ୍ଣୁ ଅନନ୍ତ ଶୟନକୁ ଫେରିଗଲେ । ପ୍ରବଳ ଇଚ୍ଛା ହେଉଥିଲେ ମଧ୍ୟ ମହାଲକ୍ଷ୍ମୀ ସ୍ୱାମୀଙ୍କୁ ଯୁଦ୍ଧ ବିଷୟରେ କୌଣସି ପ୍ରଶ୍ନ କଲେନାହିଁ । ଦିବ୍ୟଦୃଷ୍ଟିରେ ସେ ଯୁଦ୍ଧକୁ ଯେ ନ ଦେଖିଛନ୍ତି ଏମିତି ନୁହେଁ, କିନ୍ତୁ ପ୍ରତିଥର ଭଳି ସେ ସ୍ୱାମୀଙ୍କ ମୁଖରୁ ହିଁ ସମସ୍ତ ବିବରଣୀ ଶୁଣିବା ପାଇଁ ଭଲ ପାଆନ୍ତି । ଏଥର ଦେବୀ କେବଳ ସ୍ୱାମୀଙ୍କ ପାଦ ନୁହେଁ, ତାଙ୍କର ସମସ୍ତ ଶରୀରରେ ପଦ୍ମପାଙ୍ଖୁଡ଼ାସମ ସୁକୋମଳ ହସ୍ତ ସଞ୍ଚାଳନ କରି ତାଙ୍କର କ୍ଳାନ୍ତି ଅପନୋଦନର ଚେଷ୍ଟା କଲେ । ଷୋଳ ସହସ୍ର

ଅପ୍ସରଙ୍କୁ ଦୈତ୍ୟ କବଳରୁ ମୁକ୍ତକରି, ବିଷ୍ଣୁ ସସମ୍ମାନେ ସ୍ୱର୍ଗପୁରରେ ନେଇ ଛାଡ଼ିବାର ଦୃଶ୍ୟ ବାରମ୍ବାର ଦେବୀଙ୍କ ମାନସପଟରେ ଉଦ୍ଭାସିତ ହେଉଥିଲା ଏବଂ ପ୍ରତିଥର ତାଙ୍କ ହୃଦୟ ଗଭୀର କୃତଜ୍ଞତା ଓ ଅସୀମ ପ୍ରୀତିରେ ପରିପୂର୍ଣ୍ଣ ହୋଇ ଉଠୁଥିଲା ।

ଲକ୍ଷ୍ମୀଙ୍କର ସ୍ନିଗ୍ଧ ସ୍ପର୍ଶରେ ବିଷ୍ଣୁଙ୍କ କ୍ଲାନ୍ତି ମଧ୍ୟ ଦୂର ହୋଇ ଯାଉଥିଲା । ସେ ମନେ ମନେ ଭାବୁଥିଲେ, ନାରୀ ହିଁ ସେବାର ଅବତାର । ଏଭଳି ସେବା ପୁରୁଷ ପକ୍ଷରେ କରିବା କଦାପି ସମ୍ଭବ ନୁହେଁ ।

× × × ପ୍ରତିଥର ହାରି ଯାଉଥିଲେ ମଧ୍ୟ ଦୈତ୍ୟ ବଂଶର ପ୍ରତିହିଂସା ଅଦମନୀୟ । ବରଂ ପ୍ରତିଶୋଧର ପ୍ରବୃତ୍ତି ବେଳକୁବେଳ ବୃଦ୍ଧି ପାଉଥିଲା । ତାହା ସହିତ ଭୋଳାନାଥଙ୍କର ଭୋଳାପଣର ମଧ୍ୟ ପଟାନ୍ତର ନାହିଁ । ଟିକିଏ ଆବେଦନରେ ବିଗଳିତ ହୋଇ ପ୍ରଚୁର କରୁଣା ଢାଳି ଦିଅନ୍ତି । ତେଣୁ ମଧୁଦୈତ୍ୟର ପୁତ୍ର ଜଳନ୍ଧରଙ୍କ ତପସ୍ୟା ବଳରେ ପୁନଶ୍ଚ ତାଙ୍କର ଆଶୀର୍ବାଦ ପ୍ରାପ୍ତହେଲା । ଆଶୀର୍ବାଦ ପ୍ରାପ୍ତି ମାତ୍ରେକ ବରୁଣପୁର ଆକ୍ରମଣ କରି ସେ ବରୁଣ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କଲା । ରାଜ୍ୟ ସହିତ ସେଠାରେ ଥିବା ସମସ୍ତ ସୁନ୍ଦରୀ ତରୁଣୀଙ୍କୁ ଅଧିକାର କଲା । ସେମାନଙ୍କୁ ବଳପୂର୍ବକ ସମ୍ଭୋଗ କଲା । ଏଭଳି ଔଦ୍ଧତ୍ୟର ଆତିଶଯ୍ୟ ବିଷ୍ଣୁଙ୍କୁ କ୍ରୋଧକମ୍ପିତ କରିଦେଲା । ସେ ଦାମୋଦର ଅବତାର ଗ୍ରହଣ କରି ଜଳନ୍ଧରଙ୍କୁ ହତ୍ୟା କଲେ । ବରୁଣପୁରକୁ ମୁକ୍ତ କଲେ । ଋଥଷିକୁ ପୁନଶ୍ଚ ସ୍ୱର୍ଗଭୁବନକୁ ନେଇଗଲେ ।

ଜଳନ୍ଧରଙ୍କର ପୁତ୍ର ତାରକା ଅଚିରେ ସ୍ୱର୍ଗମଣ୍ଡଳ ଆକ୍ରମଣ କଲା । ଇନ୍ଦ୍ରଦେବ ସମ୍ମୁଖ ଯୁଦ୍ଧରେ ପରାସ୍ତ ହେଲେ । ସ୍ୱର୍ଗ ପୁନଶ୍ଚ ଦାନବାଧିକୃତ ହେଲା । ଦେବତାଗଣ ପୁନଶ୍ଚ ଲାଞ୍ଛିତ, ଅପମାନିତ ହେଲେ । ତାରକାର ଅତ୍ୟାଚାରରେ ନରଲୋକ ଥରହର ହେଲା । ଅବଶେଷରେ ଦେବୀ ପାର୍ବତୀଙ୍କ ପୁତ୍ର କାର୍ତ୍ତିକେୟ କୁମାର, ତାରକାକୁ ବଧ କରି ଏହି ସମସ୍ତ ଦୁର୍ଦ୍ଦଶାର ଅବସାନ ଘଟାଇଲେ । ସୂର୍ଯ୍ୟମଣ୍ଡଳ ଋଥକୁ ଅଳକାପୁରୀରେ ନେଇ ରଖିଲେ ।

ବ୍ରହ୍ମାଙ୍କ ବରପ୍ରାପ୍ତ ହୋଇ ଶୁମ୍ଭ, ନିଶୁମ୍ଭ ଦୈତ୍ୟ ଭାଇ ଦୁହେଁ ଅତ୍ୟନ୍ତ ବଳଶାଳୀ ହୋଇ ଉଠିଲେ । ସେମାନେ ସ୍ୱର୍ଗପୁର ଆକ୍ରମଣ କରି

ରଥକୁ ପୁନଶ୍ଚ ଦାନବ ଅଧିକାରକୁ ଆଣିଲେ । ବ୍ରହ୍ମାଙ୍କ ବର ଏବଂ ରଥର ଐଶ୍ୱର୍ଯ୍ୟ ଶକ୍ତି ବଳରେ ସେମାନେ ରଥାରୂଢ଼ ହୋଇ ବହୁ ଦେଶ ଜୟ କଲେ ।

ମହିଷାସୁର ଏକଦା ଶୁମ୍ଭ, ନିଶୁମ୍ଭଙ୍କ ରାଜ୍ୟ କୁଳବଣିକୁ ଆକ୍ରମଣ କରିଥିଲା । ଯୁଦ୍ଧରେ ମହିଷରାଜର ବହୁତ ସୈନ୍ୟ ମଲେ । ସେ ମଧ୍ୟ ପରାସ୍ତ ହୋଇ ଶରଣ ପଶିଲା । କିନ୍ତୁ ତାଙ୍କର ଯୁଦ୍ଧ ନିପୁଣତା ଓ ବୀରତ୍ୱରେ ଶୁମ୍ଭ, ନିଶୁମ୍ଭ ଅତ୍ୟନ୍ତ ପ୍ରୀତ ହୋଇ ତାହାକୁ ବନ୍ଧୁ ରୂପରେ ଗ୍ରହଣ କରିଥିଲେ । ବଂଧୁତ୍ୱର ନିଦର୍ଶନ ସ୍ୱରୂପ ମହିଷରାଜକୁ ନିଜ ରାଜ୍ୟର କିଛି ଅଂଶ ଦେଇଥିଲେ । ତା' ସହିତ ସୂର୍ଯ୍ୟମଣ୍ଡଳର ଏ ଜ୍ୟୋତିର୍ମୟୀ ରଥଟିକୁ ।

ରାଜା ପରୀକ୍ଷିତ ତନ୍ମୟ ହୋଇ ଶୁକମୁନିଙ୍କ ଗଳ୍ପ ଶୁଣୁଥିଲେ । ସେ ଅତୀବ ଭାବବିହ୍ୱଳ ହୋଇ ଉଠିଥିଲେ । ଶୁକମୁନିଙ୍କ କାହାଣୀ ତାଙ୍କର ମାନସିକ ସତ୍ତାକୁ ସମ୍ପୂର୍ଣ୍ଣ ଆଚ୍ଛନ୍ନ କରି ଦେଇଥିଲା । ସେ 'ସୂର୍ଯ୍ୟମଣ୍ଡଳ ରଥ' ସହିତ ନିଜ ଜୀବନକୁ ତୁଳନା କରୁଥିଲେ । ବାସ୍ତବରେ ସେ ଜୀବ ହେଉ କିମ୍ବା ଜଡ଼ ହେଉ, ପ୍ରତ୍ୟେକ ନିଜ ନିଜର ଭାଗ୍ୟର ଅଧୀନ । ଏତେ ତେଜସ୍ୱୀ ବୀରପୁରୁଷଙ୍କର ରଥ ହୋଇ ମଧ୍ୟ ତାହାକୁ ବାରମ୍ବାର ଦାନବ-ଭୋଗ୍ୟ ହେବା ପାଇଁ ପଡ଼ୁଛି । ସ୍ୱୟଂ ଚକ୍ରଧର ମଧ୍ୟ ତାହାର ଭାଗ୍ୟ ବଦଳାଇ ପାରିନାହାନ୍ତି ଏବଂ ସେ ନିଜେ···ବୀର ଅର୍ଜୁନଙ୍କର ଉତ୍ତର ଦାୟାଦ, ଭଗବାନ ଶ୍ରୀକୃଷ୍ଣଙ୍କର ଆତ୍ମୀୟ, ବିଶାଳ ରାଜ୍ୟର ଅଧିପତି— ଏତେ ଶକ୍ତି, ଏତେ ପ୍ରତିପତ୍ତି, ଭବିତବ୍ୟ ନିକଟରେ ସବୁକିଛି ତୁଚ୍ଛ ହୋଇ ଯାଇଛି । ସମସ୍ତ ସତର୍କତା ସତ୍ତ୍ୱେ ମୃତ୍ୟୁ ତାଙ୍କ ନିକଟରେ ପହଞ୍ଚି ଯାଇଛି, ଫୁଲଟିଏର ମଧ୍ୟରେ, କାଳସର୍ପର ଛଦ୍ମବେଶରେ ।



# ବିଷ୍ଣୁମାୟାରେ ବୈଲୋଚନ

ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତା

ଚଣ୍ଡମୁଣ୍ଡ ଓ ଶୁମ୍ଭ, ନିଶୁମ୍ଭ ପରି ମହାରଥୀମାନଙ୍କର ପତନ ପରେ ଅତି ଖେଦମନା ହୋଇ କ୍ଳାନ୍ତ ଓ ଅମାତ୍ୟଙ୍କ ମେଳରେ ପଶି ହତାଶରେ ଆଳାପ କରୁଛନ୍ତି ଦୈତ୍ୟରାଜ ମହିଷାସୁର । ରତ୍ନଗିରିରେ ବିରାଜିଥିବା ଅପରୂପ ଲାବଣ୍ୟମୟୀ ଦେବୀଙ୍କ ପ୍ରତି ମୋହାଗ୍ରସ୍ତ ହୋଇ ମହିଷାସୁର ପ୍ରେରଣ କରିଛନ୍ତି ଧୂମ୍ରଲୋଚନ, ଶୁମ୍ଭ ଓ ନିଶୁମ୍ଭ ପରି ମହା-ଯୋଦ୍ଧାମାନଙ୍କୁ ସେହି ଦେବୀଙ୍କୁ ବଶକରି ତାଙ୍କ ନିକଟକୁ ଆଣିବା ପାଇଁ । କିନ୍ତୁ ପ୍ରତ୍ୟେକ ସେନାପତି ଦୈତ୍ୟରାଜଙ୍କର ଆଦେଶ ଭୁଲିଯାଇଛନ୍ତି ଲାବଣ୍ୟମୟୀ ଦେବୀଙ୍କର ଦର୍ଶନରେ । ପ୍ରତ୍ୟେକ ସେନାପତିଙ୍କର ଦାନବୀୟ କାମୁକତା ତୀବ୍ର ଭାବରେ ଜାଗ୍ରତ ହୋଇ ସେହି ଦେବୀଙ୍କୁ ପତ୍ନୀରୂପେ ପାଇବା ପାଇଁ ଉଦ୍‌ଭ୍ରାନ୍ତ କରିଛି । ସେନାପତିମାନେ ଭୁଲିଯାଇଛନ୍ତି ରାଜାଦେଶ । ପ୍ରଥମେ ବ୍ୟାକୁଳ ନିବେଦନ ପରେ ପ୍ରଲୋଭନ ଓ ପରିଶେଷରେ ରଣାଙ୍ଗନରେ ଅବତୀର୍ଣ୍ଣ ହୋଇଛନ୍ତି ସେନାପତିଗଣ ଓ ପ୍ରତ୍ୟେକ ସେନାପତିଙ୍କର ଶେଷରେ ନିପାତ ହୋଇଛି ।

ଏ ସବୁ ଦୁଃସମ୍ବାଦ ପାଇ ମହିଷାସୁର ମର୍ମାହତ ହୋଇ ପରେ ପୁଣି ଆଶା ଓ ବିଶ୍ୱାସ ଜଗାଇଛନ୍ତି ମନରେ । ପରବର୍ତ୍ତୀ କାର୍ଯ୍ୟପନ୍ଥା ପାଇଁ ସେ କୁଳବୃଦ୍ଧ ଓ ବିଜ୍ଞ ମନ୍ତ୍ରୀ ଅନ୍ଧକଙ୍କ ସହିତ ପରାମର୍ଶ କରିଛନ୍ତି । ମହିଷାସୁରର ପୂର୍ବଜମାନଙ୍କର ମତ୍ତଗର୍ବ ଓ ତା'ର କୁପରିଣାମର ବୃତ୍ତାନ୍ତର ବିବରଣ ଦେଇ ବିଜ୍ଞ ଅନ୍ଧକ ଶେଷଥର ପାଇଁ ଚେଷ୍ଟା କଲେ ଦୈତ୍ୟରାଜ ମହିଷା-ସୁରଙ୍କୁ ନାରୀର ମୋହିନୀ ଆକର୍ଷଣରୁ ନିବୃତ୍ତ ହେବା ପାଇଁ । କିନ୍ତୁ

ସ୍ୱଦର୍ପରେ ଗର୍ବିତ ଓ କାମମୋହଗ୍ରସ୍ତ କୌଣସି ସଦୁପଦେଶ ଶୁଣିବା ଅବସ୍ଥାରେ ସେ ନଥିଲେ । ପିତାମହ ବ୍ରହ୍ମାଙ୍କଠାରୁ ବର ପାଇ ସାରିଛନ୍ତି ଯେ ପ୍ରଳୟକାଳ ପର୍ଯ୍ୟନ୍ତ ସେ ବୃଦ୍ଧ ହେବେ ନାହିଁ । ବ୍ରହ୍ମାସ୍ତ୍ର, ନାରାୟଣାସ୍ତ୍ର ବା ପାଶୁପତ ଅସ୍ତ୍ରରେ ବି ବଧ ହେବେ ନାହିଁ । କିନ୍ତୁ ସାହା ଭ୍ରମବଶତଃ ସ୍ତ୍ରୀ ହସ୍ତରେ ଅବଧ ବର ମାଗିବା ପାଇଁ ଭୁଲିଗଲେ; ସେଥିପାଇଁ ସେ ଆଜି ବିଶେଷ ଅନୁତପ୍ତ ।

ଅନ୍ଧକ ମନ୍ତ୍ରୀ ବର୍ଣ୍ଣନା କରିଚାଲିଛନ୍ତି । ମହିଷ ଦୈତ୍ୟଙ୍କର ପୂର୍ବଜ-ମାନଙ୍କର ବିଷାଦପୂର୍ଣ୍ଣ ଇତିହାସ । ହିରଣ୍ୟକଶିପୁକୁ ନରସିଂହ ରୂପ ଧାରଣ କରି ବଧ କରିଥିଲେ ପ୍ରଭୁ ମହାବିଷ୍ଣୁ ; ନିଜର ପରମଭକ୍ତ ପ୍ରହ୍ଲାଦର ନିଷ୍ଠାଭକ୍ତି ଆବେଦନରେ ସ୍ତମ୍ଭରୁ ବାହାରି ହୋଇ । ହରିଭକ୍ତ ପ୍ରହ୍ଲାଦଙ୍କର ପୁଅ ବୈଲୋଚନ କିନ୍ତୁ କୌଣସି ପୈତୃକ ସୁଗୁଣର ଅଧିକାରୀ ହୋଇ ନଥିଲା । ହରିଭକ୍ତି ତ ଦୂରର କଥା, ବରଂ ସମସ୍ତ ଦାନବୀୟ କୁପ୍ରକୃତିର ବଶବର୍ତ୍ତୀ ହୋଇ ନିଜକୁ ଅବଧ ଓ ଅମର କରିବା ପାଇଁ ମହାତପ କରି ବ୍ରହ୍ମାଙ୍କ ବର ପାଇଁ ଆଶାୟୀ ହେଲା । ଦାନବର ତପରେ ତୃପ୍ତ ହୋଇ ବ୍ରହ୍ମା ବର ଯାଚନ୍ତେ, ବୈଲୋଚନ ବର ମାଗିଲା ଯେ ସେ ଦିବସ ବା ରାତିରେ ଅବଧ ହେବ । ପୁରୁଷ ହାତରେ ଅବଧ ହେବ । ଘରେ ବା ବାହାରେ ତା'ର ମରଣ ହେବ ନାହିଁ । ଏପରି ଏକ ଅଦ୍ଭୁତ ବର ପ୍ରଦାନ କଲେ ବେଦପତି ।

ବ୍ରହ୍ମା ବଳରେ ବଳୀୟାନ ହୋଇ ବୈଲୋଚନ ପୃଥିବୀ ତଥା ସ୍ୱର୍ଗଲୋକରେ ପ୍ରାଦୁର୍ଭାବ କଲା । ଭୂଲୋକ ଓ ଦେବଲୋକରେ ଶାନ୍ତି ଓ ପ୍ରସନ୍ନତା ନାଶ ହେଲା ବୈଲୋଚନର ଧାଡ଼ରେ । ସୃଷ୍ଟିରେ ଯେତେ-ବେଳେ ଦାନବୀୟ ଶକ୍ତି ଅସହ୍ୟ ହୁଏ ସୃଷ୍ଟିକର୍ତ୍ତା ସ୍ୱସୃଷ୍ଟିର ଏକ ଜୀବ ରୂପେ ଆବିର୍ଭାବ ହୋଇ ଦାନବୀ ଶକ୍ତିର ବିନାଶ କରି ସୃଷ୍ଟି ରକ୍ଷା କରନ୍ତି । ଶାନ୍ତି ଓ ମୈତ୍ରୀ ପୁଣି ବିରାଜିତ ହୁଏ ।

ଦେବତାଙ୍କର ଆର୍ତ୍ତନାଦ ଭଙ୍ଗ କରିଥିଲା ମହାବିଷ୍ଣୁଙ୍କର ଯୋଗନିଦ୍ରାକୁ । ଦେବତାମାନଙ୍କର ଦୁଃଖ ଶୁଣି ଓ ବ୍ରହ୍ମାଙ୍କର ବୈଲୋଚନକୁ ଦେଇଥିବା ଅକାଟ୍ୟ ବରକୁ ବିଚାର କରି ମହାବିଷ୍ଣୁଙ୍କର ମହାମାୟାରୁ ସୃଷ୍ଟି ହେଲେ ଏକ ସ୍ୱର୍ଣ୍ଣକାନ୍ତିମୟୀ ଲାବଣ୍ୟମୟୀ ନାରୀ ।

ବୈଲୋଚନର ରାଜଧାନୀ ନିକଟରେ ଥିବା ମାଳେନ୍ଦ୍ର ବନରେ ଏହି ଦେବୀ ବିଚରଣ କଲେ ଓ ବନବାସୀମାନଙ୍କ ପାଖରେ ପରିଚିତା ହେଲେ ମାଳତୀ ନାମରେ । ବନମଣ୍ଡଳ ମୋହିତ ହେଲା ଏହି ବିଷ୍ଣୁ ଶକ୍ତି ଭୂଷିତା ଦେବୀଙ୍କର ଆବିର୍ଭାବରେ । ଅଚିରେ ଏହି ସୁନ୍ଦରୀ ଦେବୀଙ୍କର ବାର୍ତ୍ତା ପାଇଲା ବୈଲୋଚନ । ଏହି ଦେବୀଙ୍କର ସୌନ୍ଦର୍ଯ୍ୟରେ କାମାକୁଳ ହୋଇ ବୈଲୋଚନର ନିଧନ ହୋଇଥିଲା ବୋଲି ସୂଚାଇ ଦେଲେ ମହିଷ ଦୈତ୍ୟଙ୍କ ଅଧିକମନ୍ତ୍ରୀ । କିନ୍ତୁ କାମଲେଲାଗ୍ରସ୍ତ ମହିଷଦୈତ୍ୟର ମନରେ ତାର କୌଣସି ପ୍ରଭାବ ପଡ଼ିବା ପରିବର୍ତ୍ତେ ତାଙ୍କ ହୃଦୟରେ ଜାତହେଲା ଉଗ୍ର କୃତା ସେହି ସୁନ୍ଦରୀ ନାରୀଙ୍କ ବିଷୟରେ ଅଧିକ ଜାଣିବା ପାଇଁ ଓ କପରି ଭାବରେ ତା ପୂର୍ବଜ ବୈଲୋଚନ ତାଙ୍କୁ ପତ୍ନୀ ରୂପେ ପାଇବାକୁ ସମର୍ଥ ହେଲା ।

ମହିଷରାଜର ମୃତ୍ୟୁ ପ୍ରତି ମର୍ମ ଭିତରେ ଅନୁକମ୍ପା ପ୍ରକାଶକରି ଅଧିକ ବର୍ଣ୍ଣନା କଲେ ବୈଲୋଚନର ବୃତ୍ତାନ୍ତ । ଦୂତ ନିକଟରୁ ଏକ ସୁନ୍ଦରୀ ତରୁଣୀର ମାଳେନ୍ଦ୍ର ବନରେ ଆବିର୍ଭାବ ବାର୍ତ୍ତାପାଇ ବୈଲୋଚନ ଯାଇ ଉପସ୍ଥିତ ହେଲା ଦେବୀ ମାଳତୀର ସମ୍ମୁଖରେ । ଅତି ଦୈନ୍ୟ ଭାବରେ ପ୍ରେମ ନିବେଦନ କଲା ଓ ତାର ପତ୍ନୀ ଭାବରେ ରହିବା ପାଇଁ ଦେବୀଙ୍କୁ ଅନୁନୟ କଲା । ଅଧିକମନ୍ତ୍ରୀ କହୁଛନ୍ତି ଯେ ସେ ସେହି ବୈଲୋଚନର ବି ମନ୍ତ୍ରୀ ଥିଲେ । ବହୁତ ପରାମର୍ଶ ସେ ଦେଇଥିଲେ ବୈଲୋଚନକୁ ସୁନ୍ଦରୀ ନାରୀର ପ୍ରେମରେ ନିଜକୁ ସମର୍ପଣ ନ କରିବା ପାଇଁ । କାମୁକତାରେ ବଶବର୍ତ୍ତୀ ହୋଇ ସେହି ମୋହିନୀ ନାରୀକୁ ଘରକୁ ନ ଆଣିବା ପାଇଁ ବହୁ ଉପଦେଶ ଦେଇଥିଲେ ଅଧିକ । କିନ୍ତୁ ବିବେକ ଓ ଜ୍ଞାନ ହରାଇସାରିଥିବା ବୈଲୋଚନ ପାଇଁ କୌଣସି ସୁପରାମର୍ଶର ଆବଶ୍ୟକତା ନଥିଲା । ମୋହ ଓ କାମୁକତାର ପ୍ରତ୍ୟେକ ସୋପାନରେ ବୈଲୋଚନ ଅଗ୍ରସର ହେଉଥିଲା ନିଜର ବିନାଶର ନିକଟକୁ ।

ବୈଲୋଚନର ପ୍ରେମ ନିବେଦନରେ ତା'ର ପତ୍ନୀତ୍ୱ ଗ୍ରହଣ କରିବା ପାଇଁ ସମ୍ମତ ହୋଇଥିଲେ ବୈଷ୍ଣବୀ ଶକ୍ତିମୟୀ ଦେବୀ ମାଳତୀ; କିନ୍ତୁ ଗୋଟିଏ ସର୍ତ୍ତରେ । ବୈଲୋଚନ ମାଳତୀ ଛଡ଼ା ଅନ୍ୟ କୌଣସି ନାରୀ ପ୍ରତି ଆସକ୍ତ ହେବନାହିଁ ବା ଆଉ କୌଣସି ନାରୀକୁ ପତ୍ନୀ ରୂପେ

ଗ୍ରହଣ କରିବ ନାହିଁ । ତତ୍‌କ୍ଷଣାତ୍ ରାଜି ହୋଇଗଲା ବୈଲୋଚନ ଓ ରାଣୀ କରି ଘରକୁ ଆଣିଲା ଦେବୀ ମାଳତୀଙ୍କୁ ହାତଧରାଧରି ବସାଇ । ରାଜଦରବାରରେ ସୌନ୍ଦର୍ଯ୍ୟମୟୀ ମାଳତୀଙ୍କୁ ଦେଖି ବୈଲୋଚନର ବୃଦ୍ଧ ଅମାତ୍ୟ ବି ମୋହଗ୍ରସ୍ତ ହୋଇଥିଲେ ।

ରାଜ୍ୟର ସମସ୍ତ ଦାୟିତ୍ୱ ଅମାତ୍ୟଙ୍କ ହାତରେ ସମର୍ପଣ କରି ବୈଲୋଚନ ଅନ୍ତଃପୁରରେ ସବୁବେଳେ ମାଳତୀର ସାନିଧ୍ୟ ପାଇଲା । କିଛିଦିନ ପରେ ମାଳତୀର ଗର୍ଭବାସ ହେଲା । ଅତି ଉଲ୍ଲସିତ ହେଲା ବୈଲୋଚନ । ପୂଜା ଓ ହୋମ କରି ଶିଷ୍ଟସାଧନ ପାଇଁ ବୈଲୋଚନ ପୁରୋହିତ ଡକାଇ ବ୍ୟବସ୍ଥା କଲା ।

ମୋହିନୀ ମାଳତୀ ବିଷ୍ଣୁମାୟାର ପ୍ରଭାବ ବୈଲୋଚନ ଉପରେ ପକାଇବା ପାଇଁ ସ୍ଥିର କରି ଦିନେ କହିଲେ ଗୋଟିଏ କସ୍ତୁରୀ ମୃଗର ଚର୍ମ ଆଣିବାପାଇଁ । ବଣକୁ ମୃଗୟାରେ ଗଲେ ଯାଇ କସ୍ତୁରୀ ମୃଗକୁ ମାରି ତାର ଚର୍ମ ଆଣି ପାରିବ ବୈଲୋଚନ । କିନ୍ତୁ ମାଳତୀଙ୍କ ସାନିଧ୍ୟରୁ ଅନ୍ତର ହେବାପାଇଁ ପ୍ରସ୍ତୁତ ନଥିଲା ବୈଲୋଚନ । ମାଳତୀର କଟାକ୍ଷ ପାଖରେ ବୈଲୋଚନର ଧୈର୍ଯ୍ୟଚ୍ୟୁତି ଘଟିଲା ଓ ମୃଗୟାରେ ଯିବାପାଇଁ ପ୍ରସ୍ତୁତ ହେଲା । ଛଳନାରେ କହିଲେ ମାଳତୀ ଯେ ବୈଲୋଚନର ବିଚ୍ଛେଦର ପ୍ରତ୍ୟେକ ମୁହୂର୍ତ୍ତ ତାଙ୍କୁ ଦେବ ଦାରୁଣ ବେଦନା । ପଚାରିଲେ ବୈଲୋଚନକୁ ତାର ମୃତ୍ୟୁଭେଦ । ବୈଲୋଚନ ତାଙ୍କ ନିକଟରୁ ଅନ୍ତର ହେଲେ ଉଦ୍‌ବିଗ୍ନ ହୋଇ ପଡ଼ିବେ ମାଳତୀ । ଯଦି ବୈଲୋଚନର କିଛି ବିଘ୍ନ ହୁଏ ତାହାହେଲେ ପତ୍ନୀ ଭାବରେ ମାଳତୀ କପରି ରହିପାରିବେ ସ୍ଥିର ହୋଇ । ଉଲ୍ଲସିତ ହୋଇ ବୈଲୋଚନ କହିଲା ତାର ମୃତ୍ୟୁଭେଦ । ମରିବେ ନାହିଁ ସେ କୌଣସି ଦେବତାର ହାତରେ । କୌଣସି ପୁରୁଷ ହାତରେ ମରିବ ନାହିଁ । ଦିନରେ ବା ରାତିରେ ଘରେ ବା ବାହାରେ ତାର ମରଣ ନାହିଁ । ଦେବୀ ମାଳତୀଙ୍କୁ କହିଲା ବୈଲୋଚନ ଯେ ମଥାର କେଶଗୁଚ୍ଛ ଭିତରେ ଅଛି ଏକ ପିଙ୍ଗଳବର୍ଣ୍ଣ କେଶ । ସମସ୍ତ ହୋଇ ନଥିବ ଦିନ ବା ରାତି, ସ୍ଥାନ ହୋଇ ନଥିବ ଘର ବା ବାହାର, ଯଦି ଏପରି ଏକ ସ୍ଥାନ ଓ କାଳରେ କେହିବି ସ୍ତ୍ରୀ ତାର ମଥାରୁ ସେହି ପିଙ୍ଗଳକେଶ ଯଦି ଉପାଡ଼ି ଦିଏ

ତାହାହେଲେ ଆସିବ ତାର କାଳମୃତ୍ୟୁ । ଏ ଭେଦ ଜାଣିପାରି କପଟରେ ଆନନ୍ଦିତ ହେଲେ ଦେବୀ ମାଳତୀ ।

ମୃଗୟାକୁ ଗଲା ବୈଲୋଚନ କସ୍ତୁରୀମୃଗର ସନ୍ଧାନରେ । ବହୁ ଘାୟାରେ ବନଭୂଇଁରେ ପାଇଲା ନାହିଁ ମୃଗ । ନିରାଶରେ ଫେରି ଆସିଲା ଘରକୁ । ଦିନର ଶେଷଘଡ଼ି ଯିବା ବେଳ । ସନ୍ଧ୍ୟା ନଇଁ ଆସୁଛି । ଦିବସର ବିଦାୟ ଆସନ୍ନ । ରଜନୀର ଆଗମନରେ ଆହୁରି ବିଳମ୍ବ ଅଛି । ମାଳତୀଙ୍କର ମାୟାରେ ବୈଲୋଚନର ମଥାରେ ସୃଷ୍ଟି ହେଲେ ସହସ୍ର ଉକୁଣୀ ଓ ପ୍ରବଳ କଣ୍ଡୁର ଘାତରେ ବିବ୍ରତ ହେଲା ବୈଲୋଚନ । ସ୍ନାନପରେ ମୃଗୟାରେ ଅବସନ୍ନ ହୋଇଥିବା ତାର ସ୍ୱେଦାକ୍ତ ଶରୀରରେ ଭି ସାମାନ୍ୟ ପ୍ରସନ୍ନତା ଦେଖାଗଲା । କିନ୍ତୁ ଉକୁଣୀମାନଙ୍କ ପ୍ରାଦୁର୍ଭାବରେ ବ୍ୟସ୍ତ ହୋଇଗଲା ବୈଲୋଚନ । ପାନିଆଁରେ ମୁଣ୍ଡରୁ ଉକୁଣୀ ବାହାର କରିବା-ପାଇଁ ମାଳତୀଙ୍କୁ ଅନୁନୟ କଲା ।

ସମ୍ମତି ଜଣାଇ ପ୍ରକୋଷ୍ଠର ବାହାର ଅଳିନ୍ଦର ପ୍ରଥମ ସୋପାନରେ ବସିଲେ ମାଳତୀ । କୋଳରେ ମଥା ରଖି ଶୋଇଲା ବୈଲୋଚନ । ଗୋଧୂଳିର ବେଳା, ନୁହେଁ ଦିନ ବା ରାତି । ପ୍ରକୋଷ୍ଠର ଅଳିନ୍ଦର ସୋପାନ ଘର ନୁହେଁ ବା ବାହାର ନୁହେଁ । ପାନିଆରେ କେଶକାନ୍ତର ସନ୍ଧାନ କଲାବେଳେ ମାଳତୀ ପାଇଲେ ସେହି ପିଙ୍ଗଳବର୍ଣ୍ଣ କେଶ । ଲାବଣ୍ୟମୟୀ ମୋହିନୀ ମାଳତୀ ହେଲେ ବିଶ୍ୱରୂପା । ଦାନବୀୟ ସଙ୍କେତର ସେହି ପିଙ୍ଗଳ କେଶକୁ ଉପାଡ଼ିଲେ ବିଷ୍ଣୁଶକ୍ତିରେ । ପୃଥିବୀ କମ୍ପାଇ ଚିତ୍କାର କଲା ବୈଲୋଚନ । ମୋହ, ମଦ, ତେଜର ବିଳୟ ହେଲା ମହାଶକ୍ତିରେ । ଶାନ୍ତ ହେଲା ସୃଷ୍ଟି ଦାନବୀୟ ତାଡ଼ନାରୁ । ସୃଷ୍ଟି ମଥାନତ କଲା ସୃଷ୍ଟିକର୍ତ୍ତା ଓ ବିଶ୍ୱନିୟନ୍ତାଙ୍କ ନିକଟରେ ।

ଆଶା କରିଥିଲେ ଅମାତ୍ୟ ଅନ୍ଧକ ଯେ ଏ ବୈଲୋଚନର ବୃତ୍ତାନ୍ତ ଆଣିଦେବ ମହିଷାସୁର ହୃଦୟରେ ପରିବର୍ତ୍ତନ । ଅହମିକାର ଶେଷ ସୋପାନରେ ବସିଥିବା ମହିଷରାଜ ପକ୍ଷରେ ଏକ ନାରୀ ନିକଟରୁ ଯୁଦ୍ଧର ଆମନ୍ତ୍ରଣ ଗ୍ରହଣ ନ କରିବା ମୃତ୍ୟୁଠାରୁ ବଳି ବି ଅଧିକ ଅପମାନ । ତେଣୁ ଥାଟ ସଜ କରି ବିନ୍ଧ୍ୟଗିରିକୁ ଯୁଦ୍ଧଯାତ୍ରାର ପ୍ରସ୍ତୁତି କଲା ସେ ।

●

# ବଶିଷ୍ଠଙ୍କ ତ୍ୟାଗ

ଶ୍ରୀ ବିପିନ ବିହାରୀ ମିଶ୍ର

ଗୁରୁଦେବ ।

କୁହ ରାଜନ ।

ମହିଷାସୁରର ଦିଗ୍‌ବିଜୟ, ଚନ୍ଦ୍ରାବତୀ ସଙ୍ଗେ ବିବାହ ଜମ୍ବୁଦ୍ୱୀପ ଯାହା କିଛି ଆପଣ ବାଧିତ କଲେ । ମହିଷାସୁର ମହାବୀର, ମେରୁଶୂଳ ଚଣ୍ଡମୁଣ୍ଡ ଶୁମ୍ଭ ନିଶୁମ୍ଭଙ୍କୁ ପରାସ୍ତ କରିବା ସଙ୍ଗେ ସଙ୍ଗେ ସ୍ୱର୍ଗକୁ ପଦାଘାତ କଲା । ଦେବଗଣ ସ୍ୱର୍ଗଚ୍ୟୁତ ପଳେଇଲେ ଓ ନାରାୟଣଙ୍କ ନିକଟରେ ନିଜ ଦୁଃଖ ଜଣେଇଲେ । ପ୍ରଭୁ ନାରାୟଣ କ'ଣବା କରନ୍ତେ ? ମହିଷାସୁର ବ୍ରହ୍ମାଙ୍କ ବର ପାଇଛି କୌଣସି ପୁରୁଷ ଦ୍ୱାରା ପରାଜିତ ହେବ ନାହିଁ । ତେଣୁ ଦୁର୍ଗାଙ୍କ ଜନ୍ମ । ଯେହେତୁ ସେ ଦୁର୍ଗତି ନାଶନ କରିବେ ତାଙ୍କ ନାଁ ଦୁର୍ଗା ହେଲା । ଦେବ ଦେବୀ ସମସ୍ତେ ତାଙ୍କର ଶ୍ରେଷ୍ଠ ଅସ୍ତ୍ର ଶସ୍ତ୍ର ମା' ଦୁର୍ଗାଙ୍କୁ ଅର୍ପଣ କଲେ । ମା' ଦୁର୍ଗା ରତ୍ନଗିରିରେ ଅବସ୍ଥିତ କଲେ । ଚଣ୍ଡାଳପୁର ପ୍ରତି ଦୃଷ୍ଟି ଦେଲେ ।

—ଠିକ୍ ବୁଝିଛ ବତ୍ସ ।

—କିନ୍ତୁ ମୋର ଏକ ସନ୍ଦେହ ହେଉଛି ।

—କୁହ !

—ଚଣ୍ଡାଳ ପୁର ନାଁ କାହିଁକି ହେଲା—

ଆଚ୍ଛା ଶୁଣ—

ନହୁଷ ରାଜାଙ୍କ ପ୍ରତି ଇନ୍ଦ୍ର ବିମୁଖ ହେଲେ । ପାଞ୍ଚବର୍ଷ ପର୍ଯ୍ୟନ୍ତ ବର୍ଷା ହେଲା ନାହିଁ, ଫସଲ ହେଲା ନାହିଁ । ପ୍ରଜାମାନେ ହା ହା କାର କଲେ । ବତ୍ସରବନ୍ତ ନହୁଷ ଦୁଇବର୍ଷ ଶସ୍ୟାଦ୍ଧ ଦେଇ ପ୍ରଜାଙ୍କୁ ପୋଷିଲା ଆଉ ଦୁଇବର୍ଷ କୌଣସିମତେ ଭଣ୍ଡାରର ଧନ ଖାଲିକରି ବାଣ୍ଟିଲା । ତା' ପରଠାରୁ ଆଉ ସମ୍ଭାଳି ପାରିଲା ନାହିଁ ।

ନହୁଷ ନବାଶରେ ଆକାଶକୁ ଅନେଇଲେ—ବର୍ଷାର କୌଣସି ଉପକ୍ରମ ନାହିଁ ।

ବ୍ୟସ୍ତ ହୋଇ ବ୍ରାହ୍ମଣମାନଙ୍କୁ ଦାନ ଦେଲା, ଦେବତା ମାନଙ୍କୁ ପୂଜା କଲା, ପୁଣି ହୋମ ଯଜ୍ଞ କଲା । କିନ୍ତୁ ବର୍ଷା କାହିଁ ?

ବ୍ରାହ୍ମଣମାନେ ଚିନ୍ତିତ ହୋଇ ବଶିଷ୍ଠଙ୍କ ପାଖକୁ ଗଲେ—ହେ ମୁନିଶ୍ରେଷ୍ଠ, ନହୁଷ ପରି ପୁଣ୍ୟବନ୍ତ ରାଜାଙ୍କର ଏ ଦଶା ? ତମେ ଦୟାକରି ତାଙ୍କୁ, ବ୍ରହ୍ମାଙ୍କୁ ତାଙ୍କ ଦୁର୍ଦ୍ଦଶା ଜଣାଅ ।

ବଶିଷ୍ଠ ଭଗବାନ ବ୍ରହ୍ମାଙ୍କ ପାଖରେ ଫେରାଦ ହେଲେ —

ପ୍ରଭୁ, ନହୁଷ ଚୁରିବର୍ଷ ହାତରୁ ଖର୍ଚ୍ଚକରି ପ୍ରଜାଙ୍କୁ ପାଳିଲା, ତା' ଅଣ୍ଟା ଭାଙ୍ଗି ପଡ଼ିଲାଣି । ଆମେ ତାକୁ ସାହାଯ୍ୟ ନ କଲେ ଜୀବଜନ୍ତୁ ମରିବେ, ନହୁଷ ଚଳିତଳାନ୍ତ ହବ । ଆଉ ଧର୍ମ ଓ ସତ୍ୟ ରହିବ କି ? ମଣିଷମାନେ ଦେବ ଦେବୀ ଓ ବ୍ରାହ୍ମଣମାନଙ୍କୁ ସମ୍ମାନ କରିବେ ତ ? କିଛି କରନ୍ତୁ ପିତାମହ, ପ୍ରଜାଙ୍କୁ ରକ୍ଷା କରନ୍ତୁ ।

ସାମାନ୍ୟ ଚିନ୍ତାକରି ପ୍ରଭୁ ଆଦେଶ ଦେଲେ—ନାରଦ, ବୁଲିଆସ ତ୍ରିଭୁବନେ । କେଉଁଠି ଶସ୍ୟ ଅଛି ଆସି କୁହ, ଆମେ ଆଣିବାର ବନ୍ଦୋବସ୍ତ କରିବା ।

ନାରଦ ତ୍ରିଭୁବନ ଖୋଜି ଖୋଜି ସିଂହଳ ଦ୍ୱୀପରେ ପହଞ୍ଚିଲେ । ସିଂହଳ ଦ୍ୱୀପ ଓ ପୁଣ୍ୟଭଦ୍ରା ନଦୀ ଘରରେ ଅମ୍ବିକା ଚଣ୍ଡାଳ ଅସଂଖ୍ୟ ଗଦା ଗଦା ଧାନ ରଖିଥାଏ ।

ନାରଦ କହିଲେ – ବାବୁ ଅମ୍ବିକା, ଏତେ ଧାନ ରଖିଚୁ, ପାଇଲୁ କୋଉଠୁ ? ଅମ୍ବିକା କହିଲା—ଯଦୁ ନାଁରେ ଜଣେ ରାଜା ସିଂହଳ ଦ୍ୱୀପରେ

ଥିଲେ । ମୁଁ ତାଙ୍କର ସେବା କରୁଥିଲି । ତାଙ୍କ ମଳ କାଢ଼ି ମାଟିରେ ପକାଇଲି ମାତ୍ରେ ଧାନ ମୁଣ୍ଡାଏ ଉତ୍ପନ୍ନ ହେଲା । ସେ ଧାନ ବୁଣିଦେବାରୁ ଶହ ଶହ କୋଟି କୋଟି ଧାନ ଉତ୍ପନ୍ନ ହେଲା । ଜୀମୂତବାହନ ରାଜା ଲକ୍ଷ ଭରଣ ଧାନ ଋଣ ନେଇଥିଲେ ମରୁଡ଼ିର ମୁକାବିଲା କରିବା ପାଇଁ ଓ ବର୍ଷେ ପରେ ଦୁଇଲକ୍ଷ ଭରଣ ଧାନ ଯାଚିଲେ କିନ୍ତୁ ମୁଁ ମନାକଲି, ପାଞ୍ଚପାନ୍ଥ ମାତ୍ର ମୋ'ର ପ୍ରାପ୍ୟ ।

—ଧନ୍ୟ ଅମ୍ବିକା, ତମର ଖ୍ୟାତି ଶୁଣି ମୁଁ ସାହାଯ୍ୟ ଆଶାରେ ଆସିଥିଲି ।

—ଆଜ୍ଞା କୁହନ୍ତୁ ଦେବର୍ଷି ।

—ନହୁଷ ରାଜାଙ୍କର ଦୁରବସ୍ଥା ତୁମେ ଶୁଣିଥିବ, ତୁମେ ତାଙ୍କୁ ଧାନ ଉଧାର ଦିଅ ।

—ଶୁଣନ୍ତୁ ଦେବର୍ଷି, ଉଧାର କାହିଁକି ବରଂ ଦାନ ଦବାପାଇଁ ମୁଁ ପ୍ରସ୍ତୁତ ! କିନ୍ତୁ ମୋ'ର ଏକ ସର୍ତ୍ତ ।

କି ସର୍ତ୍ତ ?

—ମୋ' କନ୍ୟାର ହାତ ଯିଏ ଧରିବ; ସେ ସମସ୍ତ ଧାନ ପାଇବ ।

ବିବାହ ଓ ମୁଁ, ହରିବୋଲ—ହରିବୋଲ କହି ନାରଦ କାନରେ ହାତ ଦେଲେ ଓ ଫେରିଗଲେ ବ୍ରହ୍ମାଙ୍କ ପାଖକୁ ।

ବ୍ରହ୍ମାଙ୍କ ଆଦେଶରେ ବଶିଷ୍ଠ ନହୁଷ ରାଜାଙ୍କୁ ଯାଇ କହିଲେ— ଯାଅ ନହୁଷ ତମ ସମସ୍ୟାର ସମାଧାନ ହୋଇଗଲା । ଅମ୍ବିକା ଚଣ୍ଡାଳଠାରୁ ଯେତେ ପରିମାଣରେ ଧାନ ଚାହିଁ ସେ ଦେବାକୁ ପ୍ରସ୍ତୁତ ।

ଆନନ୍ଦରେ ନହୁଷ ଅମ୍ବିକା ଚଣ୍ଡାଳ ପାଖକୁ ଗଲେ । ଅମ୍ବିକା ଚଣ୍ଡାଳ ନହୁଷଙ୍କୁ ବହୁତ ଆଦର କଲା କିନ୍ତୁ ନିଜ ସର୍ତ୍ତ ବାଢ଼ିଲା । "ମୁଁ ପ୍ରତିଜ୍ଞା କରିଛି, ମୋ' ଝିଅକୁ ଯିଏ ବାହା ହବ ସବୁ ଧାନ ଯୌତୁକ ସ୍ୱରୂପରେ ପାଇବ ।"

ଚଣ୍ଡାଳ କନ୍ୟା, ବିବାହ ମୁଁ କରିବ ? ହେ ଈଶ୍ୱର ! ନହୁଷ ଫେରିଗଲା ବଶିଷ୍ଠଙ୍କ ପାଖକୁ—

—କୃଦ୍ଧ ବ୍ରହ୍ମର୍ଷି, ମୁଁ ଚଣ୍ଡାଳ କନ୍ୟାକୁ ବିବାହ କିପରି କରିବି, ଏ ସମସ୍ୟାର ସମାଧାନ ତୁମେ କର ।

ଆରେ ରଣା, ବୁଲି ବୁଲି କରି ସେଇ ଅଗଣା । ବଶିଷ୍ଠ ପୁଣି ଗଲେ ବ୍ରହ୍ମାଙ୍କ ପାଖକୁ—

କିଛି କାମ ହେଲା ନାହିଁ ପ୍ରଭୁ । ଅମ୍ବିକା ଚଣ୍ଡାଳ ଅଡ଼ି ବସିଛି ତା' ଝିଅକୁ ବାହାଦବା ପାଇଁ । ନାରଦ ମୁନି କାନରେ ହାତ ଦେଲେ ଓ ନହୁଷ ଛାଟିପିଟି ହୋଇ ପଳେଇଲା, ଏବେ ଆପଣ କୁହନ୍ତୁ ଉପାୟ କ'ଣ ?

—ତୁମେ ଅମ୍ବିକା ସାଙ୍ଗେ କଥା ହୋଇଚ ?

—ହୋଇଥିଲି ପ୍ରଭୁ ! ତାକୁ ବୁଝେଇଲି—ଧର୍ମ ବଳେ ଯେତେ ଧନ ରଖିଚୁ ଲୋକ କଲ୍ୟାଣରେ ଲଗେଇଦେ ତୁ ବୈକୁଣ୍ଠରେ ସ୍ଥାନ ପାଇବୁ ।" କିନ୍ତୁ ଅମ୍ବିକା ଚଣ୍ଡାଳ ନିଜ ପ୍ରତିଜ୍ଞାରେ ଅଟଳ ଥିଲା ଓ ମୋତେ କହିଲା, "ମାତ୍ର ଧର୍ମ ମୁଁ କିଛି ଜାଣେ ନାହିଁ ମହାଋଷି, ମୋ'ର ସର୍ତ୍ତ ଯିଏ ଗ୍ରହଣ କରିବ ସମସ୍ତ ଧନ ସେ ପାଇବ ।"

ତେବେ ଉପାୟ ?

ଆପଣଙ୍କ ଆଦେଶ ହେଉ ପିତାମହ, ତମ ଆଦେଶ ଶିରୋଧାର୍ଯ୍ୟ ।

ମୋ' ଆଦେଶ ପାଳନ କରିବା ପାଇଁ ପ୍ରସ୍ତୁତ ତମେ ବଶିଷ୍ଠ ?

ପରୀକ୍ଷା କରି ଦେଖନ୍ତୁ ।

ତେବେ ଶୀଘ୍ର ଯାଅ । ଚଣ୍ଡାଳ କନ୍ୟାକୁ ବିବାହ କରି ସମସ୍ତ ଶସ୍ୟ ନହୁଷକୁ ଦିଅ, ପ୍ରଜାଗଣ ରକ୍ଷା ପାଆନ୍ତୁ ।

ବିନା ଦ୍ୱିଧାରେ ସର୍ବଶ୍ରେଷ୍ଠ ମୁନି ବଶିଷ୍ଠ ଚଣ୍ଡାଳ ପୁରକୁ ଗଲେ ସାଙ୍ଗରେ ଗଲେ ମାର୍କେଣ୍ଡେୟ, ଅଗସ୍ତି, ବିଶ୍ୱାମିତ୍ର, ପୁଲସ୍ତ୍ୟ ଇତ୍ୟାଦି ମହାଋଷିମାନେ ।

ଆରେ ବାବୁ ଅମ୍ବିକା ନହୁଷ ରାଜାର ଅନୁରୋଧ ତୁ କିପରି ଅଗ୍ରାହ୍ୟ କଲୁ ? ମହର୍ଷିମାନେ ପଚାରିଲେ ।

— ମୁଁ ପ୍ରତିଜ୍ଞାବଦ୍ଧ ପ୍ରଭୁ ।

—ଆଚ୍ଛା ଠିକ୍ ଅଛୁ, ଆଣ ତୋ' ଝିଅକୁ ମୁଁ ବିବାହ ହେବି ।

ବଶିଷ୍ଠ ମୁନିଙ୍କ କଥା ଶୁଣି ଚଣ୍ଡାଳ ନିଜ କାନକୁ ବିଶ୍ୱାସ କରି ପାରିଲା ନାହିଁ ।

( ମୁଁ ଚଣ୍ଡାଳ ଅଥଚ ମୋ' କନ୍ୟା ଅରୁନ୍ଧତୀର ପତି ହେବେ ବଶିଷ୍ଠ ? —ଭଗବାନ ତମ କଲ୍ୟାଣ ଅଶେଷ )

ଚଣ୍ଡାଳ୍ କନ୍ୟା ଅରୁନ୍ଧତୀର ରୂପ ଅସୁମାରି । ପଦ୍ମଫୁଲ ପରି ଆଖି, ଶୁକ୍ଳ ହଂସପରି, କୋକିଳ ଭଷି ଓ ଚନ୍ଦ୍ର ହାସ୍ୟସୀ ପଦ୍ମିନୀ ଜାତୀୟା କନ୍ୟାର ସମସ୍ତ ଗୁଣ ତା'ଠାରେ ବିଦ୍ୟମାନ । ବଶିଷ୍ଠଙ୍କୁ ବିବାହ କରେଇଲେ ମାର୍କଣ୍ଡେୟ ମୁନି ଓ ଅରୁନ୍ଧତୀକୁ ଅଗସ୍ତି ।

ଆନନ୍ଦରେ ଗଦ୍‌ଗଦ ହୋଇ ଅମ୍ବିକା ଦେଖେଇ ଦେଲା କୁଡ଼ କୁଡ଼ 'ଧାନ । 'ନିଅ ପ୍ରଭୁ ମନଇଚ୍ଛା ଶସ୍ୟ ଯାହାକୁ ଦେଉଛ ଦିଅ ।

ବଶିଷ୍ଠ ଡକେଇଲେ ନହୁଷକୁ ଓ ନହୁଷ ଧାନ ବାଣ୍ଟିଲେ ପ୍ରଜାମାନଙ୍କୁ । ସମସ୍ତ ଧାନ ପ୍ରଜାମାନଙ୍କୁ ସାତବର୍ଷ ପର୍ଯ୍ୟନ୍ତ ଅଣ୍ଟିବ । କେତେଦିନ ମେଘ ବନ୍ଦ ହୋଇ ରହିବ ? ନହୁଷର ଦୁଃଖ ଗଲା ଓ ବଶିଷ୍ଠ ଅରୁନ୍ଧତୀକୁ ନିଜର ପତ୍ନୀ ଭାବରେ ଗ୍ରହଣ କଲେ ।

ବଶିଷ୍ଠ ଅରୁନ୍ଧତୀକୁ ପତ୍ନୀର ସମ୍ମାନ ଦେଲେ, ପୂର୍ବ ପତ୍ନୀଙ୍କର ସମାନ ସୁଯୋଗ ପାଇଲେ ଅରୁନ୍ଧତୀ । ଅରୁନ୍ଧତୀଙ୍କ ଗର୍ଭରୁ ଜାତହେଲେ ମହାଋଷି ଶକ୍ତି, ଶକ୍ତିଙ୍କର ପୁତ୍ର ପରାଶର ଓ ପରାଶରଙ୍କର ପୁତ୍ର ବ୍ୟାସ । ବ୍ୟାସଙ୍କର ବଂଶଧର କୁରୁ ପାଣ୍ଡବ । ହେ ପରୀକ୍ଷିତ ତମେ ସେଇ 'ମହାନ୍ ପୁରୁଷ ବଶିଷ୍ଠ ଯେ କି ନିଜର ଜାତି, ଧର୍ମ, ଗୋତ୍ରକୁ ଉପେକ୍ଷା କରି ବିବାହିତ ହୋଇ ମଧ୍ୟ ଆଉଥରେ ବିବାହ କଲେ । ତା' ବି ଚଣ୍ଡାଳ କନ୍ୟାକୁ ନିଜର ସ୍ୱାର୍ଥ ପାଇଁ ନୁହେଁ, ପ୍ରଜାଙ୍କ ହିତ ପାଇଁ ।' ସେଇ ବଶିଷ୍ଠଙ୍କର ବଂଶଧର ତୁମେ—ପୁରାଣ ଯୁଗର ଏକ ବିରାଟ ସ୍ୱାର୍ଥତ୍ୟାଗୀ ପୁରୁଷଙ୍କର ତମେ ବଂଶଧର, ପରୀକ୍ଷିତ ।

—ମୁଁ କେତେ ଭାଗ୍ୟବାନ ଗୁରୁଦେବ କିନ୍ତୁ ମୋ'ର ଏକ ସନ୍ଦେହ ମୋଚନ କରନ୍ତୁ । ଆପଣ ପୂର୍ବରୁ କହିଥିଲେ ଯେ ଦେବୀ ଦୁର୍ଗା ଚଣ୍ଡାଳ ପୁରକୁ ଦୃଷ୍ଟି ଦେଇଥିଲେ, ଚଣ୍ଡାଳପୁର ନାଁ କାହିଁକି ହେଲା ।

ଶୁଣ ତେବେ—

ଅମ୍ବିକା ଚଣ୍ଡାଳର ଶସ୍ୟ ନହୁଷ ବାଣ୍ଟିଲା ଏବଂ ଶସ୍ୟରେ ଫସଲ ହୋଇଲା । ସେ ଫସଲ ଅସମ୍ଭବ ପରିମାଣରେ ହୋଇ ପ୍ରଜାଙ୍କ ଚିନ୍ତା ଦୂର କଲା । ନହୁଷ ସରସ୍ୱତୀ ନଦୀକୂଳରେ ଅମ୍ବିକା ଚଣ୍ଡାଳକୁ ସାଦର ନିମନ୍ତ୍ରଣ କରି ହଜାର ହଜାର ବାଟି ଜମି ଦେଲା । ଅମ୍ବିକା ଚଣ୍ଡାଳ ନିଜର ନଗର ସ୍ଥାପନ କରି ଆନନ୍ଦରେ ରହିଲା ସେ ସ୍ଥାନର ନାଁ ହେଲା ଚଣ୍ଡାଳପୁର ।

ଚଣ୍ଡାଳପୁର ଦର୍ଶାଇଲା ଯେ ଚଣ୍ଡାଳମାନେ ବି ପୁଣ୍ୟ କରିବାପାଇଁ ସମର୍ଥ ।



# ଦୁର୍ଜୟୀବୀର କାଳକମୋଚନ

ଡାକ୍ତର ନିମାଇଁ ଚରଣ ପଣ୍ଡା

ଲକ୍ଷ୍ମୀଭଦ୍ରା ନଗର ଦକ୍ଷିଣ ପାର୍ଶ୍ୱରେ ପ୍ରବଳ ପରାକ୍ରମୀ ମହିଷାସୁର ଯୁଦ୍ଧ ଶିବିର ସ୍ଥାପନ କରି ଲଢ଼େଇର ଗତିବିଧି ଲକ୍ଷ କରୁଥିଲା । ନଗର ଅନତି ଦୂରରେ ରତ୍ନଗିରି ପର୍ବତ ଉପରୁ ଦୁର୍ଗତିନାଶିନୀ ମା' ଦୁର୍ଗା ମହାମାୟା ମହିଷାସୁର ବିରୁଦ୍ଧରେ ସୈନ୍ୟଚାଳନା କରୁଥିଲେ । ନଗର କୂଳେ କୂଳେ ରଣାଙ୍ଗନରେ ଚାଲିଥାଏ ଘମାଘୋଟ ଲଢ଼େଇ । ଦୁର୍ଗାଙ୍କ ସୈନ୍ୟବାହିନୀରେ ଥିଲେ ଚଣ୍ଡୀ, ଚାମୁଣ୍ଡା, ଯୋଗିନୀ, କାତ୍ୟାୟିନୀ, କେଶରୀ ବାହିନୀ, ମନମୋହିନୀ, ଜମ୍ବୁବତୀ ଓ ସୂର୍ପାକ୍ଷୀ ଭୈରବୀ । ସେମାନଙ୍କ ସଂଖ୍ୟା ଥିଲା ଅନନ୍ତ କୋଟି । ନବକୋଟି କାତ୍ୟାୟିନୀ ସଙ୍ଗରେ ଚଉଷଠି ଯୋଗିନୀ । ଏମାନେ ଶତ୍ରୁ ସୈନ୍ୟଙ୍କୁ ବିକଟ ରୂପ ପ୍ରଦର୍ଶନ କରି ହତ୍ୟା କରୁଥିଲେ ଓ ଆବଶ୍ୟକ ସ୍ଥଳେ ମାୟା ପ୍ରକଟ କରି ମନମୋହିନୀ ବେଶରେ ଦାନବ ସୈନ୍ୟମାନଙ୍କୁ ଆକର୍ଷିତ କରି କପଟରେ ଅସୁର ବଳକୁ ଧ୍ୱଂସ କରୁଥିଲେ । ଦେବୀମାନେ ଥିଲେ ପଞ୍ଚବର୍ଣ୍ଣା ଶ୍ୱେତ, ପିତ୍ତ, ପାଣ୍ଡୁର, କୃଷ୍ଣ ଓ ମିଶ୍ରିତ ବର୍ଣ୍ଣର । ଏମାନେ ଭୈରବୀ ସ୍ୱାଙ୍ଗ ଅସୁର ସୈନ୍ୟଙ୍କୁ ବିନାଶ କରିବାକୁ ଉଦ୍ୟତ ହେଉଥିଲେ । ମହିଷାସୁର ବାହିନୀରେ ଥିଲେ ଅସଂଖ୍ୟ ସୈନ୍ୟବଳ । ତିନିକୋଟି ଶସ୍ତ୍ରଧାରୀ ଯୋଦ୍ଧା, ପାଞ୍ଚକୋଟି ରଥାରୋହୀ, ପଚାଶ ଷଉଣୀ ଗଜ, ଅଶୀ କୋଟି ମୁକୁଟବନ୍ଧା ବୀର, ସିଂହମୁଖା, ଘୋଡ଼ାମୁଖା ସେନାପତି ସାଙ୍ଗକୁ ଅସଂଖ୍ୟ ଢୋଲବାଦକ, ଟମକ, ରଣଦୁନ୍ଦୁଭି ଓ ପାଟଛଣୀ ଆଳଟ ଚାମରଧାରୀ । ବଡ଼ବଡ଼

ଯୋଦ୍ଧାମାନଙ୍କ ସଙ୍ଗରେ ଦାନବ ସୈନ୍ୟମାନେ ଦେବୀ ସୈନ୍ୟ ଉପରେ ଆକ୍ରମଣ କରି ମେଦିନୀ ଟଳମଳ କରୁଥିଲେ ।

ସେଦିନର ଯୁଦ୍ଧ ସରିଆସିଲା । ସୂର୍ଯ୍ୟ ଅସ୍ତଯିବା ସଙ୍ଗେ ସଙ୍ଗେ ଯୋଦ୍ଧାମାନେ ନିଜ ନିଜର ସୈନ୍ୟ ଛାଉଣୀକୁ ଫେରିବାକୁ ଲାଗିଲେ । ମହିଷାସୁର ଯୁଦ୍ଧ ଶିବିରରେ ପାତ୍ରମନ୍ତ୍ରୀଙ୍କ ଗହଣରେ ରାତ୍ରୀଯାପନ କଲା । ଏଣେ କିନ୍ତୁ ଦେବୀ ଦୁର୍ଗା ଏକ ମାୟାବିସ୍ତାର କଲେ । ତାଙ୍କ ନିର୍ଦ୍ଦେଶରେ ଦେବୀଙ୍କ ସୈନ୍ୟମାନେ ଜଗତମୋହିନୀ ବେଶରେ ଦାନବ ସୈନ୍ୟ ଆଗରେ ଉଭା ହୋଇ କାମ ବାସନାର ଇଙ୍ଗିତ ନିକ୍ଷେପ କଲେ । କାମ ବିମୋହିତ ଅସୁରମାନେ ମନମୋହିନୀ ଦେବୀମାନଙ୍କୁ ସାଙ୍ଗରେ ଧରି ସନ୍ନିକଟ ସୁରମ୍ୟ ହର ଉଦ୍ୟାନରେ ପ୍ରବେଶ କଲେ ଓ ନାନା କୌତୁକ ପରିହାସରେ ନିମଜ୍ଜିତ ରହିଲେ । ପରେ ପରେ ମଦ୍ୟରସ ପାନକରି ମତୁଆଲା ହୋଇ ନୃତ୍ୟ କରିବାରେ ଲାଗିପଡ଼ିଲେ । କପଟବେଶୀ ଦେବୀମାନେ ସୁଯୋଗ ଉଣ୍ଡି ଅତ୍ୟଧିକ ମଦ୍ୟପାନ କରାଇ ଦାନବ ସୈନ୍ୟମାନଙ୍କୁ ଅଚେତନ କରି ପକାଇଲେ । ତା'ପରେ ଦେବୀ ସୈନ୍ୟମାନେ ମନମୋହିନୀ ବେଶ ପରିତ୍ୟାଗ କରି ଭୈରବୀ ବିକଟାଳ ରୂପ ଧରି ଅସୁର ସୈନ୍ୟମାନଙ୍କୁ ମାରିବାକୁ ଆରମ୍ଭ କଲେ । କେତେକ ଦାନବମାନଙ୍କର ବକ୍ଷ ଚିରି ରକ୍ତ ପିଇଲେ । ଅନ୍ୟ କେତେକ ଅସୁରମାନଙ୍କର ମୁଣ୍ଡଗଣ୍ଡି ଅଲଗା କରିଦେଲେ । କେତେକ ସେମାନଙ୍କର ବାହୁ, ଜାନୁ ଉତ୍ପାଟନ କରି ବିକ୍ଷିପ୍ତ ଅବସ୍ଥାରେ ପକାଇଲେ ଓ ଆଉ କେତେକ ରାକ୍ଷସମାନଙ୍କର ଅନ୍ତଚିରି ମାଂସ ଭକ୍ଷଣ କରିବାରେ ଲାଗିଲେ । ଦେବୀ ସୈନ୍ୟମାନେ ବିକଟାଳ ରୂପଧରି ଉଦଣ୍ଡ ନୃତ୍ୟ କରୁଥିଲେ । ନଖଘାତରେ ସେମାନେ ଅସୁରମାନଙ୍କର ପଞ୍ଜରା ବିଦୀର୍ଣ୍ଣ କରିପକାଇଲେ । ମୁଣ୍ଡ ମୋଡ଼ି ପକାଇଲେ । ବକ୍ଷସ୍ଥଳରେ ପଦାଘାତ କରି କ୍ରୋଧରେ ସେମାନଙ୍କୁ ସଂହାର କଲେ । ସମସ୍ତ ଦୈତ୍ୟ ସୈନ୍ୟଙ୍କୁ ବିନାଶ କରି ଚଣ୍ଡୀଗୁମଣ୍ଡାମାନେ ରାତି ପାହିବା ପୂର୍ବରୁ ଦୁର୍ଗାଦେବୀଙ୍କ ସମ୍ମୁଖରେ କରପତ୍ର ଯୋଡ଼ି ସକଳ ବୃତ୍ତାନ୍ତ ଜଣାଇଲେ । ଆଶ୍ୱସ୍ତ ହେଲା ବସୁନ୍ଧରା । ଦୁଷ୍ଟ ଦାନବମାନଙ୍କର ବିନାଶ ଘଟିଲା ଦେବୀଙ୍କ ଦୟାରୁ ଦୁଷ୍ଟମାନଙ୍କର ସଂହାର ହେଲା ।

ଏଣେ ରାତି ପାହିଆସିଲା ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ମହିଷାର ସେନାପତିମାନେ ତା' ପାଖରେ ପହଞ୍ଚିଗଲେ । ଏମାନଙ୍କ ଭିତରେ ଥିଲେ ପରାକ୍ରମୀ ଶୂନ୍ୟ, ଜଗଶୂନ୍ୟ, ଦୁତପତି, କାଳବିକାଳ, ସାରଥି ଦେବ-ମର୍ଦ୍ଦନ ଓ ମହିଷାର ପ୍ରବଳ ପ୍ରତାପୀ ବୀର କାଳବିମୋଚନ । ଏମାନଙ୍କୁ ଦେଖି ତାଙ୍କୁ ସାଙ୍ଗରେ ଧରି ଯୁଦ୍ଧ ପରିଚାଳନା ଦେଖିବାକୁ ମହିଷାସୁର ବାହାରି ପଡ଼ିଲା । ଦୁର୍ଜୟୀ ବୀର ମହିଷାସୁର ଶାର୍ଦ୍ଦୂଳ ଆରୋହଣ କଲା ହାତରେ ଧରିଲା ବଜ୍ରଯଷ୍ଟି ଓ ସାଙ୍ଗରେ ନବକୋଟି ସୈନ୍ୟସାମନ୍ତ । ସୈନ୍ୟମାନଙ୍କର ପଦପ୍ରହାରରେ ବସୁନ୍ଧରା ପୁଣି ପ୍ରକମ୍ପିତ ହେଲା । ସେନାବାହିନୀ ନୃପତିଙ୍କୁ ସଙ୍ଗରେ ଧରି ମାଡ଼ିଚାଲିଲେ । କିନ୍ତୁ ହଠାତ୍ ଲକ୍ଷ୍ମୀଭଦ୍ରା ନଦୀର ଦକ୍ଷିଣପାର୍ଶ୍ୱରେ ରଣଭୂମିର ଅନତିଦୂରରେ ଅଟକିଗଲେ । ସମ୍ମୁଖରେ ବିପର୍ଯ୍ୟସ୍ତ ହରି ଉଦ୍ୟାନ ! ସେନାବାହିନୀ ତଟସ୍ଥ ହୋଇଗଲେ ।

ଏ କ'ଣ ସେମାନେ ଦେଖୁଛନ୍ତି ! ମୁଖରେ କାହାରି ଭାଷା ନାହିଁ । ନୟନ ବିସ୍ଫାରିତ ହୋଇ ଯାଉଛି । ହରି ଉଦ୍ୟାନ ଶ୍ମଶାନରେ ପରିଣତ ହୋଇଛି । ସମ୍ମୁଖରେ ରକ୍ତର ନଦୀ ବହିଯାଉଛି । ମାଂସ ମେଦର ପିଣ୍ଡୁଳା ହୋଇ ଦାନବ ସୈନ୍ୟମାନେ ବିକ୍ଷିପ୍ତ ଭାବେ ପଡ଼ିରହିଛନ୍ତି । ମହିଷାସୁରର ଅସଂଖ୍ୟ ସୈନ୍ୟ ମୃତାହତ । ବିକ୍ଷିପ୍ତ ମୃତ ସୈନ୍ୟମାନଙ୍କର କଙ୍କାଳ ରୂପରେ ରଣାଙ୍ଗନ ଭୟଙ୍କର ଦିଶୁଛି । ପ୍ରବଳ ପରାକ୍ରମୀ ମହିଷାସୁର ଏ ଭୟଙ୍କର ଦୃଶ୍ୟ ଦେଖି ମୂର୍ଚ୍ଛା ହୋଇ ଶାର୍ଦ୍ଦୂଳ ପୃଷ୍ଠରୁ ଖସି ପଡ଼ିଲା । ପାତ୍ରମନ୍ତ୍ରୀମାନେ ଶୀତଳ ସିଞ୍ଚି ରାଜାଙ୍କର ଚେତା ଫେରାଇ ଆଣିଲେ । କିନ୍ତୁ ମହିଷାସୁର ଧୈର୍ଯ୍ୟଧରି ରହିପାରିଲା ନାହିଁ । ସେ ଆକୁଳ ହୋଇ ମୃତ ସୈନ୍ୟମାନଙ୍କୁ କୋଳାଗ୍ରତ କଲା । ଭୂମିରେ ମୁଣ୍ଡକୋଡ଼ି ବିକଳ ଭାବେ କ୍ରନ୍ଦନ କଲା । ନିଜ ବାହୁବଳ ଓ ବଳବୀର୍ଯ୍ୟକୁ ଶତବାର ଧିକ୍କାର କଲା । ଶେଷରେ ଅଗ୍ନିରେ ପଶି ପୋଡ଼ି ହୋଇ ଏ ଅସାର ଜୀବନକୁ ଧ୍ୱଂସ କରିବାକୁ ଇଚ୍ଛାପ୍ରକାଶ କଲା । ମହିଷାସୁର ବିକଳ ଭାବେ କାନ୍ଦିବାକୁ ଲାଗିଲା । ରାଜାଙ୍କର ଏହି ଦୟନୀୟ ଅବସ୍ଥା ଦେଖି ପରାକ୍ରମୀ ବୀର କାଳବିମୋଚନ ବାହାସ୍ଫୋଟ ମାରି ଉଠିପଡ଼ିଲା ଓ ରାଜାଙ୍କୁ ସମ୍ବୋଧନ କଲା ।

"ହେ ତ୍ରିଭୁବନ ଜୟୀ ନୃପତି ମହିଷାସୁର ! କ୍ରନ୍ଦନ ବନ୍ଦକର ! ପରିତାପ ପରିହାର କର ! ମୋର ଶକ୍ତି ବିଷୟରେ ଆପଣଙ୍କୁ ଅଗୋଚର ନାହିଁ । ମୋର ଭୁଜବଳରେ ମୁଁ ମେରୁ ଉପାଡ଼ି ପାରେ । ତ୍ରିଭୁବନକୁ ହେଳ କରୁଡ଼ ଦେଇପାରେ ଓ ସାତସିନ୍ଧୁକୁ ଚକ୍ଷୁ କରିଦେଇ ପାରେ ! ବଧାମାତ୍ରରେ ଚତୁର୍ଦ୍ଦଶପୁର ମୁଁ ଭଙ୍ଗି ଦେଇପାରେ । ଏଣୁ ମୁଁ ଥାଉଁ ଥାଉଁ ଆପଣଙ୍କର ଦୁଃଖ କାହିଁକି ? ମୋତେ ଆଦେଶ ଦିଅନ୍ତୁ ! ମୁଁ ଅବିଳମ୍ବେ ଏ ଦେବୀମାନଙ୍କୁ ମାରି ପଦା କରିଦେବି ।"

ମହିଷାସୁରର ଆଦେଶ ପାଇବା ପୂର୍ବରୁ ସେ ଯୁଦ୍ଧଭୂଇଁକୁ ଲମ୍ଫ ପ୍ରଦାନ କଲା । କାଳବିମୋଚନ ହଠାତ୍ ପଞ୍ଚାଅଶି ଯୋଜନ ପର୍ଯ୍ୟନ୍ତ ତା'ର କାୟା ବିସ୍ତାର କରି ଦେବୀ ସୈନ୍ୟମାନଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲା । ଅପ୍ରତ୍ୟାଶିତ ଭାବରେ କାଳବିମୋଚନର ଭୟଙ୍କର ରୂପ ଦେଖି ଦେବୀମାନେ ଆତଙ୍କିତ ହୋଇ ପଡ଼ିଲେ । ଯୁଦ୍ଧ ଛାଡ଼ି ସେମାନେ ଦୃଷ୍ଟି ନିକ୍ଷେପ କରୁ କରୁ କାଳବିମୋଚନର ସମ୍ମୁଖରେ ଚଢ଼ିଗଲେ ।

ଦେବୀମାନଙ୍କର ଭୁବନମୋହନ ରୂପ ଦେଖି କାଳବିମୋଚନ ପ୍ରଥମେ ଅଟକିଗଲା । କିନ୍ତୁ ରୂପ ପାଇଁ ଦାନବ ସୈନ୍ୟମାନଙ୍କର ବିପର୍ଯ୍ୟୟ ହୋଇଛି ଭାବି ସେ ପୁଣି ଉଗ୍ରମୂର୍ତ୍ତି ଧାରଣ କଲା । ରଥ ପରିତ୍ୟାଗ କରି କାଳବିମୋଚନ ବିବସ୍ତ୍ର ହୋଇ ଦେବୀମାନଙ୍କୁ ଧରିବା ପାଇଁ ଆଗେଇଗଲା । କାଳବିମୋଚନ ଥିଲା ନିର୍ଜିତାର ନାତି । ଯୁଦ୍ଧରେ ଅପରାଜେୟ । ରଣ କୌଶଳରେ ଧୂରନ୍ଧର । ଦେବୀମାନଙ୍କର କାମ ମୋହରେ ପଡ଼ିବାର ଦୈତ୍ୟ ସେ ନୁହନ୍ତି । ତାଙ୍କ କ୍ରୋଧ କ୍ରମେ ବଢ଼ିବାରେ ଲାଗିଲା । ଶବ ଦେଖି ଶୃଗାଳ ଦୌଡ଼ିଲା ଭଳି ଦେବୀମାନଙ୍କ ପଛରେ କାଳବିମୋଚନ ବେଗରେ ଧାଇଁବାକୁ ଲାଗିଲା । ଥୋକେ ଲେଖା ଦେବୀମାନଙ୍କୁ ଧରି ତାଙ୍କ ପାଦଧରି ବୁଲାଇ ବୁଲାଇ ଦୂରକୁ ଫିଙ୍ଗିଦେଲା । ନିକ୍ଷେପିତ ଦେବୀମାନେ ପ୍ରଥମେ ଚନ୍ଦ୍ରଦ୍ୱୀପରେ ପଡ଼ିଲେ । ଏମାନଙ୍କ ମଧ୍ୟରେ ଥିଲେ ବିଜୟା କାମାକ୍ଷୀ, ବିରଜୀ ତରକ୍ଷୀ, ନଳଗ୍ରୀ ମିରେଜୀ ଓ କାର୍ତ୍ତିକଗ୍ଳୀ ଇତ୍ୟାଦି । ଦ୍ୱିତୀୟବାର ଶୂନ୍ୟରେ ଉଡ଼ି ଉଡ଼ି କାଳବିମୋଚନ ପୁଣି ଦେବୀମାନଙ୍କୁ ଧରି ଦକ୍ଷିଣ ଦିଗକୁ ନିକ୍ଷେପ କଲା । ଏଥରକ ସେମାନେ ଅସହାୟ

ଅବସ୍ଥାରେ କୁଶଦ୍ୱୀପରେ ଭୂପତିତ ହେଲେ । ଏ ମୋହନ୍ମା ଦେବୀମାନଙ୍କ ମଧ୍ୟରେ ଥିଲେ ରାଧାପ୍ଲୀ, ବିଳାଜ୍ଞ, ଉଗ୍ରତାର, ମାଳଣ୍ଡ କାମାପ୍ଲୀ, ଚର୍ଚ୍ଚିକାଇ, ସୁଭଲାଇ, ଅଗ୍ନିଚଣ୍ଡାଭଗ୍ନି ପ୍ରଭୃତି କୋଟିଏ କାତ୍ୟାୟିନୀ । ଏତିକରେ ମଧ୍ୟ କାଳବମୋଚନ ଶାନ୍ତ ନ ହୋଇ ବୁଲବୁଲ ଦେବୀମାନଙ୍କୁ ଧରି ଅନ୍ତରୀକ୍ଷକୁ ନିକ୍ଷେପ କଲା ଓ ତୃଣପ୍ରଥର ପାଇଁ ଅଣିଲକ୍ଷ ଦେବୀ ସିଂହଳ ଦ୍ୱୀପରେ ମୂର୍ଚ୍ଛିତ ହୋଇ ପଡ଼ିଲେ । ଏମାନେ ହେଲେ କଳାପ୍ଲୀ, ଚମାପ୍ଲୀ, ହୀରପୋହଳାପ୍ଲୀ, ଜାତି ଜମ୍ବୁବଣ୍ଡି, ମନ୍ଦାଗ୍ନି ନର୍ମଦା, ଶ୍ୱେଳୀ ପରମନ୍ଦା, ନେପାଳୀ କପାଳୀ, ବାସନ୍ତୀ ପାଟେଳୀ ଓ କଣ୍ଠାପ୍ଲୀ ଚନାମାଳୀ ଜମ୍ବୁବଣ୍ଡି-ମାନେ । ମହାବଳୀ ଦାନବର ଯୁଦ୍ଧତୃଷ୍ଣା ମେଣ୍ଟିବାର ନୁହେଁ । ସେ ପୁଣି ଧାଇଁ ଧାଇଁ ଦେବୀମାନଙ୍କୁ ଧରି ବୁଲାଇ ବୁଲାଇ ଆକାଶକୁ କ୍ଷେପଣ କଲା ଓ ସେଥିରୁ ନଅଲକ୍ଷ ଦେବୀ କ୍ରୋଞ୍ଚ ଦ୍ୱୀପରେ ପଡ଼ି ପ୍ରାଣ ହରାଇଲେ । ଏହି ଦେବୀମାନଙ୍କ ମଧ୍ୟରେ ଥିଲେ ଅମ୍ବିକା ଚମ୍ପାଳୀ, ମାହେଶ୍ୱରୀ ହୀରମାପ୍ଲୀ, ମରୁଆ ସାରଆ, କେତକୀ ବେତାଳୀ, କାମ ବାହେଶ୍ୱରୀ ଓ ବମୁଖାଇ ପ୍ରଭୃତି । ଘନଘନ କ୍ରୋଧ ଜର୍ଜରିତ ହୋଇ ଦାନବ ବୀର କାଳବମୋଚନ ଅନେକ ଦେବୀଙ୍କୁ ଧରି ବୁଲାଇ ଫିଙ୍ଗିଦେଲା ଓ ସେମାନଙ୍କ ମଧ୍ୟରୁ ନବ ଅଯୁତ ଦେବୀ ସୈନ୍ୟ ଲଙ୍କା ଦେଶରେ ଭୂତଳଶାୟୀ ହେଲେ । ଏମାନଙ୍କ ମଧ୍ୟରେ ଥିଲେ ପଶ୍ଚିମା ବରାହୀ, ମାଳା ରୌଷଧାପ୍ଲୀ, ଛନ୍ଦନା ଯୁବଣ୍ଡି, ନାଗେଶ୍ୱରୀ ଓ ସୂପାକ୍ଷୀ ଭୈରବୀ ଯୋଗିନୀମାନେ । ଏହା ବ୍ୟଥିତ କ୍ରୋଧୀ କାଳବମୋଚନ ଆହୁରି ଅନେକ ଦେବୀଙ୍କୁ ଧରି ଉତ୍ତର ଦିଗକୁ ନିକ୍ଷେପ କଲା । ଏମାନେ ଥିଲେ ନବକୋଟୀ ଚଣ୍ଡୀ, ଲେଙ୍କା ଅମ୍ବିକା ନିତ୍ୟାନନ୍ଦା, ବରାହୀ, କାମରୂପୀ, ମେଖଳୀ ହବ୍ୟରୂପୀ, କଙ୍କାଳୀ ପେଚାଗ୍ରଣୀ, ଡାକେଶ୍ୱରୀ, ହାକେଶ୍ୱରୀ, ପାଷାଣୀ ସାବର୍ଣ୍ଣୀ, କମଳା ସୁଲକ୍ଷଣ ଓ ହଟକେଶ୍ୱରୀ ଇତ୍ୟାଦି ।

ଏତିକରେ ମଧ୍ୟ କାଳବମୋଚନର କ୍ରୋଧ ଶାନ୍ତ ହେଲା ନାହିଁ, କି ତାର ଶତ୍ରୁବଧର ପିପାସା ମେଣ୍ଟିଲା ନାହିଁ । ଘନ ଘନ ଆକ୍ରମଣ କରି ସେ ପୁଣି ଦେବୀ ସୈନ୍ୟମାନଙ୍କୁ ଧରି ନଠେଇ ନଠେଇ ଅନ୍ତରୀକ୍ଷକୁ ଫିଙ୍ଗି-ଦେଲା । ଏମାନେ ଶୂନ୍ୟରୁ ଜାତ ହୋଇ ଦୈତ୍ୟମାନଙ୍କୁ ରକ୍ତ ଆଶା ଦେଖାଇ ହତ୍ୟା କରୁଥିଲେ । ଏମାନଙ୍କୁ ଗୋଡ଼େଇ ଗୋଡ଼େଇ ଧରେ

କାଳବିମୋଚନ ହତ୍ୟା କଲା ଓ ସପ୍ତଦ୍ୱୀପକୁ ଫିଙ୍ଗି ଦେଲା । ଏଠାରେ ଅନନ୍ତ କୋଟି ଦେବୀ ମୂମୂର୍ଷ ଅବସ୍ଥାରେ ପଡ଼ିରହିଲେ । ସେମାନଙ୍କ ମଧ୍ୟରୁ ଅନେକଙ୍କ ମୁହଁ ବଙ୍କା ହୋଇଗଲା । କାହାର ହାତ କେଙ୍କା ହେଲା । କାହାର ଚକ୍ଷୁ କଣା ହୋଇଗଲା ଅଥବା କାହାର କଙ୍କାଳ ପେଟି ବଙ୍କା ହୋଇ ଅଷ୍ଟବକ୍ର ହୋଇ ପଡ଼ିଲା । ଅନେକ ଦେବୀଙ୍କୁ ମଧ୍ୟ କାଳବିମୋଚନ ପଶ୍ଚିମ ସୌରାଷ୍ଟ୍ରକୁ ଫିଙ୍ଗି ଦେଲା ଓ ଏକ ସହସ୍ର ଦେବୀ ଆକାଶରେ ଉଡ଼ି ଉଡ଼ି ସୌରାଷ୍ଟ୍ରର ଘନ ଜଙ୍ଗଲରେ ନିଖୋଜ ହୋଇଗଲେ । ଏମାନେ କାଳକ୍ରମେ ବନଦେବତା ହୋଇ ରହିଗଲେ । ସେମାନଙ୍କ ମଧ୍ୟରେ ଥିଲେ ଅସୀତା ଅମାଙ୍ଗା, ରକ୍ତା ପିଙ୍ଗଳା, ବିକାନ୍ତ କୁକୁଟି ଓ ଲମ୍ବପେଟି ଇତ୍ୟାଦି । ଏମାନଙ୍କ ସଂଖ୍ୟା ଥିଲା ସାତ ସହସ୍ର । କାଳବିମୋଚନର ପରାକ୍ରମରେ ଦୁର୍ଗା ଦେବୀଙ୍କର ସୈନ୍ୟବଳ ଧ୍ୱଂସ ବିଧ୍ୱସ୍ତ ହୋଇଗଲା । କୋଟି କୋଟି ଦେବୀ ଦାନବ ଆକ୍ରମଣରେ ମୃତ, ଅର୍ଦ୍ଧମୃତ, କ୍ଷତବିକ୍ଷତ ଓ ବିକଳାଙ୍ଗ ହୋଇ ଚନ୍ଦ୍ର ଦ୍ୱୀପ, କୁଶ ଦ୍ୱୀପ, ସିଂହଳ ଦ୍ୱୀପ, କ୍ରୋଞ୍ଚ ଦ୍ୱୀପ, ଜମ୍ବୁ ଦ୍ୱୀପ, ସପ୍ତଦ୍ୱୀପ, ସୌରାଷ୍ଟ୍ର ଦେଶ, ବଲଙ୍କା ଦେଶ ଓ ଉତ୍ତରାଖଣ୍ଡରେ ନିକ୍ଷେପିତ ହେଲେ । ଅନନ୍ତ କୋଟି ଦେବୀ ସୈନ୍ୟମାନେ ମରି ପଦା ହୋଇଗଲେ । ଦେବୀ ଦୁର୍ଗାଙ୍କର ସୈନ୍ୟ ଛାଉଣୀ ଖାଁ ଖାଁ ଦିଶିଲା । ଅସୁର ଶିବିରରେ ରଣ ଦୁନ୍ଦୁଭି ଦ୍ୱିଗୁଣିତ ହେଲା । କାଳବିମୋଚନର ଜୟଜୟକାରରେ ଗଗନ ପବନ ମୁଖରିତ ହେଲା ।

କାଳ ବିମୋଚନର ବିଜୟବାର୍ତ୍ତା ପ୍ରଚାରିତ ହୋଇଗଲା । ବାର୍ତ୍ତାବହ ଦୂତମାନଙ୍କୁ ରାଜା ମହିଷାସୁର ରତ୍ନସ୍ନାନ କରାଇ ଉପଢୌକନ ଦେଲା । ଶତ୍ରୁ ସୈନ୍ୟର ମୂଳୋତ୍ପାଟନ କରି କାଳବିମୋଚନ ସଗର୍ବରେ ରାଜଧାନୀକୁ ଫେରି ଆସିଲା । ମହିଷାସୁରର ଆନନ୍ଦ କହିଲେ ନ ସରେ । ସମଗ୍ର ନଗର ଆଲୋକମାଳାରେ ସଜ୍ଜିତ ହେଲା । ବିଜୟ ଉତ୍ସବ ପାଳିତ ହେଲା । ରାଜା ମହିଷାସୁର କାଳବିମୋଚନ ସହିତ କରମର୍ଦ୍ଦନ କରି ଶହେ କୋଟି ରତ୍ନ ଉପହାର ଦେଇ ତାକୁ ସ୍ୱାଗତ ଜଣାଇଲା ।



# ମହିଷାସୁରକୁ ଚଣ୍ଡ ମୁଣ୍ଡଙ୍କ ବାର୍ତ୍ତା

ଡକ୍ଟର ବିଜୟାନନ୍ଦ ସିଂହ

ଦୁର୍ଗା ଜନ୍ମ ନେଲେ । ମହିଷାସୁରକୁ ନିଧନ କରିବା ପାଇଁ ଦୁର୍ଗାଙ୍କର ଏ ଧରା ପୃଷ୍ଠରେ ଆବିର୍ଭାବ । ପାପ ଓ ଅନ୍ୟାୟ, ଅନାଚାର ପ୍ରତୀକ ମହିଷାସୁର । ପୃଥିବୀକୁ ଶାନ୍ତ, ଶୀତଳ କରିବାକୁ ହେବ—ସନ୍ଥ ମାନଙ୍କୁ ସୁରକ୍ଷିତ କରିବାକୁ ହେବ । ଧରଣୀକୁ ସବୁଜ ସୁନ୍ଦର କରିବାକୁ ହେବ—ସକଳ ଶକ୍ତିର ଆଧାର ମା' ଦୁର୍ଗା ଦେବୀଙ୍କର ଏହା ଲକ୍ଷ୍ୟ, ଏଇ ଉଦ୍ଦେଶ୍ୟ । ଏଇଥିପାଇଁ ତାଙ୍କର ନବଜନ୍ମ ।

ପ୍ରଚଣ୍ଡ ମହିଷାସୁରଙ୍କର ସେନାପତି ଚଣ୍ଡ ଓ ମୁଣ୍ଡ ବନ, ଗିରି-କନ୍ଦରରେ ମୃଗ ଶିକାର କରିସାରିଲା ପରେ ନଦୀକୁ ସ୍ନାନ କରିବା ପାଇଁ ଗଲେ । ସ୍ନାନ କଲା ସମୟରେ ନଦୀଜଳ ମଧ୍ୟରେ ଏକ ହେମ ପଦ୍ମକୁ ଦର୍ଶନ କରି ଉଭୟେ ମୁଗ୍ଧ ହୋଇଗଲେ । ଦାନବ ଦ୍ୱୟ ସ୍ନାନକୁ ଉପେକ୍ଷା କରି ହେମପଦ୍ମକୁ ଅନୁସରଣ କଲେ । ଆଶ୍ଚର୍ଯ୍ୟ କଥା—ଦାନବ ଦ୍ୱୟ ହେମପଦ୍ମ ନିକଟକୁ ଯାତ୍ରା କଲାପରେ ହେମପଦ୍ମ ଦୂରେଇ ଦୂରେଇ ଯାଉଥାଏ—ହାଏ କେମିତି ମିଳିବ ଏହି ହେମପଦ୍ମ !! ପୁଣି କେତେ ସମୟ ପରେ ହେମପଦ୍ମ କେଉଁଠି ପୁଣି ଅଦୃଶ୍ୟ ହୋଇଗଲା । ଚଣ୍ଡ ମୁଣ୍ଡ ଚିନ୍ତାକଲେ ହେମ-ପଦ୍ମ କ'ଣ ନଦୀକୁ ଅତିକ୍ରମ କରି କେଉଁ ଆଡ଼କୁ ଚାଲିଗଲା—। ନାଁ ସେ ହେମପଦ୍ମ ନୁହେଁ ଆଉ କଣ ?? ଚଣ୍ଡ ମୁଣ୍ଡ ନଦୀକୁ ଅତିକ୍ରମ କରି ସାରିଲା ପରେ ଏକ ପର୍ବତ ସମ୍ମୁଖରେ ଉପନୀତ ହୋଇଗଲେ । ପର୍ବତ ଉପରକୁ ଉଭୟେ ଚାହିଁଲା ମାତ୍ରେ ଉଭୟେ ଆଶ୍ଚର୍ଯ୍ୟ ହୋଇଗଲେ ।

—କ'ଣ ଦେଖୁଛନ୍ତି—ଆଖି ତାଙ୍କର ଝଲସିଗଲା— । ଶରୀରରେ କମ୍ପନ ସୃଷ୍ଟି ହେଲା—ହୃଦୟରେ ଶିହରଣ ଜାତହେଲା –ପର୍ବତ ଉପରେ ଏକ ଅନିନ୍ଦ୍ୟ ସୁନ୍ଦରୀ ବିରାଜମାନ କରୁଛନ୍ତି । ଏହି ସୁନ୍ଦରୀ କନ୍ୟାଙ୍କ ଚରଣତଳେ ପଦ୍ମ ଫୁଟିଛି । ଦାନବ ବିଚାର କଲେ—ଏ ମାନବୀ ନୁହଁନ୍ତି ଏ ନିଶ୍ଚୟ ଦେବୀ—

ଚଣ୍ଡ ମୁଣ୍ଡ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଏହି ଅପୂର୍ବ ସୁନ୍ଦରୀଙ୍କୁ ପଚାରିଲେ—ହେ ବିଶ୍ୱ ସୁନ୍ଦରୀ ତୁମେ କିଏ—? ? କ'ଣ ତୁମର ପରିଚୟ ? ? ଆମେ ଚତୁର୍ଦ୍ଦଶ ପୁର ଭ୍ରମଣ କରିଥିଲେ ମଧ୍ୟ ତୁମପରି ସୁନ୍ଦରୀଙ୍କୁ ଆମ ଆଖି ଦେଖି ନଥିଲା । ଦନୁଜଙ୍କଠାରୁ ଏହି କଥା ଶୁଣି ଦେବୀ ତଳକୁ ମୁହଁକରି ଭୂମିକୁ ଚାହିଁଲେ । ଚଣ୍ଡ ମୁଣ୍ଡ ପୁଣି ଦେବୀଙ୍କ ପିତା ମାତା, ସ୍ୱାମୀଙ୍କ ନାମ, ବାସ ସ୍ଥାନର ଠିକଣା ଏବଂ କେଉଁ କାରଣରୁ ଏଠାକୁ ଆଗମନ କରିଛନ୍ତି ପ୍ରଭୃତି ଆହୁରି ଅନେକ ପ୍ରଶ୍ନ ପଚାରିଲେ । ଦେବୀ ନୀରବ · ନିଶ୍ଚଳ···ନିସ୍ତବ୍ଧ । ଚଣ୍ଡ ମୁଣ୍ଡଙ୍କର ଉତ୍କଣ୍ଠା ବୃଦ୍ଧି ପାଇବାରେ ଲାଗିଲା···ସେମାନେ ପଚାରିଲେ—"ତୁମେ ରାକ୍ଷସୀ ନା ପିଶାଚିନୀ ନାଁ ନିଜ କର୍ମଦୋଷରୁ, ନାଁ ଚରିତ୍ର ଦୋଷରୁ ସ୍ୱାମୀଙ୍କ ଦ୍ୱାରା ପରିତ୍ୟକ୍ତ ହେଲାପରେ ଏଠାରେ ଆସି ପହଞ୍ଚିଛ । ଏଠାରେ ଭାଲୁ, ବ୍ୟାଘ୍ର ପଶୁ ଶ୍ୱାପଦମାନେ ବିଚରଣ କରନ୍ତି । ସୂର୍ଯ୍ୟାସ୍ତ ହେଲାପରେ ତୁମେ ତାଙ୍କ ଆହାର ହୋଇଯିବ । ଦାନବ ଦ୍ୱୟଙ୍କର ହସ, ବିକଟାଳ ହସ···। ସେମାନେ କହିଲେ—ଆମ୍ଭେ ନୁହେଁ ଏ ଧରଣୀର ଅଧିକାରୀ । ଦୁଷ୍ଟମାନଙ୍କୁ ଆମେ ନିବାରଣ କରୁ । ତେଣୁ ତୁମେ ଯଦି ଆମ କଥାରେ ସମ୍ମତ ହୋଇ ଆମ୍ଭର ପତ୍ନୀ ହେବ ବୋଲି ସହମତ ପ୍ରକାଶ କରିବ--ତେବେ ସକଳ ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟ ଆମ୍ଭେ ତୁମକୁ ପ୍ରଦାନ କରିବୁ । ନିଜ ପ୍ରାଣଠାରୁ ତୁମକୁ ଅଧିକ ଭଲ ପାଇବୁ । ସ୍ୱାମୀ ପଣ ଛାଡ଼ି ଭୃତ୍ୟପରି ବିନମ୍ର ଭାବରେ ତୁମର ସେବା କରିବୁ । ଚଣ୍ଡ ମୁଣ୍ଡ ଆତ୍ମପରିଚୟ ପ୍ରଦାନ କରି କହିଲେ ଯେ ଦେବାଧିଦେବଙ୍କ ପରେ ଯିଏ ଚକ୍ରବର୍ତ୍ତୀ ମହିଷାସୁର ନୃପତିଙ୍କର ଆମ୍ଭେ ଶକ୍ତିଶାଳୀ ସେନାପତି । ଏହା ଶୁଣି ମାହେଶ୍ୱରୀ ଦୁର୍ଗା ସ୍ମିତ ହସ ହସି ଏହି ଦାନବ ଦ୍ୱୟଙ୍କୁ ଟିକେ ଅନାଇଲେ ଦୁଇଜଣ ଯାକ ସଂଜ୍ଞା ହରାଇ ପଡ଼ିଲେ । କିଛି ସମୟ ପରେ ନିଜର ସ୍ଥିତି ଫେରିପାଇଲା ପରେ ଦୁର୍ଗା କହିଲେ—

ହେ ଅସୁର ଦ୍ୱୟ ତୁମେ ମୋର କୁଳ ଗୋତ୍ର ଜାଣିବାକୁ ଚାହିଁଛ, ତେବେ— ଶୁଣ ମୋର ପରିଚୟ । ମୋର ପିତା ହେଉଛନ୍ତି ହୁତାଶନ ଅଗ୍ନି । ମୋର ନିରାକାର ଗୋତ୍ର । ଏ ସୃଷ୍ଟିର ପରମ ଦେବ ଦୈବତ ମୋର ସ୍ୱାମୀ । ମୁଁ ହେଉଛି ଅତି ଅଭାଗିନୀ ! ମୋର ପ୍ରକୃତି ମଧ୍ୟ ମନ୍ଦ । ମୁଁ ଏପରି ନାରୀ ଯେ ଏକ ରାତି ମଧ୍ୟ ତାଙ୍କ ସହ ଶୟନ କରିନାହିଁ । ପୁରୁଷ ଜାତି ପ୍ରତି ମୋର ତୀବ୍ର ଘୃଣାଭାବ । ସେଥିପାଇଁ ମୋ'ର ପ୍ରଭୁ ମୋତେ ତେଜ୍ୟା କରିଛନ୍ତି । ମୁଁ ମଧ୍ୟ ଗୃହ, ପରିବାର ସଂସାର ପ୍ରତି ବିମୁଖ ହୋଇ ଗୃହ ପରିତ୍ୟାଗ କରିଛି । ମୋର ଜୀବନ ପ୍ରତି ଆକର୍ଷଣ ନାହିଁ । ତେଣୁ ଏ ସଂସାରରେ ମୋର କାହା ପ୍ରତି ଭୟ ଆଉ ନାହିଁ ।' ଦେବୀଙ୍କ ଏହି ପ୍ରଚଣ୍ଡ ବଚନ ଶୁଣି ଚଣ୍ଡ ମୁଣ୍ଡ ଉଭୟରେ ଦେବୀଙ୍କ ନିକଟରୁ ଘୁଞ୍ଚିବା ଆରମ୍ଭକଲେ । ଦୁର୍ଗାଙ୍କ ଏହି ରୂପ ଦେଖି ଅସୁର ଦୁଇଜଣ ବିସ୍ମିତ ହୋଇଗଲେ । ମହିୟସୀ ନାରୀର ସାନିଧ ପାଇବା ବୃଥା ଆସ୍ଫାଳନ ବୋଲି ଅସୁରଦ୍ୱୟ ହୃଦୟଙ୍ଗମ କଲେ ।

ପୁଣି କିଛି ଭାବି ଚଣ୍ଡାସୁର କହିଲି—'ହେ ମହାସତୀ : ମୋ' କଥାରେ ଯଦି ସମ୍ମତ ହେବେ ତେବେ ମୁଁ ତୁମ କଥା ଆମ ନୃପତି ମହିଷାସୁରଙ୍କୁ କହିବି । ତୁମେ ତାଙ୍କର ପ୍ରାଣପ୍ରିୟା ହେବ ବୋଲି ମଧ୍ୟ ତାଙ୍କୁ ଆମେ ପ୍ରସ୍ତାବ ଦେବୁ ।' ଦୁର୍ଗା ହସି ହସି କହିଲେ—'ମହିଷାସୁର ପାଇଁ ମୁଁ ସୃଷ୍ଟି ହୋଇଛି । ଦେବୀଙ୍କ ଅଶେଷ ମହିମା ଦେଖି ଚଣ୍ଡ ମୁଣ୍ଡ ନିଜ ଦୋଷ ପାଇଁ କ୍ଷମା ପ୍ରାର୍ଥନା କରି ମହିଷାସୁର ପୁରକୁ ଗମନ କଲେ ।

ମହିଷାସୁରଙ୍କୁ ସାକ୍ଷାତ କରି ଚଣ୍ଡ ମୁଣ୍ଡ କହିଲେ ଯେ—ଆମେ ବେନି ଭାଇ ମୃଗୟାକୁ ଯାଇଥିଲାବେଳେ ଲକ୍ଷ୍ମୀଭଦ୍ରା ନଦୀକୁ ସ୍ନାନ କରିବା ପାଇଁ ଯାଇଥିଲୁ । ସେଠାରେ ନଦୀ ମଧ୍ୟରେ ସୁବର୍ଣ୍ଣ ପଦ୍ମକୁ ଦେଖି ଅନୁସରଣ କରିବାରୁ ଜଣେ ରୂପ, ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣା ଏକ ନାରୀକୁ ଦେଖିଲୁ । ତାହାଙ୍କ ରୂପ କାହା ସହ ତୁଳନୀୟ ନୁହେଁ । ସ୍ୱର୍ଗର ରମ୍ଭା ତାଙ୍କ ପାସଙ୍ଗରେ ପଡ଼ିବ ନାହିଁ । ସେ ବିହରିକରି ଚାହିଁଲେ ବିରାଟ ପର୍ବତ ମଧ୍ୟ ଟଳଟଳିବ । ତାଙ୍କ ଚକ୍ଷୁ ହରିଣ ଚକ୍ଷୁଠାରୁ ଆହୁରି ମନୋରମ । ଦୁଇ କାନରେ କୁଣ୍ଡଳ ଶୋଭାପାଉଛି । ଅଧରର ରଙ୍ଗ ଖୁବ୍ ଲାଲ୍ । ତାଙ୍କ

ରୂପ ଦର୍ଶନ କଲେ ତପସ୍ୱୀଙ୍କର ତପସ୍ୟା ଭଙ୍ଗିଯିବ । ତାଙ୍କର ସ୍ୱର କୋକିଳ ସ୍ୱରଠାରୁ ଶତଗୁଣ ମଧୁର । ସେ ପୁଣି ଅନ୍ଧାରକୁ ନିବାରଣ କରନ୍ତି । ସେ ଜ୍ୟୋତିର୍ମୟୀ । ତାଙ୍କର ପଣତ୍ୱର ଦେବାକୁ ଆମର ଭାଷା ନାହିଁ, ମହାରାଜ ! ତାଙ୍କର ଅଙ୍ଗୁଳିର ଜ୍ୟୋତି ଶତସୂର୍ଯ୍ୟ ପରି ଶୋଭା ପାଉଛି । ନଖଗୁଡ଼ିକ ସେବନ୍ତି ପାଖୁଡ଼ା ପରି । ତାଙ୍କ ନାଭିର ଉପମା ନାହିଁ । ସେହି ଅପରୂପ ସୌନ୍ଦର୍ଯ୍ୟର ପ୍ରଶଂସା ନାରୀକୁ ଶ୍ରୀକୃଷ୍ଣ ବନରେ ଯେ ସ୍ପର୍ଶ କରିବ—ତାଙ୍କୁ ସେ କ୍ଷମତାର ପ୍ରଶସ୍ତିମାନ ହେବ । ସୌନ୍ଦର୍ଯ୍ୟର ଗନ୍ତାଘର—ସେହି ନାରୀଙ୍କ ନିକଟରେ ସ୍ୱୟଂ କାମଦେବ ପରାଜୟ ବରଣ କରିବେ । ଏ ତିନି ଭୁବନରେ ତାଙ୍କ ସହ ସମକକ୍ଷ ହେବାପାଇଁ କେହି ନାହାନ୍ତି । ଓଲଟା କଦଳୀ ଗଛ ପରି ତାଙ୍କର ଜାନୁ ଯୁଗଳ । ଅଙ୍ଗୁଳିର ତଳଦେଶ ପଦ୍ମରାଗ ଠାରୁ ଅଧିକ । ଚମ୍ପା ଫୁଲର ପାଖୁଡ଼ା ପରି ନଖ । ତାଙ୍କର ଦୁଇ ତଳପା ପଦ୍ମ ଫୁଲପରି ଶୋଭା ପାଉଅଛି । ସେ ଚାଲିଲେ ପଦ୍ମ ଫୁଲ ପ୍ରସ୍ଫୁଟିତ ହୁଏ । ସେହି ନାରୀଙ୍କର ମୁହଁ ସହ ଚନ୍ଦ୍ର ତୁଳନୀୟ ହୋଇପାରିବ ନାହିଁ । ପୂର୍ଣ୍ଣିମୀ ଚନ୍ଦ୍ରରେ କଳଙ୍କ ଅଛି କିନ୍ତୁ ସେହି ଶୋଭାମୟୀ ନାରୀଙ୍କ ମୁହଁରେ କଳଙ୍କର ସ୍ପର୍ଶ ବି ନାହିଁ । ବାସ୍ତବିକ ଏହି କୁଞ୍ଚିତକେଶୀ ନିତମ୍ବିନୀ ନାରୀ, ତ୍ରିଲୋକ୍ୟମୋହିନୀ ରମ୍ଭା ଉର୍ବଶୀଙ୍କଠାରୁ ସହସ୍ର ଗୁଣରେ ସୁନ୍ଦର । ସେ ପୁଣି ଦୟାରସାଗର । ନାରୀ ଜଗତର ସର୍ବଶ୍ରେଷ୍ଠ ନାରୀ ସେ । ପ୍ରଜାପତିଙ୍କ ବହୁତ ତପସ୍ୟା ଓ ସାଧନାର ସେ ହେଉଛନ୍ତି ସାର୍ଥକ ଫଳ । ଏତେ ସୁନ୍ଦରୀ କରି ବ୍ରହ୍ମା ତାଙ୍କୁ ସୃଷ୍ଟି କରିଛନ୍ତି ଯେ ତାଙ୍କ ସମକକ୍ଷ ବର ଏ ପୃଥିବୀରେ ଜାତ ହୋଇ ନାହାନ୍ତି । ସବୁଠାରୁ ଆନନ୍ଦ ଓ ଖୁସିର କଥା ଏହି ସର୍ବଶ୍ରେଷ୍ଠ ସୁନ୍ଦରୀ ଆପଣଙ୍କ ସହ ସାକ୍ଷାତ କରିବାପାଇଁ ଇଚ୍ଛା ପ୍ରକଟ କରିଛନ୍ତି ବୋଲି ଚଣ୍ଡ ମୁଣ୍ଡ କହିଲେ । ଏହା ଶୁଣି କାମ ପ୍ରବଣ କପିଳ ସିଂହଙ୍କ ପୁତ୍ର ମହିଷାସୁର ଚଣ୍ଡ ମୁଣ୍ଡଙ୍କୁ କୋଳାଗ୍ରତ କଲେ । ଆନନ୍ଦିତ ହୋଇ ସେ ଆପଣାର ରତ୍ନ, ଅଳଙ୍କାର, ଆଭରଣମାନ ଚଣ୍ଡ ମୁଣ୍ଡଙ୍କୁ ଅର୍ପଣ କଲେ । ମହିଷାସୁର କହିଲେ—"ବାସ୍ତବିକ ତୁମ୍ଭେମାନେ ମୋ'ର ପ୍ରକୃତ ସୁହୃଦ । ତୁମ୍ଭମାନଙ୍କ ନିକଟରେ ମୁଁ କୃତଜ୍ଞ । ତୁମ୍ଭମାନଙ୍କ ଭଳି ବନ୍ଧୁ ଆଉ ମୁଁ ଜୀବନରେ ପାଇବି ନାହିଁ । ତୁମ୍ଭେମାନେ ଏପରି ରତ୍ନର ସନ୍ଧାନ ଆଣି ଦେଇଛ । ଆରେ ଚଣ୍ଡ ମୁଣ୍ଡ, ସେ ନାରୀରତ୍ନକୁ ମୋ ନିକଟକୁ ଆଣ—ନହେଲେ ମୋ'ର ପ୍ରାଣ ଚାଲିଯିବ ।

ଏହି ନିର୍ଦ୍ଦେଶପାଇ ଚଣ୍ଡ ମୁଣ୍ଡ କାଳବିଳମ୍ବ ନକରି ଲକ୍ଷେ ରଥ, ପାଞ୍ଚଲକ୍ଷ ହସ୍ତୀ, ଶହ ଶହ ସୈନ୍ୟ ଧରି ବିରାଟ ଶୋଭାଯାତ୍ରା କରି ଦୁର୍ଗାଙ୍କ ଅଭିମୁଖେ ଯାତ୍ରା କଲେ । ମହିଷାସୁର ସେନାପତି, ସୈନ୍ୟ ସାମନ୍ତଙ୍କୁ ପ୍ରେରଣ କରି ମହା ଆନନ୍ଦରେ ଆଶା ଓ ସ୍ୱପ୍ନରେ ବିଭୋର ହୋଇ ସେହି ଶୁଭ ସମୟର ପ୍ରତୀକ୍ଷାରେ ରହିଲେ । ରାଜ୍ୟରେ ମହିଷାସୁରଙ୍କ ନିର୍ଦ୍ଦେଶରେ ଉତ୍ସବାଦିର ଶୁଭାରମ୍ଭ ହେଲା । ସୁବର୍ଣ୍ଣ କଳସମାନ ରାଜ୍ୟର ଘରେ ଘରେ ଶୋଭା ପାଇଲା । ପତାକାମାନ ଗୃହେ ଗୃହେ ଉଡ଼ିଲା । ସୁନ୍ଦରୀ ମହିଳାମାନେ ଅର୍ଘ୍ୟ ଥାଳି ଧରି ପୂଜା ଅର୍ଚ୍ଚନା କଲେ । ନାରୀମାନେ ଚନ୍ଦନ ବିଭୂଷିତ ହେବା ସହ ଅନ୍ୟମାନଙ୍କୁ ପ୍ରଦାନ କଲେ । କର୍ପୂର ଗଗନରେ ଉଡ଼ିଲା । ଚନ୍ଦନ, କର୍ପୂରର ହୋରିଖେଳ ଚାଲିଲା । ରାଜଧାନୀ ମୋତି ମାଣିକ୍ୟରେ ଝଲସି ଉଠିଲା ।

ଲକ୍ଷ୍ମୀଭଦ୍ରା ନଦୀ ତୀରରେ କଣସୁ ପର୍ବତ । ସେହି ପର୍ବତ ନିକଟରେ ଦୁର୍ଗା ବିଜେ ହୋଇଛନ୍ତି । ଚଣ୍ଡ ମୁଣ୍ଡ ଦୁର୍ଗାଙ୍କୁ ସାକ୍ଷାତ କଲେ । ଦୁର୍ଗାଙ୍କ ସମ୍ମୁଖରେ ଅନେକ ଅଳଙ୍କାର ସସମ୍ମାନେ ଥୋଇ ଭକ୍ତିର ସହ ପ୍ରଣାମ କଲେ । ଚଣ୍ଡ ମୁଣ୍ଡ କହିଲେ—'ଆପଣଙ୍କ କହିବା ଅନୁସାରେ ଆମେ ନୃପତି ମହିଷାସୁରଙ୍କୁ ସବୁକଥା କହିଛୁ । ଆପଣଙ୍କ ଗୁଣ, ସୌନ୍ଦର୍ଯ୍ୟ କଥା ଶୁଣି ରାଜା ମହିଷାସୁର ଗଭୀର ଭାବେ ଆନନ୍ଦିତ ହୋଇଛନ୍ତି । ଆପଣଙ୍କ ସାନିଧ୍ୟ ପାଇବା ଆଶାରେ ତାଙ୍କର ସମସ୍ତ ପତ୍ନୀଙ୍କୁ ପରିତ୍ୟାଗ କରିଛନ୍ତି । ତେଣୁ କାଳ ବିଳମ୍ବ ନକରି ଏହି ଶୁଭ ବେଳାରେ ଆପଣ ମହିଷାସୁରଙ୍କୁ ଦର୍ଶନ କରି ଭାଗ୍ୟବତୀ ହୁଅ । —ଏହା ଫଳରେ ତୁମ ଭାଗ୍ୟର ଗତିପଥ ପରିବର୍ତ୍ତନ ହେବ । ସବୁ ଦୁଃଖର ପରିସମାପ୍ତି ଘଟିବ । ଏଣୁ ସୁ ପ୍ରସନ୍ନେ ସୁସଜ୍ଜିତ ହାଦୋଳାରେ ବସନ୍ତୁ । ତୁମେ ଜନ୍ମେ ଜନ୍ମେ ମହାବୀର ପ୍ରତାପଶାଳୀ ମହିଷାସୁରର ପତ୍ନୀ ହୁଅ—ଆମେ ଏହା କାମନା କରୁଛୁ ।'

ମହାମାୟୀ ଦୁର୍ଗା ପ୍ରତ୍ୟୁତ୍ତରରେ କହିଲେ—'ହେ ଚଣ୍ଡ ମୁଣ୍ଡ, କାହିଁକି ବୃଥାରେ ତୁମ୍ଭେମାନେ ଏଠାରେ ଗର୍ଜନ କରୁଛ । ତୁମ୍ଭେମାନେ ମହିଷାସୁର ନିକଟକୁ ଫେରିଯାଅ । ତୁମର କଥାକୁ ମୋର ବିଶ୍ୱାସ

ପାଉନାହିଁ । ବୀରର କର୍ତ୍ତବ୍ୟ ବୀର ସମ୍ପାଦନ କରୁ । ମହିଷାସୁର ରାଜା, ଶକ୍ତିଶାଳୀ ବୀର । ସେ ନିଜେ ଆସି ମୋତେ ଏଠାରୁ ନେଇଯାଆନ୍ତୁ । ରାଜା ସହ ମିଳିତ ହୋଇ ମୁଁ ଏଠାରୁ ରାଜ୍ୟକୁ ଯିବି । ମହିଷାସୁର ଏଠାକୁ ଆସିଲେ ମୋର ତାଙ୍କସହ ଶୁଭଚକ୍ଷୁ ହେଲେ ପ୍ରୀତି ସୃଷ୍ଟି ହେବ । ତାଙ୍କର ମୋର ଏହି ଅଭିନବ ପ୍ରେମ କାଳ କାଳକୁ ଝଲସୁଥିବ । ମୁଁ ତ ସହଜେ, ସ୍ୱଭାବରେ ନାରୀ । ଫୁଲ ନିକଟକୁ ଭ୍ରମର ଆସିଲା ପରି ନାରୀ ନିକଟକୁ ପୁରୁଷ ଆସିବା—ପୁରୁଷର ଧର୍ମ । ପୁରୁଷର ଧର୍ମ ସେ ପାଳନ କରନ୍ତୁ । ନାରୀ ଭାବି ତୁମେମାନେ ମୋ' ସହିତ ପ୍ରତାରଣା ଛଳନା କରୁଛ—

ତୁମ କଥାରେ ମୋର ବିଶ୍ୱାସ ହେଉନାହିଁ । ତୁମେମାନେ ଏଠାରୁ ଶୀଘ୍ର ଯାଇ ରାଜା ମହିଷାସୁରଙ୍କୁ ସାକ୍ଷାତ କରି ମୋ' ପାଖକୁ ଆସିବା ପାଇଁ କହ ।'

ଏହି ବାର୍ତ୍ତା ଦେବା ପାଇଁ ଚଣ୍ଡ ମୁଣ୍ଡ ମହିଷାସୁର ନିକଟକୁ ପ୍ରତ୍ୟାବର୍ତ୍ତନ କଲେ ।

# ମହାକାଳର ଗତି

ଶ୍ରୀ ଗଣେଶ ପ୍ରସାଦ ପଣ୍ଡା

ଆସ୍ଥାନ ଉପରେ ବିଜେ କରିଥାନ୍ତି ଦୈତ୍ୟରାଜ ଶୁମ୍ଭ । ତାଙ୍କ ନିକଟରେ ବସିଥାନ୍ତି ଅନୁଜ ନିଶୁମ୍ଭ । ହଠାତ୍ ଧଇଁସଇଁ ହୋଇ ତାଙ୍କ ଗୁପ୍ତ ସମ୍ବାଦଦାତା ମନୋହର ଆସି ପହଞ୍ଚିଲା । ସ୍ୱତଃ ସମସ୍ତଙ୍କ ଦୃଷ୍ଟି ପଡ଼ିଲା ତା' ଉପରେ । ସେ ଶୁମ୍ଭ ଏବଂ ନିଶୁମ୍ଭଙ୍କୁ ନମସ୍କାର କରି କହିଲା, ମହିମା ମହିଷାସୁର ଯୁଦ୍ଧ କରିବାକୁ ଆସିଛି ।

'ମହିଷାସୁର'—ତା'ର ତ କମ୍ ସାହସ ନୁହେଁ । ସେ କ'ଣ ଜାଣି ନାହିଁ ଆମ୍ଭେ ବ୍ରହ୍ମାଙ୍କ ବରରେ ବଳୀୟାନ ? ଇଚ୍ଛାକଲେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଆମ୍ଭେ ଜୟ କରିପାରୁ—ସେ କ'ଣ ବୋଲି ଆମ୍ଭଙ୍କୁ ଭାବୁଛି ?

କରପତ୍ର ଯୋଡ଼ି ମନ୍ତ୍ରୀ କହିଲେ, ମହିଷାସୁର ସିଂହଳର ରାଜା । ଦେହଟା ତା'ର ମହିଷଙ୍କ ଭଳି ହେଲେ କ'ଣ ହେବ, ମୁଣ୍ଡଟା ତା'ର ମଣିଷ ଭଳି । ସେ ମଧ୍ୟ ବ୍ରହ୍ମାଙ୍କ ବରରେ ବଳୀୟାନ । ତାମ୍ରମାଳୀ, ଚାମରବେମାଳ, ରକ୍ତବୀର୍ଯ୍ୟ, ବିଡ଼ାଳାକ୍ଷ ଆଦି ମହା ମହା ବୀରମାନେ ତା'ର ସେନାପତି । ତାଙ୍କ ବଳରେ ସେ ଏ ଧରାରେ କାହାରିକୁ ଖାତିର୍ କରେ ନାହିଁ । ପଦ୍ମନାଭ ଭଳି ପ୍ରତାପୀ ରାଜା ତା'ର ବଶ୍ୟତା ସ୍ୱୀକାର କଲେ ନାହିଁ । ତେଣୁ ତା' ରାଜ୍ୟକୁ ମହିଷାସୁର ଧ୍ୱସ୍ତ ବିଧ୍ୱସ୍ତ କରିଦେଲା । ତେଣୁ ବର୍ତ୍ତମାନ କ'ଣ କରାଯିବ ସେ ବିଷୟରେ ବିଚାର କରିବାର ସମୟ ଆସିଛି ।

ଗମ୍ଭୀର ହୋଇ ଶୁମ୍ଭାସୁର କହିଲା, ଶୀଘ୍ର ଆମର ସମଦଣ୍ଡ ସାଜ। ମଇଁଷି ପଣ୍ଡାଟାଏ ମୋ' ରାଜ୍ୟରେ ଆସି ଉତ୍ପାତ କରିବ, ମୁଁ ତାକୁ ସହ୍ୟ କରିବି ?

ଆଦେଶ ମାତ୍ରେ ସୈନ୍ୟ ସେନାପତି ପ୍ରସ୍ତୁତ ହୋଇଗଲେ। ରଥୀ ପଦାତିକଙ୍କ ପଦଭରରେ ପୃଥିବୀ କମ୍ପି ଉଠିଲା। ବାଜିଉଠିଲା ବଜ୍ରଘୋଷ, ଦାଉଣ୍ଡି। ବାଦ୍ୟର ତାଳେ ତାଳେ ସୈନ୍ୟମାନେ ପାଦ ପକାଇ ଆଗେଇ ଗଲାବେଳେ ସେମାନେ ଶୁମ୍ଭ ନିଶୁମ୍ଭଙ୍କ ଜୟଧ୍ୱନି ଦେଇ ଆଗେଇ ଯାଉଥିଲେ। କେତେକ ଯୁଦ୍ଧଖୋର ସୈନ୍ୟ କୁରୁଳି ଉଠୁଥିଲେ ଆନନ୍ଦରେ।

ମହିଷାସୁରର କାଳ ବିକାଳ ନାମରେ ଦୁଇଟି ଚରର ଥିଲେ। ସେମାନେ ବହୁଦୂରରୁ ଦେଖି ପାରିଲେ ଶୁମ୍ଭ ନିଶୁମ୍ଭଙ୍କ ବିରାଟ ବାହିନୀକୁ। ସଙ୍ଗେ ସଙ୍ଗେ ସେ ଦୁହେଁ ଧାଇଁ ଯାଇ' ମହିଷାସୁରକୁ କହିଲେ, ବୀରାଧି-ବୀରବର ପ୍ରତାପୀ ମହିଷାସୁର ନୃପତି ଶୁଣିବା ହେଉ—ଶୁମ୍ଭ ନିଶୁମ୍ଭ ଆପଣଙ୍କ ବଶ୍ୟତା ସ୍ୱୀକାର କରିବାକୁ ରାଜିହେଲେ ନାହିଁ। ସେମାନଙ୍କ ସୈନ୍ୟ ଆପଣଙ୍କ ସେନାବାହିନୀର ସମ୍ମୁଖୀନ ହେବାକୁ ଧାଇଁ ଆସୁଛନ୍ତି।

କାଳ ବିକାଳଙ୍କଠାରୁ ସମ୍ବାଦ ଶୁଣି' ଶୁଣୁ ଚମକି ଉଠିଲା ମହିଷାସୁର। କ'ଣ ହେଲା, ମୋ' ସହିତ ଯୁଦ୍ଧ କରିବେ ଦୁଇଟା ଅପଗଣ୍ଡ ବାଳକ ? ଆରେ ଚାମରବେମାଳ। ଆରେ କାଳମାଳା, ବିଡ଼ୋଳାକ୍ଷ ! ଧାଅଁ ଧାଅଁ—ଅଧବାଟରୁ ତାଙ୍କୁ କାବୁ କରିପକାଅ।

ରାଜାଙ୍କର ଆଦେଶ ପାଇ ଚାମରବେମାଳ, କାଳମାଳା, ବିଡ଼ୋଳାକ୍ଷାଦି ସେନାପତିମାନେ ନିଜ ନିଜର ସୈନ୍ୟ ଧରି ଧାଇଁଲେ। ଶୁମ୍ଭାସୁରର ବୀରଦଣ୍ଡ ବୋଲି ଜଣେ ସେନାପତି। ସେ କ୍ରୋଧଭରେ ପାଦ ପକାଇଲା ମାତ୍ରେ, ପ୍ରତି ପଦକ୍ଷେପରେ ଘଣ୍ଟା ବାଜି ଉଠେ। ସେ ତା'ର ସୈନ୍ୟବଳ ଧରି ଧାଇଁଲା ମାତ୍ରେ ଯୁଦ୍ଧସ୍ଥଳ ଘଣ୍ଟା ଧ୍ୱନିରେ ପୂରିଗଲା।

ମହିଷାସୁରର ଯେଉଁଭଳି ବଳଶାଳୀ ଓ କୌଶଳୀ ସେନାପତିମାନ ରହିଛନ୍ତି ଶୁମ୍ଭ-ନିଶୁମ୍ଭଙ୍କର ମଧ୍ୟ ସେହିଭଳି ବୀରମାନେ ସେନାପତି ଭାବେ

ସୈନ୍ୟ ପରିଚାଳନା କରନ୍ତି । ଫଳରେ ଉଭୟ ବାହିନୀର ସେନା ସେନାପତି ମାନେ କେହି କାହାକୁ କମ୍ ନୁହନ୍ତି । ଉଭୟ ବଳ ଖଡ୍‌ଗ, କୁନ୍ତ, ନାରାଚ, ଅସିପତ୍ର ଧରି ବାହାଡ଼ୋଟ ମାରି ପରସ୍ପରକୁ ଆକ୍ରମଣ କରିବାକୁ ଧାଇଁଲେ ।

ନିଶୁମ୍ଭ ତାଙ୍କ ସେନାପତିମାନଙ୍କୁ ଡାକି କହିଲେ, ଦେଖ—ଆମେ ଆକ୍ରମଣକାରୀ ନୋହୁଁ । ସେମାନେ ହେଉଛନ୍ତି ଆକ୍ରମଣକାରୀ । ଆମେ ଧର୍ମକୁ ଲଂଘିବା କାହିଁକି ? ସେମାନେ ପ୍ରଥମେ ଆକ୍ରମଣ କଲେ ଆମେ ନିଜକୁ ରକ୍ଷା କରିବା ବା ପ୍ରତିଆକ୍ରମଣ କରିବା । ତେଣୁ ସମସ୍ତେ ପ୍ରସ୍ତୁତ ହୋଇ ଛିଡ଼ାହୋଇ ରହ । ସେମାନେ ଆକ୍ରମଣ ନ କରିବା ପର୍ଯ୍ୟନ୍ତ ଆମେ ଆମଆଡ଼ୁ କିଛି କରିବା ନାହିଁ ।

ମାଡ଼ି ଆସୁଥିବା ଶୁମ୍ଭ ନିଶୁମ୍ଭଙ୍କ ସୈନ୍ୟ ହଠାତ୍ ଛିଡ଼ା ହୋଇଯିବା ଦେଖି କାନ୍ତିମାଳା ଆଶ୍ଚର୍ଯ୍ୟ ହୋଇଗଲା । ସେ ମନେକଲା ଆମ ସୈନ୍ୟବଳ ଦେଖି କଣ ଶୁମ୍ଭ ଡରିଗଲା କି ? ସେମାନେ ଯୁଦ୍ଧ ନ କରି ବଶ୍ୟତା ସ୍ୱୀକାର କରିବେ କି ?

କିଛି ସମୟ ପାଇଁ ଦୁଇପକ୍ଷ ମୁହାଁମୁହିଁ ହୋଇ ରହିଲେ । ଯେତେବେଳେ ଶୁମ୍ଭଙ୍କ ତରଫରୁ କୌଣସି କ୍ରିୟା ବା ପ୍ରତିକ୍ରିୟା ପ୍ରକାଶ ପାଇଲା ନାହିଁ—ସେତେବେଳେ ନିଜେ ମହିଷାସୁର ଆଦେଶ ଦେଲେ ଆକ୍ରମଣ କର । ଦିଗ୍‌ବିଜୟ ପାଇଁ ଆମେ ଯେତେବେଳେ ଆସିଛୁ ସେତେ-ବେଳେ ଅପେକ୍ଷା କରିବା କି ବା ଆବଶ୍ୟକ । ଯାଅ, ଆଗେଇ ଯାଅ—ଆଉ ଡେରି କରନାହିଁ ।

ମହିଷାସୁରର ଦୁଇ ପାର୍ଶ୍ୱରେ ଚଣ୍ଡ ମୁଣ୍ଡ ଦୁଇଭାଇ ଥିଲେ । ସେମାନେ ଶିବଙ୍କ ବରରେ ବଳସ୍ଥାନ । ସେମାନେ ଧାଇଁଗଲେ ଶୁମ୍ଭ ନିଶୁମ୍ଭଙ୍କ ଆଡ଼ୁ ଆଗକୁ । ପ୍ରଥମେ ସେମାନେ ଆକ୍ରମଣ କରନ୍ତେ ଗର୍ଜି ଉଠିଲେ ଶୁମ୍ଭର ସୈନ୍ୟମାନେ । ଲାଗିଗଲା ଉଭୟଙ୍କ ମଧ୍ୟରେ ଯୁଦ୍ଧ । ଗଦା ମୁଦ୍‌ଗର, ଚକ୍ରଧରି ଉଭୟଙ୍କୁ ଆକ୍ରମଣ କଲେ ।

ଶୁମ୍ଭ ନିଶୁମ୍ଭଙ୍କର ଦୁଇ ସେନାପତି ବଜ୍ରଅଙ୍ଗ ଓ ବୀରଦଣ୍ଡ ମହିଷାର ସେନାପତି ଗୃମରବେମାଳଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲେ । ବୀରଦଣ୍ଡ

ଲୁହାର ଗଦାଧର ମହିଷାସୁର ସୈନ୍ୟଙ୍କ ମଧ୍ୟରେ ପଶିଗଲା । ସେ ଗଦା ପ୍ରହାର କରି ମାରିପକାଇଲା ବହୁ ସୈନ୍ୟଙ୍କୁ । ଶିବଙ୍କ ବରରେ ସେ ବଳୀୟାନ । ତେଣୁ ତାକୁ ଯେ ଯେତେ ଅସ୍ତ୍ର ପ୍ରହାର କଲେ ତା'ର କଷ୍ଟ ହୁଏ ନାହିଁ । ମହିଷାସୁରର ସେନାପତି ରକ୍ତବୀର୍ଯ୍ୟ ଓ ଧୂମ୍ରବେମାଳ ବୀରଘଣ୍ଟର ଆଗକୁ ଚାଲି ଆସିଲେ । ରକ୍ତବୀର୍ଯ୍ୟ ଲକ୍ଷେ ଶର ବୀରଘଣ୍ଟକୁ ଲକ୍ଷ୍ୟକରି ମାରିଲା । ଆଶ୍ଚର୍ଯ୍ୟର କଥା, ବୀରଘଣ୍ଟ ଦେହରେ ବାଜି ସେ ସବୁ ଖସି ପଡ଼ିଲା । ଏହାଦ୍ୱାରା ରାଗିଗଲା ବୀରଘଣ୍ଟ । ତାକୁ ରମ୍ୟକ ନାମରେ ଭୃଗୁ ଗୋଟିଏ ଅସ୍ତ୍ର ଦେଇଥିଲେ । ସେହି ଅସ୍ତ୍ରକୁ ସେ ମହିଷାସୁରର ସୈନ୍ୟ ଉପରକୁ ମାରିଲା । ସେହି ଗୋଟିଏ ଶରରେ ବହୁ ସୈନ୍ୟ ମହିଷାର ମରିଗଲେ । କାନ୍ତମାଳା ସହିତ ବଜ୍ରଘଣ୍ଟର ଘୋରତର ସମର ହେଲା । ମାତ୍ର କେହି କାହାକୁ ଯୁଦ୍ଧରେ ପରାସ୍ତ କରିପାରିଲେ ନାହିଁ । କାହିଁକି ନା ଦୁହେଁ ଦେବତାଙ୍କ ବରରେ ଏଭଳି ବଳବାନ ହୋଇଥାନ୍ତି ଯେ ତାଙ୍କୁ ପରାସ୍ତ କରିବା ସହଜସାଧ୍ୟ ନୁହେଁ । ଶେଷରେ ଶୁମ୍ଭ ନିଶୁମ୍ଭଙ୍କ ସୈନ୍ୟମାନେ ଗଳଗାଜି ଉଠିଲେ । ମହିଷାସୁର ସୈନ୍ୟମାନେ ସେମାନଙ୍କ ସମ୍ମୁଖିନ ହୋଇ ନ ପାରି ଛତ୍ରଭଙ୍ଗ ଦେଲେ ।

ସେତେବେଳକୁ ସନ୍ଧ୍ୟା ନଇଁ ଆସୁଥାଏ । ସୂର୍ଯ୍ୟ ବୁଡ଼ି ଯାଉଥାନ୍ତି ପଶ୍ଚିମ ଆକାଶର ନିମ୍ନରେ । ମହିଷାସୁର ଓ ତା'ର ସୈନ୍ୟ ସେନାପତିମାନେ ବିଷର୍ଣ୍ଣ ମନରେ ବିନ୍ଧ୍ୟାଚଳରେ ଅବସ୍ଥାନ କଲେ । ଶୁମ୍ଭ ନିଶୁମ୍ଭ ଓ ତାଙ୍କ ସୈନ୍ୟ ସେନାପତି କୁଳବିଶପାଟଣାରେ ରହିଲେ ।

ମହିଷାସୁର ଶୁଣିଛି ବ୍ରହ୍ମା ଶୁମ୍ଭ ନିଶୁମ୍ଭଙ୍କୁ ଅମର ବର ଦେଇଛନ୍ତି । ସେ ମଧ୍ୟ ଧାତାଙ୍କଠାରୁ ସେହିଭଳି ବର ପାଇଛି । ଅବଶ୍ୟ ବିଧାତା ତାଙ୍କୁ କହିଛନ୍ତି ଏ ମର୍ତ୍ତ୍ୟ ମଣ୍ଡଳରେ ଦେବତା ଆସି ଜନ୍ମ ହେଲେ ମଧ୍ୟ ମୃତ୍ୟୁ ଅବଶ୍ୟ ହେବ । କିନ୍ତୁ ସେ ମୃତ୍ୟୁ ଦିବସରେ ହେବନାହିଁ ' କିମ୍ବା ରାତିର ହେବ ନାହିଁ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କିମ୍ବା ଅନ୍ୟ କୌଣସି ଦେବତା ତାକୁ ମାରିପାରିବେ ନାହିଁ । ଯେ ତାକୁ ମାରିବ ସେ ପୁରୁଷ ହୋଇ ନଥିବ—ସେ ହୋଇଥିବ ନାରୀ । ପୁଣି ସେହି ନାରୀ ତା' ସମ୍ମୁଖରେ ଉଲଗ୍ନ ହୋଇ ଯୌବନ ତାକୁ ଦର୍ଶାଉଥିବ । ଏଭଳି କେହି ନାରୀ

ବିଶ୍ୱରେ ଜନ୍ମ ହୋଇଛି ନା ହେବ, ଯେ କି ନବଲକ୍ଷ୍ମୀ ଭଳିବ ଗୋଟାଏ ଜନ୍ମିତ ପୁରୁଷକୁ ତା'ର ଜାନୁ, ଯୌବନ ଦର୍ଶାଇବ ? ଅସମ୍ଭବ—ସମ୍ପୂର୍ଣ୍ଣ ଅସମ୍ଭବ । ତେଣୁ ତା'ର ମୃତ୍ୟୁ ମଧ୍ୟ ସମ୍ଭବ ନୁହେଁ ।

ମହିଷାସୁରର ଅନ୍ଧକ ବୋଲି ଏକ ମନ୍ତ୍ରୀ ଅଛି । ଯାହା ମଣିଷ ଆଖିକୁ ଦେଖା ନ ଯାଏ ତାହା ସେ ତା'ର ମନ ଆଖିରେ ଦେଖିପାରେ । ଯୁଦ୍ଧରୁ ବିଫଳ ମନୋରଥ ହୋଇ ଫେରିଆସି ମହିଷାସୁର ତାକୁ ପଚାରିଥିଲା ଶୁମ୍ଭ ନିଶୁମ୍ଭଙ୍କୁ ବ୍ରହ୍ମା ଅମର ବର ଦେଇଥିବା କଥା ମୁଁ ଶୁଣୁଛି—ତାହା କ'ଣ ସତ୍ୟ ? ଅନ୍ଧକ କହିଲା, ଏ ବିଶ୍ୱରେ କେହି ଅମର ହୋଇ ପାରେନା ତଥାପି ବ୍ରହ୍ମା ତାଙ୍କୁ ଅମର ବର ଦେଇଛନ୍ତି । ମୁଁ ସ୍ପଷ୍ଟ ଦେଖି ପାରୁଛି, ମହାସିନ୍ଧୁର ପଶ୍ଚିମ କୂଳରେ ଶୁମ୍ଭ ନିଶୁମ୍ଭ ତପସ୍ୟାରତ । ସେ ତପସ୍ୟା କଲାବେଳେ କେବଳ ଲୌହଚୂର୍ଣ୍ଣ ଭକ୍ଷଣ କରୁଥିଲେ । ସହସ୍ର ବର୍ଷ ଗତ ହୋଇଗଲା । ସେ କୁହନ୍ତି ଜୀବନ ଧାରଣ ପାଇଁ ଲୌହଚୂର୍ଣ୍ଣ ଛଡ଼ା ଆଉ କିଛି ଖାଇ ନ ଥିଲେ । ସେହି ଚନ୍ଦ୍ରଭାଗା ନଦୀ କୂଳରେ ହଜାରେ ବର୍ଷ ବସି ତପସ୍ୟା କଲାପରେ ବ୍ରହ୍ମା ତାଙ୍କ ପାଖକୁ ଆସି ବର ଯାଚିଲେ । ମାତ୍ର ତାଙ୍କୁ ଶୁମ୍ଭ ନିଶୁମ୍ଭ ଚିହ୍ନି ପାରିଲେ ନାହିଁ ।

କ'ଣ କହୁଛ ତୁମେ ମନ୍ତ୍ରୀ ! ପିତାମହ ବର ଦେବାକୁ ତାଙ୍କ ପାଖରେ ପହଞ୍ଚିଲେ, ଅଥଚ ହଜାରେ ବର୍ଷ ତପସ୍ୟା କଲାପରେ ତାଙ୍କୁ ସେମାନେ ଚିହ୍ନିପାରିଲେ ନାହିଁ ? ମହିଷାସୁର ପଚାରିଲା ।

ଅନ୍ଧକ ମନ୍ତ୍ରୀ କହିଲେ, ପିତାମହ ସାଧାରଣ ଲୋକ ବେଶରେ ଆସିଥିଲେ । ତେଣୁ ଶୁମ୍ଭ ନିଶମ୍ଭ ତାଙ୍କୁ ଚିହ୍ନି ପାରିଲେ ନାହିଁ । କହିଲେ ତୁମେ କିଏ, ଆମର ହଜାର ବର୍ଷର ତପସ୍ୟାକୁ ପଣ୍ଡ କରିଦେଲ ? ଜାଣିଛ ଆମେ ତୁମର କ'ଣ କରିବୁ ? ପିତାମହ କହିଲେ, ବତ୍ସ ! ମୁଁ ଆଉ କେହି ନୁହେଁ, ତୁମେ ଯାହାଙ୍କୁ ହଜାର ବର୍ଷ ହେଲା ଆରାଧନା କରୁଛ ମୁଁ ସେହି ଦେବ ବ୍ରହ୍ମା ।

ଦେବ ବ୍ରହ୍ମା ? ଦେବ ବ୍ରହ୍ମା ଏଭଳି ସାଧାରଣ ମଣିଷ ବେଶରେ କାହିଁକି ? ଯେ ସୃଷ୍ଟିର କର୍ତ୍ତା ସେ ଛଦ୍ମବେଶରେ ତା'ର ଭକ୍ତ, ସନ୍ତାନ ପାଖକୁ ଆସିବା କଥାକୁ କିଏ ବିଶ୍ୱାସ କରିବ ?

ମଣିଷର ବିଶ୍ୱାସ ହେଉଛି ମୂଳ । ବିଶ୍ୱାସ ହେଲେ ମାଟି ପଥର ବି ଭଗବାନ ପାଲଟି ଯା'ନ୍ତି । ମଣିଷ ସରଳ ହେଲେ ତା' ହୃଦୟ ନିର୍ମଳ ହୋଇଥାଏ । ନିର୍ମଳ ଦର୍ପଣରେ ପ୍ରତିବିମ୍ବ ଯେଉଁଭଳି ସ୍ପଷ୍ଟ ହୁଏ, ସେହିଭଳି ହୃଦୟ ନିର୍ମଳ ହେଲେ ଭଗବାନଙ୍କ ପ୍ରତିବିମ୍ବ ତା' ମଧ୍ୟରେ ଝଲସି ଉଠେ । ସେଥିପାଇଁ ଋଷି ମୁନିମାନେ ହୃଦୟ ନିର୍ମଳ ପାଇଁ ତପସ୍ୟା କରିଥାନ୍ତି । ମୁଁ ଜାଣିଛି ତୁମେ ତୁମ ହୃଦୟକୁ ନିର୍ମଳ କରିନାହଁ । କିନ୍ତୁ ହଜାର ବର୍ଷ ଧରି ତୁମେ ଯେଉଁ ତପସ୍ୟା ଏକନିଷ୍ଠ ହୋଇ କରିଛ, ତା'ର ଫଳ ଦେବାକୁ ମୁଁ ଆସିଛି । ତୁମର ଯଦି ବିଶ୍ୱାସ ହେଉ ନାହିଁ ମୁଁ ସ୍ୱୟଂ ବ୍ରହ୍ମା ବୋଲି ତେବେ ହେଇ ଦେଖ ମୋର ପ୍ରକୃତ ସ୍ୱରୂପ ।

ଶୁମ୍ଭ ନିଶୁମ୍ଭ ଦର୍ଶନ କଲେ ଦେବ ବ୍ରହ୍ମାଙ୍କୁ । ଚତୁର୍ବଦନରେ ଚାରିବେଦ ସେ ପାଠ କରୁଛନ୍ତି—କାନରେ ତାଙ୍କର ସୁବର୍ଣ୍ଣ ପଇତା । ତାଙ୍କର ଚଉଭୁଜ ଭୁଜରେ, କମଣ୍ଡଳୁ ଏବଂ ଅକ୍ଷମାଳ ରହିଛି ।

ବ୍ରହ୍ମାଙ୍କର ନିଜ ରୂପ ଦର୍ଶନ କରି ଶୁମ୍ଭ ନିଶୁମ୍ଭ ହାତଯୋଡ଼ି ନମସ୍କାର କଲେ । କହିଲେ, ପିତା ଆପଣ ଯଦି ପ୍ରକୃତ ବରଦେବେ ତେବେ ପ୍ରଥମେ ସତ୍ୟ କରନ୍ତୁ—ତା' ନ ହେଲେ ଆପଣ ନିଜ ପୁରକୁ ବାହୁଡ଼ି ଯା'ନ୍ତୁ । ଆମେ ପୁଣି ତପସ୍ୟା କରିବୁ । ଏହିଭଳି ଯଦି ସମସ୍ତ ଜୀବନ ଚାଲିଯାଏ ତପସ୍ୟାରେ ତେବେ ବି ଦୁଃଖ କରିବୁ ନାହିଁ । କାହିଁକି ନା ଜୀବନରେ ଧୈର୍ଯ୍ୟ ହେଉଛି ବଡ଼ କଥା । ଧୈର୍ଯ୍ୟ ଥିଲେ ସବୁ କିଛି କରିହେବ । ଯାହାର ଧୈର୍ଯ୍ୟ ନାହିଁ ସେ ଜୀବନରେ ସଫଳକାମ ହେବା ସହଜ ନୁହେଁ ।

ବ୍ରହ୍ମା ମୁହଁରେ ହସ ଫୁଟେଇ କହିଲେ, ଏତେ ଟୀକା ଟିପ୍ପଣୀ ଦେବା ଆବଶ୍ୟକ ନାହିଁ । ମୁଁ ସତ୍ୟ କରୁଛି ତୁମେ ଯାହା ମାଗିବ ମୁଁ ତାହା ଦେବି ।

ଶୁମ୍ଭ କହିଲା, ପିତା କପଟ କଲେ ଆମଠାରେ । କମଣ୍ଡଳରୁ ପାଣି ଢାଳି ସତ୍ୟ କରନ୍ତୁ ।

ବ୍ରହ୍ମା କମଣ୍ଡଳୁରୁ ପାଣି ଦେଇ ସତ୍ୟକରି କହିଲେ, ସତ୍ୟ-ସତ୍ୟ-ସତ୍ୟ, ମୁଁ ତିନିବାର ସତ୍ୟକରି କହୁଛି ତୁମେ ଯାହା ମାଗିବ ତାହା ମୁଁ ଦେବି ।

ଯୁଗ ଯୁଗ ଧରି ଅନନ୍ତ କାଳ ପର୍ଯ୍ୟନ୍ତ ଆମର ଏ ଶରୀର ଥିବ । ଏ ଦେହରେ ପ୍ରାଣ ଥିବା ପର୍ଯ୍ୟନ୍ତ ଅସୀମ ସାହସ ଓ ବଳ ରହିଥିବ । କୋଟି କଳ୍ପ ଯୁଗ ପର୍ଯ୍ୟନ୍ତ ଆମେ ବଞ୍ଚିରହି ଏ ଧରାକୁ ଶାସନ କରିବୁ । କେହି ଆମକୁ ଯୁଦ୍ଧରେ ଜୟ କରିପାରିବେ ନାହିଁ ।

ତଥାସ୍ତୁ ! ତୁମ ଇଚ୍ଛାମତ ବର ତୁମକୁ ପ୍ରାପ୍ତ ହେଉ ।

ଅସୁର ଦୁହେଁ, ବର ଗ୍ରହଣ କରି ନମସ୍କାର କଲେ । ତା'ପରେ ବ୍ରହ୍ମା ଅନ୍ତର୍ଦ୍ଧାନ ହୋଇଗଲେ ସେଠାରୁ । ସେ ଦୁହେଁ ପ୍ରଣାମ କରି ଦେଖନ୍ତି ବ୍ରହ୍ମା ଶୂନ୍ୟ ହୋଇ ଯାଇଛନ୍ତି । ତେଣୁ ମନ ଖୁସିରେ ଦୁହେଁ ନିଜ ରାଜ୍ୟକୁ ବାହୁଡ଼ିଲେ ।

ଆସୁ ଆସୁ ସେମାନେ ଦେଖିଲେ ଗୋଟିଏ ଲୋକ ରାସ୍ତା କଡ଼ରେ ପଡ଼ି ଧକେଇଛି । ଭଲଭାବେ ନିଃଶ୍ୱାସ ନେଇପାରୁ ନାହିଁ । ତାକୁ ଦେଖିଲେ ଜଣା ଯାଉଥାଏ ସେ ଯେପରି ଦୀର୍ଘଦିନ ଧରି ବେମାର ପଡ଼ି ଶୀର୍ଣ୍ଣ ଦେହ ହୋଇଗଲାଣି । ଦୁଇଭାଇ ସେ ଲୋକଟି ପାଖକୁ ଗଲେ । ତାକୁ କେତେଥର ଡାକିଲେ । ମାତ୍ର କିଛି ଉତ୍ତର ନାହିଁ । ତାହାହେଲେ ଲୋକଟି କ'ଣ ମରିଯିବା ଅବସ୍ଥାରେ ? ନିକଟରେ ଗୋଟିଏ ଜଳାଶୟରୁ କିଛି ପାଣିଆଣି ସେମାନେ ସେହି ଲୋକଟି ଉପରେ ଛିଞ୍ଚିଲେ । ତା'ପରେ ଶାଳପତ୍ରରେ ତାକୁ ବିଞ୍ଚିବାକୁ ଲାଗିଲେ । ଟିକିଏ ଥଣ୍ଡା ପବନ ଲାଗିବାରୁ ଲୋକଟି ଆଖି ଖୋଲିଲା । ଦୁଇଭାଇ ତାକୁ ବଡ଼ପାଟିରେ ପଚାରିଲେ, ତୁମେ କିଏ ? ଏଠି କାହିଁକି ପଡ଼ିଛ ?

ପ୍ରଥମେ ଲୋକଟି କିଛି କହିପାରିଲା ନାହିଁ । ଅଳ୍ପ ସମୟ ପରେ ଥରିଥରି କହିଲା ମୋତେ ଟିକିଏ ଧରି ଉଠାଅ । ମୋର ବଳ ପାଉନାହିଁ ଉଠି ବସିବାକୁ ।

ଅନନ୍ତ ଶକ୍ତିର ଅଧିକାରୀ ହେବାପାଇଁ ଯେ ବର ପାଇଛନ୍ତି, ତାଙ୍କ ପକ୍ଷରେ ଅସ୍ଥିକଙ୍କାଳ ସାର ଜୀର୍ଣ୍ଣ ଶୀର୍ଣ୍ଣ ଶରୀରଟାକୁ ଉଠାଇବାରେ ଅସୁବିଧା କ'ଣ ? ଏକା ନିଶୁମ୍ଭ ତା'ର ବାମ ହାତରେ ଲୋକଟିର ବେକ ତଳକୁ ଧରି ଉଠାଇଲା । ଏ କ'ଣ ଲୋକଟା ଅସମ୍ଭବ ଭାରି ହୋଇଛି ।

ମାଂସ କେଇଖଣ୍ଡ ହାଡ଼ ଉପରେ ପତଳା ଚମ ଲାଗିଥିବା ଲୋକଟି ଏତେ ଓଜନ ? ସେ ତା'ର ଡାହାଣ ହାତଟି ପିଠିତଳେ ଲଗାଇ ଟେକିବାକୁ ଚେଷ୍ଟା କଲା । ନା—ମୋଟେ ଦେହଟି ହାଲୁ ନାହିଁ । ତେଣୁ ସେ ଶୁମ୍ଭକୁ ଡାକି କହିଲା, ଭାଇ ଦେଖିଲ, ଲୋକଟା ଏତେ ଓଜନ କାହିଁକି ଲାଗୁଛି ? ତାକୁ ଦୁଇହାତରେ ଉଠାଇଲେ ବି ଟେକି ହେଉନାହିଁ ।

ଶୁମ୍ଭ ଲମ୍ବାଇଦେଲା ତା'ର ଦୁଇହାତ । ଆରେ ସତେତ ଲୋକଟାକୁ ମୋଟେ ଟିକ୍କୁ ଟେକି ହେଉନାହିଁ । ଶୁମ୍ଭ କହିଲା, ମୁଁ ଏକାକୀ ଏ ପୃଥିବୀଟାକୁ ଟେକିଦେଇ ପାରେ । ଅଥଚ ଆମେ ଦୁଇଭାଇ ଲାଗି ଗୋଟାଏ ଲୋକକୁ ଟିକ୍କୁ ଉଠାଇପାରୁନୁ । ଅଦ୍‌ଭୁତ କଥା ତ !

ବହୁ ଚେଷ୍ଟାରେ ଲୋକଟି ଟିକ୍କୁ ଉଠିଲା । ଟିକିଏ ଉଠେଇ ଦେଲା ମାତ୍ରେ ଫୁଲଭଳି ଉଶ୍ୱାସ ହୋଇଗଲା । ଏହା ଦେଖି ଦୁଇଭାଇ ପରସ୍ପରକୁ ପ୍ରଶ୍ନବାଚୀ ଚକ୍ଷୁରେ ଅନାଇଲେ ।

ବହୁ କଷ୍ଟରେ ଲୋକଟି କହିଲା ଏ ସବୁ ବ୍ରହ୍ମାଙ୍କ ବରର ମହିମା ।

ବ୍ରହ୍ମାଙ୍କ ବର ? ତୁମେ କ'ଣ ବ୍ରହ୍ମାଙ୍କ ଠାରୁ ବର ପାଇଛ ?

ମୁଣ୍ଡ ଟୁଙ୍ଗାଣି ଲୋକଟି କହିଲା, ହଁ ହଁ ସେ ବହୁତ କଥା । ମୋର ନିଃଶ୍ୱାସ ତ ଘର ଧରୁନାହିଁ – ସେ ସବୁ କଥା କିପରି କହିବି ? ଟିକିଏ ରୁହ ମୁଁ କହୁଛି ।

ଟିକିଏ ଅପେକ୍ଷା କଲେ ଶୁମ୍ଭ ନିଶୁମ୍ଭ । ସାମାନ୍ୟ ସୁସ୍ଥହୋଇ ଲୋକଟି କହିଲା, ମୁଁ ଅନନ୍ତ ଦେଶର ରାଜା ନିରାକାରଙ୍କ ପୁତ୍ର । ମୁଁ ବ୍ରହ୍ମାଙ୍କୁ ତପସ୍ୟା କରି ବର ପାଇଥିଲି ଏ ସୂର୍ଯ୍ୟ ଚନ୍ଦ୍ର ଧ୍ୱଂସ ହୋଇଯିବେ ସିନା, ମୋର ମୃତ୍ୟୁ ହେବନାହିଁ । ଏ ବିଶ୍ୱ ବ୍ରହ୍ମାଣ୍ଡରେ ସେଭଳି କେହି ନାହାନ୍ତି ଯେ କି ଯୁଦ୍ଧରେ ମୋତେ ଜୟ କରିପାରିବେ । ବ୍ରହ୍ମା ବିଷ୍ଣୁ ମହେଶ୍ୱର ମଧ୍ୟ ମୋତେ ଯୁଦ୍ଧରେ ଜୟକରି ପାରିବେନାହିଁ । ମୋ ଶରୀର ଶିବଙ୍କର ପାଶୁପତ ଶର, ବ୍ରହ୍ମାଙ୍କର ବ୍ରହ୍ମଶର କିମ୍ବା ବିଷ୍ଣୁଙ୍କର ନାରାୟଣ ଶର ମଧ୍ୟ କିଛି କରିପାରିବ ନାହିଁ । ଏଭଳି ବର ପାଇ ଘରକୁ ଫେରି ଆସିଲା ବେଳଠାରୁ ବିଭିନ୍ନ ରୋଗ ମୋତେ କବଳିତ କଲେ । ଗୋଟିଏ ବୋଲି ପୁଅ ମୋର ଥିଲା, 'ଦୁର୍ଭାଗ୍ୟ ଏଭଳି ଯେ ସେ ମଧ୍ୟ ଏ ଭିତରେ ମରିଗଲା ।

ମୋର ଥିଲେ ଦୁଇଟି ପତ୍ନୀ, ସେମାନେ ମଧ୍ୟ ବେଲା ଖପ୍ପରକୁ ପାଣିରେ ବୁଡ଼ ମଲେ । ମୋ'ଭୁଣ୍ଡରେ ମାଣି ମନ୍ଦାଏ ଦେବାପାଇଁ କେହ୍ବ ଲୋକ ରହିଲେ ନାହିଁ । କଷ୍ଟେ ମଷ୍ଟେ ମୋ ରାଜ୍ୟରୁ ପଳେଇ ଆସିଲି । ଭାବିଲି ଏହି ଜଳଘାଟ ପାଖରେ ପଡ଼ିଥିଲେ କେହି ମନ୍ଦାଏ ପାଣି ମୋ ଭୁଣ୍ଡରେ ଦେଇପାରେ ।

ଲୋକଟି ଟିକଏ ଦମ୍ ନେଲା—ତା'ପରେ କହିଲା, ସେ ବ୍ରହ୍ମାଙ୍କ କଥା କ'ଣ ମୁଁ କହିବ । ଗୋଟାଏ ଲୋକର ଚାରଟା ମୁହଁ ହେଲେ ଯାହା ହୁଏ । ମୁଁ ଏବେ ବୁଝୁଛି ତାର ଚାରଟା ମୁଣ୍ଡ ମଧ୍ୟରୁ ଗୋଟାଏ ଗାଲୁଆ, ଗୋଟାଏ ମିଛୁଆ, ଗୋଟାଏ ଚୁଗୁଲିଆ, ଆଉ ଗୋଟାଏ ପେଞ୍ଚୁଆ । ତା' ନହେଲେ ବର ପାଇଲା ଦିନଠାରୁ ମୋର ଅବସ୍ଥା ଏଭଳି ହୁଅନ୍ତା ? ତା'ର ଖଚୁଆ ବୋଲି ଆଉ ଗୋଟାଏ ମୁଣ୍ଡ ଥିଲା, ଶିବ ଜାଣିପାରି ଗୋଟାଏ ଚାପୁଡ଼ାରେ ସେ ମୁଣ୍ଡ ଛିଣ୍ଡାଇ ଦେଲେ । ସେ ଗୋଟାଏ ଖପ୍ପର ଦେବତା ଏକଥା ଆଗରୁ ଜାଣିଥିଲେ ମୁଁ କାହିଁକି ତା'ର ଆରାଧନା କରିଥାନ୍ତି ? ଦେବତାଟାଏ ହୋଇ ଦିନେ ରମ୍ଭା ବେଶ୍ୟା ସହିତ ମାତିଲା । ତହୁଁ ସେ ବେଶ୍ୟାର ଗୋଟିଏ ପୁଅ ହେଲା; ତା ନାଁ ହେଉଛି ବଶିଷ୍ଠ ।

କଥା କହୁ କହୁ ଲୋକଟାର ଦେହ ଗରମ ହେଲା । ଦେହରୁ ଲୁଗାପଟା କାଢ଼ି ସେ ଗଡ଼ିବାକୁ ଲାଗିଲା ତଳେ । ଶୁମ୍ଭ ନିଶୁମ୍ଭ ତା ଦେହରେ ହାତମାରି ଦେଖିଲେ ଦେହଟା ତାର ବରଫ ଭଳି ଥଣ୍ଡା ଲାଗୁଛି ।

ଶୁମ୍ଭ ନିଶୁମ୍ଭ ପରସ୍ପର ମୁହଁକୁ ଅନାଅନି ହେଲେ । ଲୋକଟି ତଳେ ଗୋଡ଼ହାତ ପିଟିବାକୁ ଲାଗିଲା । ମାତ୍ର କେଇଟି ମୁହୂର୍ତ୍ତ । ତାପରେ ସବୁ ଶେଷ । ଦେହଟି ତାର ନିଥର ହୋଇ ପଡ଼ିରହିଲା ସେଇଠାରେ ।

ଆଖି ଆଗରେ ଦୁଇଭାଇ ଦେଖିଲେ ବ୍ରହ୍ମାଙ୍କ ବରଦାନର ଫଳ । ସହସ୍ରବର୍ଷ ଧରି ବ୍ରହ୍ମାଙ୍କୁ ତପସ୍ୟା କରି ତାଙ୍କଠାରୁ ଯେଉଁ ବର ପାଇଛନ୍ତି ତାର ମୂଲ୍ୟ କ'ଣ କିଛି ନାହିଁ ? ଏହାର ଉତ୍ତର ଦେବ କିଏ ? ସେହି ପିତା ବ୍ରହ୍ମାହିଁ ଦେଇପାରିବେ ଏହାର ଉତ୍ତର ।

ଆଉ ଘରକୁ ଫେରି ଲାଭନାହିଁ । ଦୁଇଭାଇ କଥାବାର୍ତ୍ତା ହୋଇ ଚାଲିଲେ ପୁଣି ତପସ୍ୟା କରିବାକୁ । ପୁଣି ସେଇଠାରେ ଦୁହେଁ ବ୍ରହ୍ମାଙ୍କ ସ୍ବରୂପ ଚିନ୍ତାକରି ବସିଗଲେ ।

ମନଟାକୁ ସମ୍ପୂର୍ଣ୍ଣରୂପେ ଇଷ୍ଟଙ୍କ ଠାରେ ନିବେଶ ନକଲେ ଇଷ୍ଟ ତାହା ଜାଣିପାରିବେ ନାହିଁ । ମନରେ ସେହିଭଳି ବ୍ୟାକୁଳତା ନ ଆସିଲେ ଇଷ୍ଟ ବା ଆସିବେ କାହିଁକି ? ଯଦି ମନରେ କିଛି ସନ୍ଦେହ ଆସେ ତେବେ ଉପଯୁକ୍ତ ଗୁରୁଙ୍କ ପାଖକୁ ଯିବା ଦରକାର—ଇଷ୍ଟଙ୍କ ପାଖକୁ ନୁହେଁ । ତେଣୁ ଦୁଇଭାଇ ଯେତେ ବ୍ରହ୍ମାଙ୍କୁ ସ୍ମରଣ କଲେ ମଧ୍ୟ ତାଙ୍କର ଆବିର୍ଭାବ ହେଲା ନାହିଁ ।

ଦିନେ ଦୁଇଭାଇ କଥାବାର୍ତ୍ତା ହେଲେ, ଏତେଦିନ ହେଲା ଆମେ ପିତା ବ୍ରହ୍ମାଙ୍କୁ ଡାକିଲୁଣି, କାହିଁ ପିତା ତ ଆସିଲେ ନାହିଁ । ତାହାହେଲେ ଏମିତି କେତେଦିନ ଆମେ ବସିବା ? ଏମିତି ତପସ୍ୟା କରୁ କରୁ ହୁଏତ ସାରାଜୀବନ ଆମର ଚାଲିଯିବ—ତାହାହେଲେ ଲାଭ କ'ଣ ?

ଶୁମ୍ଭ କହିଲା, ଆଉ ବୃଥା ତପସ୍ୟା କରି ଲାଭନାହିଁ, ଚାଲିଯିବା ତାକୁ ଆମେ ତିନିପୁର ଯାକ ଖୋଜିବା । ଖୋଜିଲେ ତାକୁ କ'ଣ ଆମେ ପାଇବା ନାହିଁ ?

ନିଶୁମ୍ଭ କହିଲା, ଆମକୁ ଯେତେବେଳେ ସେ ଠକିଦେଇ ଯାଇଛନ୍ତି ସେତେବେଳେ ସେ ଯଦି ଲୁଚନ୍ତି ?

ଲୁଚିବେ ? ହେଉ ଚାଲ ଦେଖିବା ସେ କ'ଣ କରୁଛନ୍ତି ? ଲୁଚିଲେ କ'ଣ ଆମେ ଜାଣିପାରିବା ନାହିଁ ? ଶୁଣିଛୁ, ସେଠି ନାରଦଋଷି ଅଛନ୍ତି, ସେ ସବୁ ଖବର ଜାଣେ । ଦେଖାହେଲେ ସେ ହୁଏତ କହିଦେବେ ।

ପ୍ରଥମେ ସେମାନେ ସ୍ୱର୍ଗକୁ ଗଲେ । ବ୍ରହ୍ମାଙ୍କ ବରରେ ସେମାନେ ବଳୀୟାନ । ସ୍ୱର୍ଗର ଯେଉଁଠାକୁ ସେମାନେ ଗଲେ ତାକୁ ଭାଙ୍ଗି ଛାରଖାର କରିଦେଲେ । ତା ଉପରେ ଦେବତାମାନେ ପଳାଇଲେ ଏଣେତେଣେ । ଅପ୍ସରାମାନେ ଶୁମ୍ଭ ନିଶୁମ୍ଭଙ୍କ ଉପରେ ଛୁନିଆଁ । ହୁଅନ୍ତୁ ପଛେ ସେମାନେ ସ୍ୱର୍ଗର ବେଶ୍ୟା, ଏହା ବୋଲି ସେମାନେ ରାକ୍ଷସ ଭୋଗ୍ୟା ହେବେ କାହିଁକି ?

ବାହାରିଲା ପୁରୁଷ ସ୍ୱର୍ଗଛାଡ଼ି ଶୂନ୍ୟରେ ଘୂରି ବୁଲିଲେ । ବୁଲି ବୁଲି ସେ ପହଞ୍ଚିଲେ ବ୍ରହ୍ମାଙ୍କ ପାଖରେ । ବ୍ରହ୍ମା ତାଙ୍କର ଅସ୍ତବ୍ୟସ୍ତ ଭାବ ଦେଖି ପଚାରିଲେ—କ'ଣ ହୋଇଛି, ତୁମେ ଏଭଳି କାହିଁକି ହେଉଛ ?

ବହନ୍ତା ପୁରୁଷ କହିଲେ, ଆପଣ କ'ଣ ଶୁଣି ନାହାନ୍ତି ଶୁମ୍ଭ ନିଶୁମ୍ଭ ସ୍ୱର୍ଗ ଆକ୍ରମଣ କରିଛନ୍ତି ବୋଲି ? ସେମାନେ ସ୍ୱର୍ଗସାରା ବୁଲି ଆପଣଙ୍କୁ ଖୋଜୁଛନ୍ତି । ସେମାନେ ତ ଆପଣଙ୍କ ବରରେ ବଳୀୟାନ । ତାଙ୍କର କିଏ କ'ଣ କରିବ ? ସେଥିପାଇଁ ଦେବବାସ ଭୂମି ଛାଡ଼ି ମୁଁ ପଳାଇ ଆସିଛି ।

ଗମ୍ଭୀର ହୋଇଗଲେ ବ୍ରହ୍ମା ବହନ୍ତା ପୁରୁଷଙ୍କର କଥା ଶୁଣି । ସେ ତାଙ୍କ ମନଚକ୍ଷୁରେ ଦେଖିପାରିଲେ ଦେବତାଙ୍କ ଦୁର୍ଦ୍ଦଶା । ସେ ସ୍ଥିରକଲେ ରାକ୍ଷସ ଦସ୍ୟୁଙ୍କ ସମ୍ମୁଖିନ ହେବାକୁ । ସେ ଭାବିଲେ ମୋ' ଠାରୁ ବର ପାଇ ସେମାନେ କ'ଣ ମୋତେ ଆକ୍ରମଣ କରିବେ ? ଯଦି କରନ୍ତି, ତେବେ ? ତେବେ ସେ ହାତରେ ଧନୁଶର ଧରିଗଲେ, ସେମାନେ କ'ଣ କରିବେ ? ବ୍ରହ୍ମଶରର ସେମାନେ କ'ଣ ସମ୍ମୁଖିନ ହୋଇପାରିବେ ?

ବ୍ରହ୍ମା ଧନୁଶର ହାତରେ ଧରି ମରାଳ ବାହନରେ ବିଜେକଲେ । ଆଦେଶମାତ୍ରେ ହଂସ ଉଡ଼ିଗଲା ଶୁମ୍ଭ-ନିଶୁମ୍ଭ ଯେଉଁଠାରେ ଥିଲେ ସେଠାକୁ ।

ବ୍ରହ୍ମାଙ୍କୁ ଦେଖୁ ଦେଖୁ ଅସୁର ଦୁହେଁ ଗର୍ଜି ଉଠିଲେ । ହଜାରେ ବର୍ଷ ତପସ୍ୟା କରି ଆମେ ତୁମଠାରୁ ଯେଉଁ ବର ପାଇଛୁ ତା'ର ମୂଲ୍ୟ କିଛି ନାହିଁ ? ପିତା ହୋଇ ତୁମେ ଏତେ ଠକ, ଭଣ୍ଡ । ସୁରମାନେ ତୁମର ସର୍ବସ୍ୱ ଆଉ ଅସୁରମାନେ ତୁମ ଚକ୍ଷୁରେ ଘୃଣ୍ୟ ।

କଥା କହୁ କହୁ ଦୁହେଁ ରାଗରେ ପ୍ରଚଣ୍ଡ ହୋଇ ଧାଇଁ ଆସିଲେ ବ୍ରହ୍ମାଙ୍କ ପାଖକୁ । ଦୁହେଁ କରବାଳ ଧରି ଆଘାତକଲେ ପିତା ବ୍ରହ୍ମାଙ୍କୁ । ସେହି ଆଘାତରେ ବ୍ରହ୍ମା ଅସାଷ୍ଟମ ହୋଇ ପଡ଼ିଲେ । ଯେହେତୁ ସେ ବ୍ରହ୍ମା ତାଙ୍କ ଦେହରେ ଖଣ୍ଡା ବାଜେ କିଛି ହେଲାନାହିଁ । କାହିଁକି ନା ବ୍ରହ୍ମ ଖଣ୍ଡାରେ ହାଣି ହୁଅନ୍ତିନାହିଁ କିମ୍ବା ଅଗ୍ନି ତାଙ୍କୁ ପୋଡ଼ିଦେଇ ପାରନ୍ତିନାହିଁ । ତଥାପି ବ୍ରହ୍ମା ଅସାଷ୍ଟମ ହୋଇଗଲେ ।

କିଛି ସମୟପରେ ବ୍ରହ୍ମାଙ୍କ ଦେହରେ ଚେତନା ଫେରି ଆସିଲା । ସେ ଆଖି ଖୋଲି ଯେତେବେଳେ ଅସୁର ଦୁହିଁଙ୍କୁ ଦେଖିଲେ ସଙ୍ଗେ ସଙ୍ଗେ ରାଗିଯାଇ କହିଲେ, ଯାହାକୁ ତୁମେ ପିତା ବୋଲି କହିଥିଲ, ତାଙ୍କୁ ଅସ୍ତ୍ରାଘାତ କଲ ? ଏହାଦ୍ୱାରା ତୁମେ ଅଭିଶାପଗ୍ରସ୍ତ ହୁଅ । ମୁଁ ତୁମକୁ

ଅମରବର ଦେଇଥିଲ, ତାହା ତୁମର ପ୍ରକୃତ ପ୍ରାପ୍ୟ ନୁହେଁ । ତେଣୁ ମୁଁ ଅଭିଶାପ ଦେଉଛି ଯେଉଁଦିନ ଜଣକର ହାତ ଅନ୍ୟ ଜଣକର ଶିରରେ ରଖିବ ସଙ୍ଗେ ସଙ୍ଗେ ଦୁହିଁଙ୍କର ମୃତ୍ୟୁ ହେବ । ତା'ଛଡ଼ା ତୁମର ମୃତ୍ୟୁ ଅନ୍ୟ କୌଣସିରେ ସମ୍ଭବ ନୁହେଁ ।

ଅସୁର ଦୁହେଁ ବିନମ୍ର ହୋଇ ବ୍ୟକ୍ତ କଲେ ସେହି ଲୋକଟିର କଥା । ବ୍ରହ୍ମା ସବୁ ଶୁଣି ଟିକଏ ଚିନ୍ତାକଲେ । ତା'ପରେ କହିଲେ ଓଃ–– ତାହାହେଲେ ତୁମେ ଦୁହେଁ ମହାକାଳର କବଳରେ ପଡ଼ିଯାଇଥିଲ । ଏପର୍ଯ୍ୟନ୍ତ ମହାକାଳର କବଳରୁ କେହି ମୁକୁଳି ନାହାନ୍ତି । ନିଜେ ସ୍ରଷ୍ଟା ମଧ୍ୟ ତାଙ୍କ ସୃଷ୍ଟିର ନିୟମକୁ ଭଙ୍ଗ କରିବା ସମ୍ଭବପର ହୋଇପାରେ ନାହିଁ ।

ମହାକାଳ ? ସେ ପୁଣି କିଏ ? ସେ କ'ଣ ଆପଣଙ୍କ ଠାରୁ ବଡ଼ ?

ମହାକାଳ ସବୁର ଊର୍ଦ୍ଧ୍ୱରେ । ଆମେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସୃଷ୍ଟି-ପାଳନ-ସଂହାରର ଭାର ନେଇଛୁ । ସବୁ ଆମଦ୍ୱାରା ମହାକାଳ କରାଉଛି । ତାର ଚକ୍ଷୁ ଚନ୍ଦ୍ର ସୂର୍ଯ୍ୟ । ତାର ରଙ୍ଗ ହେଉଛି ଅନ୍ଧକାର । ତାର ମୁଖ ହେଉଛି ଜ୍ୱଳନ୍ତ ଅଗ୍ନି । ତାର ଗତି ମନଠାରୁ ପ୍ରଖର । ଯେତେବେଳେ ଅସମ୍ଭବ ବର ମୁଁ ତୁମକୁ ଦେଇଗଲି ସେତେବେଳେ ବିହନ୍ତା ପୁରୁଷ ମହାକାଳର ଦ୍ୱାରସ୍ଥ ହେଲି । ସେହି ମହାକାଳର ଆଦେଶରେ ପାଳନକର୍ତ୍ତା ତୁମ ସମକ୍ଷରେ ଇନ୍ଦ୍ରଜାଲ ସୃଷ୍ଟି କଲେ । ତାହାକୁ ବୁଝିବା ତୁମ ପକ୍ଷରେ ଅସମ୍ଭବ ପୁତ୍ର ।

ଦୀର୍ଘନିଃଶ୍ୱାସ ଟାଣି ମହିଷାସୁର କହିଲ, ତାହାହେଲେ ମହାମନ୍ତ୍ରୀ ମୁଁ କ'ଣ ସେହି ମହାକାଳର କରାଳ କବଳରୁ ନିସ୍ତାର ପାଇବିନାହିଁ ? ମୋତେ କ'ଣ ସେହି ମହାକାଳ କବଳିତ କରିବ ?

ହେ ମହିର ଈଶ ! ଏ ବିଶ୍ୱରେ ଏଭଳି କେହି ନାହିଁ ଯେ କି ସେହି ମହାକାଳ ଠାରୁ ନିସ୍ତାର ପାଇଛି । ସେଥିପାଇଁ କଳିଙ୍ଗର ଶାବରୀୟମାନେ ତାଙ୍କୁ ପରମଦେବତା ବୋଲି ଧାରଣା କରି ଆସିଛନ୍ତି । ତାଙ୍କର ଉପାସନା କରି ସେମାନେ ହୋଇଛନ୍ତି ବଳବାନ୍ ।

ଦାନ୍ତ କଡ଼ମଡ଼ କରି ଶିଙ୍ଗ ଦୁଇଟାକୁ ହଲାଇ, ତାର ଆଖିକୁ ବିସ୍ଫାରିତ କରି ମହିଷା କହିଲା—ସେ ଯଦି ମୋ ହାବୁଡ଼େ ପଡ଼ନ୍ତା, ତାହାହେଲେ ଦେଖନ୍ତ । —ମୁଁ ତାର କ'ଣ କରିପାରନ୍ତି ।

ହସିଉଠିଲା ମହାମନ୍ତ୍ରୀ ଅନ୍ଧକ । କହିଲା ହେଇ ଗଲ୍ପ ପାହିବା ପାହିବା ହେଲଣି । ସେହି ମହାକାଳ ଭୂମକୁ ଟାଣି ଆଣିଛି ଶୁମ୍ଭ ନିଶୁମ୍ଭଙ୍କ ନିକଟକୁ । ଥରେ ପରୀକ୍ଷା କରି ଦେଖ; ସେହି ମହାକାଳର କାଳଫାଶରୁ ନିଜକୁ ଦୂରେଇ ନେଉଛ କି ତା' ଦ୍ୱାରା କବଳିତ ହେଉଛ ?

ପ୍ରଭାତଂ ହେବାମାତ୍ରେ ମହିଷାସୁର ତା'ର ସେନାପତିଙ୍କୁ ଧରି ଧାଇଁଲା । ତା'ର ସମ୍ମୁଖୀନ ହେବାପାଇଁ ଧାଇଁଲେ ଶୁମ୍ଭ ନିଶୁମ୍ଭ ତାଙ୍କ ସେନାବଳ ଧରି । ନିଷ୍ଠୁର ଭାବେ ଦୁଇଦଳ ଭେଟାଭେଟି ହେଲେ । ମହିଷାସୁରର ସେନାପତିମାନେ ଗଦା, ଖଡ଼୍ଗ, ଶର, ମୁଦ୍‌ଗର ଆଦି ନେଇ ପିଟିଲେ ଶୁମ୍ଭ ନିଶୁମ୍ଭଙ୍କ ଉପରେ । ସେମାନଙ୍କର ସମସ୍ତ ଅସ୍ତ୍ର ବିଫଳ ହୋଇଗଲା ତାଙ୍କ ଉପରେ ପଡ଼ି । ବ୍ରହ୍ମାର ବରରେ ଦୁହେଁ ଅଜେୟ । ତାଙ୍କୁ କ'ଣ ମହିଷାସୁରର ସେନାପତିମାନେ ଯୁଦ୍ଧରେ ଜୟକରି ପାରିବେ ?

ମହିଷାସୁରର ସେନାପତି ରକ୍ତବୀର୍ଯ୍ୟ ଉପରେ ନିଶୁମ୍ଭ ବଜ୍ରାବଳି ନାମରେ ଏକ ଲୁହାର ଗଦା ନେଇ ପ୍ରହାର କଲା । ପ୍ରକାଣ୍ଡ ଲୌହଖଣ୍ଡ ଉପରେ ଆଉ ଏକ ଲୌହପିଣ୍ଡ ସଜୋରରେ ଆଘାତ ଦେଲେ ଯେପରି ବିରାଟ ଶବ୍ଦ ସହିତ ଅଗ୍ନିର ଝଲକ ସୃଷ୍ଟି ହୁଏ, ସେହିଭଳି ହୋଇ ଗଦାଟି ରକ୍ତବୀର୍ଯ୍ୟ ଉପରେ ପଡ଼ି ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା । ରକ୍ତବୀର୍ଯ୍ୟ ସେହିଭଳି ଆଉ ଗୋଟିଏ ଗଦାଧରି ପ୍ରହାର କଲା ନିଶୁମ୍ଭ ଉପରେ । ଖଣ୍ଡ ଖଣ୍ଡ ହୋଇଗଲା ସେହି ଗଦାଟି ନିଶୁମ୍ଭ ଉପରେ ପଡ଼ି । ଅସ୍ତ୍ର ବିଫଳ ହେବା ଦେଖି ରକ୍ତବୀର୍ଯ୍ୟ ନିଶୁମ୍ଭକୁ ମାଡ଼ିବସିଲା । ନିଶୁମ୍ଭ ମଧ୍ୟ ମାଲ ଯୁଦ୍ଧରେ ହୀନ ବଳ ନୁହେଁ । ଦୁହେଁ ଦୁହିଁଙ୍କୁ ଧରି ଗଡ଼ାଗଡ଼ି ଦେଇଏ ଲେଖାଁ ହେଲେ । ତାଙ୍କ ଗଡ଼ାଗଡ଼ିରେ ମହୀରେ ଥିବା ବଡ଼ ବଡ଼ ଗଛମାନ ଭାଙ୍ଗି ପଡ଼ିଲା ।

ନିଶୁମ୍ଭ ନିଠେଇକରି ଗୋଟାଏ ବିଧା ମାରିଲା ରକ୍ତବୀର୍ଯ୍ୟକୁ । ସେହି ବିଧା ଘାତରେ ଅସାଷ୍ଟମ ହୋଇ ପଡ଼ିଲା ରକ୍ତବୀର୍ଯ୍ୟ । ବ୍ରହ୍ମାଙ୍କ ବରରେ ଯେ ଅଜେୟ, ତାଙ୍କ ପାଖରେ ରକ୍ତବୀର୍ଯ୍ୟ ଶକ୍ତି କେତେ ?

ରକ୍ତବୀର୍ଯ୍ୟ ଅଚେତନ ହୋଇପଡ଼ିବା ଦେଖି ଶୁମର ସେନାମାନ ଧାଇଁଲେ । ଏକା ଶୁମର ସେନାପତି ଭୁଲି ହେଲେ । ତାମ୍ରମାଳା ଧାଇଁଲା ଶୁମ୍ଭ ନିଶୁମ୍ଭଙ୍କ ପାଖକୁ । ମାତ୍ର ଶୁମ୍ଭ ନିଶୁମ୍ଭଙ୍କ ପାଖରେ ଏମାନେ ବା କେତେ ସମୟ ସମର କରିପାରିବେ ? ଖୁବ୍ ଅଳ୍ପ ସମୟ ମଧ୍ୟରେ ନିଶୁମ୍ଭ ସମସ୍ତଙ୍କୁ ପରାସ୍ତ କରି ଧାଇଁଲା ମହିଷାସୁର ନିକଟକୁ । ମହିଷାସୁର ମଧ୍ୟ ତା'ର ସୈନ୍ୟ ସେନାପତିଙ୍କ ଦୂରବସ୍ଥା ଦେଖି ଶୁମ୍ଭ ନିଶୁମ୍ଭଙ୍କ ନିକଟକୁ ଧାଇଁ ଆସିଲା । ହସ୍ତରେ ତା'ର ବିଶାଳ ଧନୁ । ଆଖି ପିଛୁଳାକେ ଶହ ଶହ ଶରମାରି ଶୁମ୍ଭ ନିଶୁମ୍ଭଙ୍କୁ ସେ ଶରଜାଲରେ ଛନ୍ଦି ପକାଇଲା ।

ଶୁମ୍ଭାସୁର ଠୋ' ଠୋ' ହୋଇ ହସି ଗୋଟିଏ ଶରରେ ତା'ର ସମସ୍ତ ଶରକୁ ନିବାରଣ କରି ବଜ୍ର ଶର ପେଷିଲା ମହିଷାକୁ । ମହିଷାର ଦେହ ବଜ୍ରଠାରୁ କଠିନ । ତେଣୁ ଶୁମ୍ଭର ବଜ୍ର ଶର ତା' ଦେହରେ ବାଜିଲା ଏକ ନିର୍ଘାତ ଶବ୍ଦକରି । ତା'ପରେ ଖସିପଡ଼ିଲା ଭୂମି ଉପରେ ।

ଉଭୟେ ବ୍ରହ୍ମାଙ୍କ ବଳରେ ବଳୀୟାନ । କିନ୍ତୁ ଜଣେ କନିଷ୍ଠ ଓ ଅପରଟି ବୟୋଜ୍ୟେଷ୍ଠ । ମହିଷାସୁର ତା'ର ମନ୍ତ୍ରୀ ଅନ୍ଧକଠାରୁ ଶୁମ୍ଭନିଶୁମ୍ଭ ବିଷୟରେ ସମସ୍ତ ଶୁଣିଛି । କିନ୍ତୁ ବିଶ୍ୱାସ କରିନାହିଁ ପୂର୍ବମାନାରେ । ସେ ଭାବୁଥାଏ, ଯଦି ମନ୍ତ୍ରୀ କଥା ସତ ହୁଏ ତେବେ କଳେବଳେ କୌଶଳେ ସେ ଦୁହିଁଙ୍କୁ ବଶ କରିବ । ଯେତେହେଲେ ବୟସରେ ସେମାନେ କନିଷ୍ଠ । ସେମାନେ କ'ଣ ଜ୍ୟେଷ୍ଠର କଥାକୁ ଅବହେଳା କରିବେ ?

ଶୁମ୍ଭ ନିଶୁମ୍ଭଙ୍କ ସହିତ ଯୁଦ୍ଧ କରୁ କରୁ ମହିଷାସୁର ଏକ ମହିଷ ରୂପ ଧାରଣ କଲା । ଶିଙ୍ଗ ହଲାଇ ଲାଙ୍ଗୁଡ଼ ଟେକି ସେ ଯୁଦ୍ଧଭୂମିରେ ଡେଇଁବାକୁ ଲାଗିଲା । ତା' ଖୁରା ଘାତରେ ଧୂଳି ଉଡ଼ାଇ ଆଚ୍ଛାଦିତ କଲା ଆକାଶକୁ । ତା'ର ଏଭଳି କାଣ୍ଡରେ ବିସ୍ମିତ ହୋଇ ପଡ଼ିଲେ ଶୁମ୍ଭ ନିଶୁମ୍ଭ ।

ଶୁମ୍ଭ ଆଦେଶ ଦେଲା, ସାବଧାନ ! ନିଜ ଶକ୍ତି କେହି ଖର୍ଚ୍ଚ କର ନାହିଁ । ବୁଢ଼ାଟା ନାଚି ନାଚି କ୍ଲାନ୍ତ ହୋଇଗଲେ ଆମେ ଅବଶ୍ୟ ତାକୁ ଧରିପାରିବା । "

ମହିଷାସୁର ମୂଳ ଉଡ଼ାଇ କଟୁ ସମସ୍ତ ଦେବଙ୍କ ଉପରେ ପୁଣି ମହିଷ ଶରୀର ଧାରଣ କଲା । ସେହି ସମୟରେ ଶୁମ୍ଭ ନିଶୁମ୍ଭ ଓ ତା'ର ସୈନ୍ୟ ମାନେ ତାକୁ କାବୁ କରିଦେଲେ । ସେତେବେଳେ ସେ ବୁଝିଲା ମହାକାଳର କୁଟିଳ ଗତି କଣ ?

ମନକୁ ମନ ସେ କହିଲା, ଈର୍ଷ୍ୟାପର ହାରିବା ଜିତିବା ସମାନ । ହାରିବା ସହ୍ୱତ ପାଳଣ କରିନେଲେ ଜିତିବା ଫଳ ମିଳିଥାଏ । ସେତେ-ବେଳେ ଶୁମ୍ଭ ନିଶୁମ୍ଭ ତା' ପାଖରେ ପିଲା । ପିଲା ଦି'ଟାଙ୍କୁ କୋଳେଇ ନେବା ବୁଦ୍ଧିମାନର କାର୍ଯ୍ୟ ।

ସେତେବେଳେ ମହାକାଳ ହସୁଥିଲା । କହୁଥିଲା କେତେକାଳ ତୁ କାହା ସହ୍ୱତ ପାଳଣ୍ କରିପାରିବୁ ମୁଁ ଦେଖିବି । କିନ୍ତୁ ସେ ହସ—ତା'ର କଥା ମହିଷାସୁରକୁ ଶୁଭୁ ନଥିଲା । ସେ ଗ୍ରୀବାନତ କରି ଶୁମ୍ଭ ନିଶୁମ୍ଭଙ୍କ ନିକଟରେ ପରାଜୟ ସ୍ୱୀକାର କରୁଥିଲା ।



# ମହିଷାସୁରର ତପସ୍ୟା ଓ ବରଲାଭ

ଶ୍ରୀ ବିଜୟକୃଷ୍ଣ ମହାନ୍ତି

ପରୀକ୍ଷିତ ମହାରାଜ ଯେତେବେଳେ ଜାଣିପାରିଲେ ଋଷି ଅଭି-ଶାପର ଫଳ ତାଙ୍କୁ ଅବଶ୍ୟ ଭୋଗିବାକୁ ପଡ଼ିବ, ମାତ୍ର ସପ୍ତାହକ ମଧ୍ୟରେ ତକ୍ଷକ ଦଂଶନରେ ସେ ଇହଲୀଳା ସମ୍ବରଣ କରିବେ, ମୃତ୍ୟୁ ଭୟରେ କାତର ହୋଇ ପଡ଼ିଥିଲେ ସେ ।

ଧ୍ୟାନରେ ଏହା ଜାଣିପାରି ଶୁକଦେବ ତାଙ୍କ ନିକଟରେ ଆସି ଉପସ୍ଥିତ ହେଲେ ଓ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ମୃତ୍ୟୁ ମାନେ ତ ମହାନିଦ୍ରା । ନିତ୍ୟ ନିଦରେ ଶୋଉନୁ କି ଆମେ ? ପାର୍ଥକ୍ୟ ଭିତରେ ଏତିକି ଏ ନିଦ୍ରା ଭାଙ୍ଗେ, ମାତ୍ର ମହାନିଦ୍ରା ଭାଙ୍ଗେନି । ମୃତ୍ୟୁକୁ ଅଯଥା ଭୟ କରୁ ଆମେ । ମୃତ୍ୟୁ ତ ନାରାୟଣଙ୍କ ପାଖରେ ପହଞ୍ଚାଇ ଦିଏ ଆମକୁ । ହରି ସ୍ମରଣ ଓ ତାଙ୍କର ଲୀଳା ସ୍ମରଣରେ ଯଦି ଦେହାନ୍ତ ହୁଏ, ତେବେ ଜୀବ ମୋକ୍ଷ ଗତିକୁ ପ୍ରାପ୍ତ ହୁଏ । ହରି ସେ, ଯେ ହରଣ କରନ୍ତି ଆମର ଜାଗତିକ ଦୁଃଖକୁ ।"

"ହରି ଲୀଳା ଶ୍ରବଣ କରିବାକୁ ମୁଁ ବ୍ୟଗ୍ର । ମୋତେ 'ତା' ଶୁଣାଇ ମୋର ମୃତ୍ୟୁଭୟ ହରଣ କରି ମୋତେ 'ପରମାନନ୍ଦ ପ୍ରଦାନ କରନ୍ତୁ" ଅନୁନୟ ପରୀକ୍ଷିତଙ୍କର ।

"ହରିଲୀଳା ତ ଅନନ୍ତ । କେଉଁ ଲୀଳା ଶୁଣିବାର ଆକାଂକ୍ଷା ତମର ?" ପ୍ରଶ୍ନ କଲେ ଶୁକଦେବ ।

"ମହିଷାସୁର ବଧ ସମ୍ପର୍କରେ ମୁଁ ଶୁଣିବାକୁ ଉତ୍ସୁକ" ବିମୀତ କଣ୍ଠସ୍ୱର ପରୀକ୍ଷିତଙ୍କର ।

"ହରି, ହର ଏବଂ ଦୁର୍ଗତିନାଶିନୀ ଦୁର୍ଗା ଅଭିନ୍ନ । ଅଭିନ୍ନ ସେମାନଙ୍କର ଲୀଳା । ଧର୍ମର ସଂସ୍ଥାପନା ଓ ଦୁଷ୍କୃତମାନଙ୍କର ବିନାଶ ହିଁ ସେମାନଙ୍କ ଲୀଳାର ଉଦ୍ଦେଶ୍ୟ । ମହିଷାସୁର ବଧ ତ ପରବର୍ତ୍ତୀ ଘଟଣା । ପ୍ରଥମେ ତୁମେ ତା'ର ଜନ୍ମ ତପସ୍ୟା ଓ ବରଲାଭ ବୃତ୍ତାନ୍ତ ଶୁଣ ।"

ଶୁକମୁନି ମୁହୂର୍ତ୍ତେ ନୀରବ ରହି ପୁନଶ୍ଚ କହିଲେ, "ସବୁ ଯୁଗରେ ଅସୁରମାନେ ଜନ୍ମ ନେଇଛନ୍ତି ଓ ଏ ଧରାରେ ଭଗବାନ ଭିନ୍ନ ଭିନ୍ନ ରୂପ ଧାରଣ କରି ସଂହାର କରିଛନ୍ତି ସେମାନଙ୍କୁ ଭୂଭାର ହରଣ ନିମିତ୍ତ ।"

"ମାତ୍ର ଅସୁରମାନେ କିପରି ଜନ୍ମନେଲେ ଏ ପୃଥିବୀରେ ସେ ସମ୍ବନ୍ଧରେ କିଛି କହିବେ କି ?" କୌତୂହଳୀ ପରୀକ୍ଷିତ ପ୍ରଶ୍ନ କଲେ ଶୁକଦେବଙ୍କୁ ।

ଶୁକଦେବ ପରୀକ୍ଷିତଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ, "ମହା ପ୍ରଳୟ ସମୟରେ ଚତୁର୍ଦ୍ଦିଗ ଯେତେବେଳେ ଜଳାର୍ଣ୍ଣବ, ଶେଷନାଗ ନିଜେ ଗୁଡ଼ାଇ ଗୁଡ଼ାଇ ହୋଇ ସୃଷ୍ଟି କରିଥିବା ତଳ୍ପ ଉପରେ ନାରାୟଣ ବାକ୍‌ଦେବୀଙ୍କ କୋଳରେ ମଥାରଖି ଅନନ୍ତ ଶୟନରେ ଯୋଗସ୍ଥ ରହି ଥିଲେ । ଶେଷନାଗ ଫଣା ଉତ୍ତୋଳନ କରି ରହିଥିଲେ ସେମାନଙ୍କ ଶିର ଉପରେ ଠିକ୍ ଛତ୍ରଭଳି । ସେଇ ଯୋଗସ୍ଥ ଅବସ୍ଥାରେ ନାରାୟଣ ନିଜର କାନ ମଳିକବା ସମୟରେ କର୍ଣ୍ଣମଳରୁ ଦୁଇ ଦାନବଙ୍କର ଆକସ୍ମିକ ଆବିର୍ଭାବ ମଧୁ ଓ କଇଟଭ । ଦାନବ ଦ୍ୱୟଙ୍କର ଜନ୍ମଗତ ତାମସିକ ସ୍ୱଭାବ ଯୋଗୁଁ, ମାତୃସମା ବାକ୍‌ଦେବୀଙ୍କ ପ୍ରତି ପାପଦୃଷ୍ଟି ନିକ୍ଷେପ କଲେ, ହଠାତ୍ ଉଦ୍ଦାମ କାମରେ ପୀଡ଼ିତ ହୋଇ । ସରସ୍ୱତୀ ସେମାନଙ୍କ ଲୋଲୁପ ଦୃଷ୍ଟିରୁ ସେମାନଙ୍କ କ୍ଲେଦାକ୍ତ ଚିତ୍ତବୃତ୍ତିକୁ ଉପଲବ୍ଧି କରିପାରି ନିଜର ନିରାପତ୍ତା ଲାଗି ସଙ୍ଗେ ସଙ୍ଗେ ଯୋଗନିଦ୍ରାରୁ ଉଠାଇ ଦେଲେ ନାରାୟଣଙ୍କୁ । ସରସ୍ୱତୀଙ୍କ ମୁଖରୁ ସବୁ ଶୁଣି ଅସୁର ଦ୍ୱୟଙ୍କୁ ଗୁହାଁଦେଇ କ୍ରୋଧରେ କମ୍ପି ଉଠିଲେ ନାରାୟଣ ଓ ସେମାନଙ୍କୁ ଭର୍ତ୍ସନା କରି କହିଲେ; "ମୂଢ଼ ତୁମେ-ମାନେ, ଏ ପୃଥିବୀରେ ବଞ୍ଚିବାର ଅଧିକାର ତୁମମାନଙ୍କର ନାହିଁ ।"

ନାରାୟଣଙ୍କର ଅଗ୍ନିମୂର୍ତ୍ତି ଲକ୍ଷ୍ୟକରି ଭୟରେ କାକୁସ୍ଥ ହୋଇଗଲେ ଦାନବ ଦ୍ୱୟ ଓ ସଙ୍ଗେ ସଙ୍ଗେ ନାରାୟଣଙ୍କ ନିକଟରେ ଅବନତ ହୋଇପଡ଼ି ବିକଳ କଣ୍ଠରେ କହିଲେ, "କାମରେ ଅନ୍ଧ ହୋଇ ଆମେ ହିତାହିତ ଜ୍ଞାନ ଶୂନ୍ୟ ହୋଇ ଯାଇଥିଲୁ , ନିଜର କୃତକର୍ମ ଲାଗି ଆମେ ଏବେ ଅନୁତପ୍ତ। କ୍ଷମା କରନ୍ତୁ ଆମକୁ, ଜୀବନ ଭିକ୍ଷା କରୁଛୁ ଆପଣଙ୍କ ଚରଣ ତଳେ।"

ନାରାୟଣ ଉପଲବ୍ଧି କଲେ, ଏମାନଙ୍କର ଅନୁତାପ ମୂଲ୍ୟହୀନ। ଯେଉଁମାନେ ଜନ୍ମଲଭ କରୁ କରୁ କାମାନ୍ଧ, ସେମାନଙ୍କର ଅନୁତାପ ପ୍ରହସନ ମାତ୍ର। ଏମାନେ ଜୀବିତ ରହିଲେ ଏମାନଙ୍କର କୁତ୍ସିତ ସ୍ୱରୂପ ପୁନର୍ବାର ପ୍ରକାଶ ପାଇବ, ଅତଏବ ଏମାନେ କ୍ଷମାର ଅଯୋଗ୍ୟ। ଏ ଅସୁର ଦ୍ୱୟଙ୍କୁ ବଧ କରିବାକୁ ହିଁ ହେବ।

ନାରାୟଣ ସୁଦର୍ଶନ ଚକ୍ର ନିକ୍ଷେପ କରି ସେମାନଙ୍କ ଶିର ସ୍କନ୍ଧଚ୍ୟୁତ କଲେ ଓ ପରେ ପରେ ନିର୍ମମ ଗଦାଘାତରେ ସେମାନଙ୍କ ଶରୀରକୁ ପିଷ୍ଟକରି ମେଦରେ ରୂପାନ୍ତର କଲେ ଓ ସେଇ ମେଦକୁ ଜଳାର୍ଣ୍ଣବରେ ନିକ୍ଷେପ କରି ସୃଷ୍ଟି କଲେ ମେଦିନୀ। ମେଦରୁ ସୃଷ୍ଟି ହେଉ, ପୃଥିବୀର ଅନ୍ୟନାମ ମେଦିନୀ।

ପୃଥିବୀର ସୃଜନ ପରେ ମନୁଷ୍ୟ ମଧ୍ୟରେ ଚାରିଜାତି ସୃଷ୍ଟି ହେଲେ, —ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର। ମାତ୍ର ଦାନବ ମେଦରୁ ଏ ପୃଥିବୀ ସର୍ଜନା ହୋଇଥିବାରୁ ଅସୁରମାନେ ଭାବିନେଲେ ଏ ଧରଣୀରେ କେବଳ ସେଇମାନଙ୍କର ଅଧିକାର ଅଛି, ଅନ୍ୟମାନଙ୍କର ନୁହେଁ, ତେଣୁ ମନୁଷ୍ୟ ଜାତିକୁ ନିଶ୍ଚିହ୍ନ କରିଦେବା ଉଦ୍ଦେଶ୍ୟରେ ସେମାନେ ସେମାନଙ୍କ ଉପରେ ନିର୍ମମ ଅତ୍ୟାଚାର ଅବ୍ୟାହତ ରଖିଲେ।

ପ୍ରତି ଯୁଗରେ ଅସୁରମାନେ ମନୁଷ୍ୟମାନଙ୍କର ବୈରୀ ହୋଇ ରହିଲେ। ସେମାନଙ୍କର ଅତ୍ୟାଚାର ଯେତେବେଳେ ସୀମା ଲଙ୍ଘନ କରେ, ଭଗବାନ ପୃଥିବୀରେ ଦେହଧାରଣ କରି ସେମାନଙ୍କୁ ବିନାଶ କରି ଧର୍ମ ଓ ସତ୍ୟକୁ ସ୍ଥିର ରଖନ୍ତି।

ମୁଁ ବର୍ତ୍ତମାନ ଅନ୍ୟାନ୍ୟ ଅସୁରମାନଙ୍କ ସମ୍ପର୍କରେ କହିବିନି, କହିବି ମହିଷାସୁର ସମ୍ପର୍କରେ—ଯାହା ଶୁଣିବା ଲାଗି ତୁମେ ଆଗ୍ରହୀ। ତାର

କନ୍ଧ ବୃତ୍ତାନ୍ତ କହିବାକୁ ଗଲେ ତାର ପିତାମାତାଙ୍କ ପରିଚୟ ବି ଦେବାକୁ ପଡ଼ିବ ।

ଦୈତ୍ୟ ବଜ୍ରସିଂହର ପୁତ୍ର କପିଳସିଂହ, ତ୍ରିଭୁବନ ବିଜୟୀ ହେବାର ସ୍ୱପ୍ନ ଦେଖି ସେ ତପସ୍ୟାରତ ହେଲା । ତା'ର କଠୋର ତପସ୍ୟାରେ ଶିବ ପ୍ରସନ୍ନ ହୋଇ ଆବିର୍ଭୂତ ହେଲେ ତା' ସମ୍ମୁଖରେ ଓ ଇଚ୍ଛାନୁଯାୟୀ ବର ମାଗିବାକୁ ଆଦେଶ କଲେ ।

ହର୍ଷୋତ୍ଫୁଲ୍ଲ ଚିତ୍ତରେ ଦୁଇଟି ବର ଭିକ୍ଷା କଲା ସେ । ପ୍ରଥମଟି ହେଲା ସେ ତ୍ରିଭୁବନ ବିଜୟୀ ହେବ ଓ ଦ୍ୱିତୀୟଟି ପ୍ରମ୍ଭନ ବିଦ୍ୟାରେ ପାରଦର୍ଶୀ ହେବ ସେ – ଅର୍ଥାତ୍ ଦୀର୍ଘସ୍ଥାୟୀ ରତିକ୍ରିୟା ଦ୍ୱାରା ଯେକୌଣସି ନାରୀକୁ ସେ ଚରମ ତୃପ୍ତି ପ୍ରଦାନ କରିପାରିବ । ରତିଯୁଦ୍ଧରେ ସଦା ବିଜୟୀ ହେବ ସେ ।

ତଥାସ୍ତୁ କହି ଅନ୍ତର୍ହିତ ହେଲେ ଆଶୁତୋଷ । ପ୍ରଥମ ବର ବଳରେ ସେ ତ ତ୍ରିଭୁବନ ବିଜୟୀ ହେଲା । ଦ୍ୱିତୀୟ ବରର ସହାୟତାରେ ସେ ବୀର୍ଯ୍ୟବନ୍ତ ହୋଇ ଯେତେ ଇଚ୍ଛା ନାରୀ ସମ୍ଭୋଗ କରିବାକୁ ଲଗିଲା । ସେ ଅଦମ୍ୟ କାମ ପିପାସାର ଯେପରି ଅନ୍ତ ନାହିଁ ।

ବିଚରା ସ୍ତ୍ରୀ ତା'ର ସ୍ୱାମୀର ଦୁର୍ଦ୍ଧର୍ଷ ରତିକ୍ରିୟା ବରଦାସ୍ତ କରି ପାରିଲା ନାହିଁ । ପୁନଃ ପୁନଃ ରତିକ୍ରୀଡ଼ାରେ ତା'ର ଆନନ୍ଦ କାହିଁ ? କେବଳ ଚରମ ନିର୍ଯ୍ୟାତନା, ପ୍ରତି ମୁହୂର୍ତ୍ତରେ ଆତଙ୍କିତ ହୋଇ ରହିଲା ସେ ଶଯ୍ୟାରେ ସ୍ୱାମୀର ସାନ୍ନିଧ୍ୟକୁ ।

ଆଉ ସହ୍ୟକରି ନ ପାରି ସେ ବିଚରା ଦିନେ ପଳାୟନ କଲା ସିଂହଳ ଦ୍ୱୀପକୁ ଓ ସେଠାରେ ମଇଁଷିର ରୂପ ଧାରଣ କରି ଆତ୍ମଗୋପନ କରି ରହିଲା ।

ମାତ୍ର ଦୁର୍ଭାଗ୍ୟ ଯା'ର ପଶ୍ଚାଦ୍ଧାବନ କରୁଛି, ଦୁର୍ଯୋଗରୁ ଆତ୍ମରକ୍ଷା କରିବାର ତା'ର୍ ପ୍ରୟାସ କ'ଣ କେବେ ସଫଳ ହେବ ?

କୃତାନ୍ତର ଯମ ବାହନ ମଇଁଷି ସିଂହଳ ଦ୍ୱୀପରେ ସବୁବେଳେ ଆସି ବିଚରଣ କରେ । କୋମଳ ତୃଣ ଓ ପତ୍ର ଭକ୍ଷଣ କରିବାରେ ତା'ର

ଘର ଆନନ୍ଦ । କୃଷ୍ଣ ଅମାବାସ୍ୟା ସେଦିନ, ଯୋଗକୁ ତା'ର ହଠାତ୍ ଭେଟ ହୋଇଗଲା କପିଳ ସିଂହର ସ୍ତ୍ରୀ ସହିତ ମଇଁଷିର ରୂପ ଧାରଣ କରିଛି ସେ । ଯମବାହନ ତାକୁ ଦେଖିଦେଇ ହଠାତ୍ କାମ-ମୋହିତ ହେଲା ଓ ତାକୁ ସମ୍ଭୋଗ କରିବା ଉଦ୍ଦେଶ୍ୟରେ ତା' ନିକଟକୁ ଆଗେଇଯିବା ମାତ୍ରେ ପ୍ରାଣ ଭୟରେ ସେ ପଳାୟନ କଲା । ପଳାଇଲେ ବି ପରିତ୍ରାଣ କାହିଁ ? କାମାନ୍ଧ ଯମବାହନ ପଶ୍ଚାତ୍‌ଧାବନ କଲା ତା'ର । ପ୍ରାଣ ଭୟରେ ବିଚାରୀ ଦୌଡ଼ୁଛି ଏବଂ ଯମବାହନ ଦ୍ରୁତ ଗତିରେ ଧାଇଁଛି ତା' ପଛେ ପଛେ ।

କେତେ ଆଉ ଧାଇଁବ ବିଚାରୀ । ପଛକୁ ଫେରି ଫେରି ଅନାଇ ଦେଖୁଛି ଯମବାହନ କ୍ରମେ କ୍ରମେ ଲାଗି ଆସୁଛି ତା' ପଛକୁ । ଏକ ସମୟରେ ପଛକୁ ବୁଲିଦେଇ ଗୁଳାଆଡ଼େ ସେ ଅଟକିଗଲା, ଗୋଡ଼ ତଳୁଛି ଆଉ ଏବଂ ସେଇ ମଉକାରେ ଧାବମାନ ଯମବାହନ ଆୟତ୍ତ କରିନେଲା ତାକୁ ଏବଂ ଆୟତ୍ତକୁ ନେଇଯାଇ ଅବଲମ୍ବ ଆରମ୍ଭ କରିଦେଲା ଧର୍ଷଣ ।

ଛଟିପିଟି ହେଉଛି ବିଚାରୀ ଆତ୍ମରକ୍ଷା ଲାଗି ।

ମାତ୍ର ଆତ୍ମରକ୍ଷାର ପ୍ରଶ୍ନ କାହିଁ ?

ଚରମ ତୃପ୍ତି ଲାଭ ଉତ୍ତାରେ ଯମବାହନ ମୁକ୍ତ ଦେଲା ତାକୁ ଓ ବିଜୟର ଆନନ୍ଦରେ ପ୍ରଫୁଲ୍ଲ ଦୃଷ୍ଟିରେ ଅନାଇ ଦେଖିଲା ବିଚାରୀ ଥର ଥର ଥରୁଛି ।

ଦଶମାସ ଅପେକ୍ଷା କରିବାକୁ ପଡ଼ିନି । ଅବିଳମ୍ବେ ଯମବାହନ ଔରସରୁ ସୃଷ୍ଟ ପୁତ୍ର ସନ୍ତାନଟିଏ ମାତୃଗର୍ଭରୁ ଖସିଆସି ଭୂମିରେ ପଡ଼ି ଗଡ଼ି ଘୁଡ଼ୁଛି; ମୁଣ୍ଡ ତା'ର ମହିଷ ପରି, ଦେହ ଦାନବର, ବିରାଟକାୟ, ଭୟଙ୍କର ଏବଂ ତେଜସ୍କର ।

ଏଣେ ସ୍ତ୍ରୀର ପଳାୟନ ପରେ କପିଳ ସିଂହର ମନସ୍ତାପର ସେ ଶେଷ ନାହିଁ । ପ୍ରାଣପ୍ରିୟା ପତ୍ନୀର ଅନୁପସ୍ଥିତିରେ ସେ କ୍ରମେ ମ୍ରିୟମାଣ ହୋଇ ପଡ଼ିଲା । କାମ ପ୍ରତି ଖୁଷଣ ଘୃଣା ଆସିଗଲା ତା'ର । ପ୍ରେୟସୀ ସ୍ତ୍ରୀକୁ ସେ ପାଗଳ ପ୍ରାୟ ଖୋଜିବାକୁ ଲାଗିଲା ।

ଖୋଜି ଖୋଜି ସେ ବନେ ଯାଇ କପିଳ ମୁନିଙ୍କ ଆଶ୍ରମରେ 'ପହଞ୍ଚି ତାଙ୍କ ନିକଟରେ ନିଜର ଦୁଃଖ ନିବେଦନ କଲା ।

ମହର୍ଷି ତାକୁ ସାନ୍ତ୍ୱନା ଦେଇ କହିଲେ, "ତୁ ଯାହାକୁ ଖୋଜୁଛୁ ମୁଁ ତାକୁ ସିଂହଳ ଦ୍ୱୀପରେ ଦେଖି ଆସିଛି ଓ ତା' ସଙ୍ଗେ ମୋର ସାକ୍ଷାତ ଓ ବାକ୍ୟାଳାପ ବି ହୋଇଛି । ମାତ୍ର ମଇଁଷିରେ ରୂପାନ୍ତରିତ ହୋଇଛି ସେ ।" ସେ କାର୍ତ୍ତିକ ସ୍ୱାମୀ ନିକଟରୁ ପଳାଇ ଆସିଲା ସିଂହଳ ଦ୍ୱୀପକୁ ଓ କାର୍ତ୍ତିକ ମଇଁଷିର ରୂପ ଧାରଣ କଲା ଓ ଏଇ ମଇଁଷି ରୂପ ଧାରଣ କାରଣ ତା'ର କାଳ ହେଲା ଇତ୍ୟାଦି ଯାହା ସେ ଶୁଣିଥିଲେ କପିଳ ସିଂହର ପତ୍ନୀ ନିକଟରୁ, ଧୀରେ ଧୀରେ ବିବୃତ କଲେ । ଯମବାହନ ସେମାନଙ୍କୁ ତ୍ୟାଗ କରି ଯେ ଚାଲିଯାଇଛି, ମୁନି ଅତି ଦୁଃଖର ସହିତ ତା' ମଧ୍ୟ ପ୍ରକାଶ କଲେ ।

ମହର୍ଷି ତାଙ୍କର ବକ୍ତବ୍ୟ ଶେଷକରି ମନ୍ତବ୍ୟ ଦେବାକୁ ଯାଇ କହିଲେ—"ତୁମର ପତ୍ନୀ ଧର୍ଷିତା ହୋଇ ମୁଣ୍ଡ ମହିଷ ଓ ଦେହ ଅସୁର ଭଳି ଏକ ବିଚିତ୍ର ପୁତ୍ର ସନ୍ତାନକୁ ଜନ୍ମ ଦେଇଛି । ସେପରି ଜାରଜ ସନ୍ତାନର ଜନନୀକୁ ତୁମେ ପୁନର୍ବାର ପତ୍ନୀ ରୂପେ ଗ୍ରହଣ କରିବାକୁ ପ୍ରସ୍ତୁତ କି ?"

କପିଳ ସିଂହ ଅଶ୍ରୁଳ କଣ୍ଠରେ କହିଲା,—"ମୋର ପାଶବିକତା ଯୋଗୁଁ ସେ ମୋତେ ଛାଡ଼ି ପଳାୟନ କରିବାରୁ ସିନା ତା'ର ଏ ଦୁର୍ଦ୍ଦଶା ହେଲା । ସେଥିଲାଗି ଦାୟୀ ମୁଁ । ମୋର ଏଇ ପାପ କ୍ଷାଳନ ନିମିତ୍ତ ତାକୁ ପୁନର୍ବାର ପତ୍ନୀରୂପେ ଗ୍ରହଣ କରିବି ଓ ତା'ର ଜାରଜ ସନ୍ତାନର ଜନକ ହେବାରେ ମୋ' ମନରେ କୌଣସି ଦ୍ୱିଧା ନାହିଁ । ଯମବାହନ ମାଆ ପୁଅଙ୍କୁ ତ୍ୟାଗକରି ଚାଲିଯିବା ପରେ ସେମାନେ କିପରି ନିରାଶ୍ରୟ ଭାବେ ରହିଛନ୍ତି ସେଠାରେ—ତା' ମୁଁ କଳ୍ପନାକରି ପାରୁନି । ମୁଁ ଆପଣଙ୍କ ନିକଟରେ ଅନେକ କୃତଜ୍ଞ ଯେଣୁ ମୋ ପତ୍ନୀର ତଥ୍ୟ ପାଇପାରିଲି ଆପଣଙ୍କ ନିକଟରୁ । ଜଣେ ଅତି କାମୁକର କି ଅବସ୍ଥା ହୁଏ ତା'ର ଦୃଷ୍ଟାନ୍ତ ତ ମୁଁ ନିଜେ ।"

ଅସୁର ଭୁଣ୍ଡରୁ ବିବେକର କଥା ଶୁଣି ପରମ ସନ୍ତୋଷ ଲାଭ କରି ମହର୍ଷି କହିଲେ,—"ତମ ଫେରିବାର ପ୍ରତୀକ୍ଷା କରୁଥିଲି । ତମେ ଅବିଳମ୍ବେ ଯାଇ ପତ୍ନୀଙ୍କ ପାଖେ ଉପସ୍ଥିତ ହୁଅ ।"

ସ୍ୱାମୀଙ୍କର ହଠାତ୍ ଆବିର୍ଭାବରେ ପତ୍ନୀ ବିସ୍ମୟରେ ହତବାକ୍ । ସେ ସଙ୍ଗେ ସଙ୍ଗେ ମଇଁଷି ରୂପ ପରିତ୍ୟାଗ କଲେ ସତ, ମାତ୍ର ଅଜ୍ଞାତରେ

ଯାହା କିଛି ଘଟିଯାଇଛି ସେଥିଲାଗି ସେ ଲଜ୍ଜିତ ଓ ସଙ୍କୁଚିତ ହୋଇ ରହିଲେ ନତମସ୍ତକରେ । ଗୋଟିଏ ପ୍ରଶ୍ନ କିନ୍ତୁ ବାରମ୍ବାର ତା'ର ମନ ଚଳେ ଉଦ୍ରେକ ହେଉଥିଲା, ତା' ହେଲା, ସ୍ୱାମୀ ଏଠାରେ ତା'ର ଅବସ୍ଥିତି ସମ୍ପର୍କରେ ଅବଗତ ହେଲେ କିପରି ?

ପତ୍ନୀର ମନୋଭାବ ବୁଝିପାରି କପିଳ ସିଂହ ତା' ହାତ ଧରିନେଇ କହିଲା—"କପିଳ ମୁନିଙ୍କଠାରୁ ଜାଣିପାରିଲି ତୁମେ ଏଠାରେ ଅଛ ବୋଲି ଓ ତୁମକୁ ନେଇ ଯାହା କିଛି ଘଟି ଯାଇଛି ମହର୍ଷି ବିସ୍ତୃତ ଭାବେ ବୁଝାଇ କହିଛନ୍ତି ମୋତେ । ତୁମେ ନିଜକୁ ଦୋଷୀ ମନେକର ନାହିଁ, ପ୍ରକୃତରେ ଦୋଷୀ ମୁଁ । ମୋର ପାଶବିକତା ଅସହ୍ୟ ହେବାରୁ ସିନା ତୁମେ ମୋତେ ଛାଡ଼ି ପଳାଇ ଆସିଲ, ଫଳରେ ଏସବୁ ଦୁର୍ଘଟଣା ଘଟିଗଲା । ନିଜକୁ ତୁମେ ତେଣୁ ଦୋଷୀରଣୀ ଭାବିବା ଭୁଲ୍ । ଯେଣୁ ତମର ଇଚ୍ଛା ବିରୁଦ୍ଧରେ ତୁମେ ଅନ୍ୟର ଭୋଗର ସାମଗ୍ରୀ ହୋଇଚ, ସତୀତ୍ୱ ତମର ଅକ୍ଷୁର୍ଣ୍ଣ ରହିଚ । ସତୀତ୍ୱ ବିଚାର କରାଯାଏ ମନରୁ, ଦେହରୁ ନୁହେଁ । ତେଣୁ ସତୀତ୍ୱ ତୁମର ଅମ୍ଳାନ ରହିଚ । ତମ ମନର ପବିତ୍ରତା ହେତୁ ତୁମେ ସତୀ ଶିରୋମଣି, ତୁମକୁ ପତ୍ନୀ ରୂପେ ଗ୍ରହଣ କରିବାରେ ମୋ' ମନରେ କୌଣସି ଦ୍ୱିଧା ନାହିଁ । ମାତ୍ର ପ୍ରଶ୍ନ ହେଉଚି ମୋ' ପରି ପାଷାଣ୍ଡକୁ ତମେ ସ୍ୱାମୀର ସମ୍ମାନ ଦେବ କି ?"

ସେ ବୁକୁଫଟା କ୍ରନ୍ଦନରେ ପୁଣି ଫାଟି ପଡ଼ି ଲୋଟିଗଲା ସ୍ୱାମୀଙ୍କ ପାଦତଳେ । କପିଳ ସିଂହ ତାକୁ ଦୁଇ ବାହୁରେ ଟେକି ତୋଳିନେଇ ତା' ଆଖିରୁ ଲୁହ ପୋଛିଦେଇ କହିଲା—"ଏକ ନୂତନ ଜୀବନ ଆଜଠୁ ଆରମ୍ଭ କରିବା ଆମେ । ଏକମନ ଏକ ପ୍ରାଣ ହୋଇ । ଦିଅ ମୋ' କୋଳକୁ ତନୟକୁ ମୋର । ଯେତେ ଅଦ୍ଭୁତ ଓ ବିକୃତ ହୋଇଥାଉପଛେ ଶରୀରର ଗଠନ ତା'ର, ସେ ଯେ ମୋର ପୁତ୍ର ।"

ମଇଁଷିର ଶିର ଓ ଅସୁରର ଶରୀର ନେଇ ଏ ଅଦ୍ଭୁତ ଶିଶୁ କି ଗରୁ ହୋଇଚି, କୋଳକୁ ଟେକି ନେଇ ନେଇ କପିଳ ସିଂହ ତା' ଅନୁଭବ କଲା ।

କପିଳ ସିଂହ ଆଜି ଫେରିଲେନି ନିଜ ରାଜ୍ୟକୁ, ସେଇ ସିଂହଳ ଦ୍ୱୀପରେ, କାମାକ୍ଷୀ ନଦୀ ତୀରରେ ନୂତନ ସାମ୍ରାଜ୍ୟ ପ୍ରତିଷ୍ଠା କଲା । ଯା'ର ନାମ ହେଲା ଜେନାବଳୀ ପୁରୀ ଏବଂ ପୁଅର ନାମ ରଖିଲା ମହିଷାସୁର ।

କପିଳ ସିଂହ ପତ୍ନୀ ଓ ପୁଅକୁ ନେଇ ବହୁବର୍ଷ ସୁଖରେ ସଂସାର କଲା ଓ ତା'ର ଦେହାନ୍ତ ପରେ ଯୁବକ ମହିଷାସୁର ସିଂହାସନାରୂଢ଼ ହେଲା ।

ସିଂହାସନାଧୀଶ ହେବା ଉତ୍ତାରେ ମହିଷାସୁରର ବ ତୀବ୍ର ଇଚ୍ଛା ହେଲା ପିତାଙ୍କର ସେ ମଧ୍ୟ ତ୍ରିଭୁବନ ବିଜୟୀ ହେବ ।

ସେ ନିଜର ଆକାଂକ୍ଷା ଯେତେବେଳେ ମାଆଙ୍କ ନିକଟରେ ବ୍ୟକ୍ତ କଲା ସେ ଶୁଣି ମର୍ମାହତ ହେଲେ ଓ ତାକୁ ବୁଝାଇ କହିଲେ—"ତୁ ତୋର ପିତା, ପିତାମହଙ୍କ ଭଳି ଅନ୍ୟାୟ ପଥ ଅନୁସରଣ କରି ଲାଭ କଣ ? କଠୋର ତପସ୍ୟାରେ ଯଦି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିପାରୁ, ତେବେ ତାଙ୍କଠାରୁ ବର ମାଗିବୁ ଜଗତର କଲ୍ୟାଣ ପାଇଁ । ତାମସିକ ମନୋବୃତ୍ତି ତ୍ୟାଗକରି ସାତ୍ତ୍ୱିକ ଭାବାପନ୍ନ ହୁଅ । ଚିନ୍ତା ତୋର ପରିଚ୍ଛନ୍ନ ହେଉ ।"

ମାଆଙ୍କ କଥାଶୁଣି ବିଦ୍ରୂପର ହସ ହସିଲା ମହିଷାସୁର । କହିଲା— "ମୁଁ ମୋ' ନିଜ ସମ୍ପର୍କରେ ହିଁ ଚିନ୍ତା କରୁଛି, ଜଗତ ସଂପର୍କରେ ଚିନ୍ତା କରିବାକୁ ମୋର ବେଳ କାହିଁ ? ତିନି ଭୁବନରେ ନିଜକୁ ପ୍ରତିଷ୍ଠିତ କରିବାକୁ ଚାହେଁ ମୁଁ । ତା'ଦ୍ୱାରା କାହାର କଣ କ୍ଷତି ହେବ, ସେ ସମ୍ବନ୍ଧରେ ଭାବିବାକୁ ବେଳ କାହିଁ ମୋର ? ତୁମର ଉପଦେଶ ମୁଁ ଗ୍ରହଣ କରିପାରୁନି ।"

ଅବାଧ୍ୟ ଦୁର୍ଦ୍ଧର୍ଷ ସନ୍ତାନକୁ ବୁଝାଇ ସେ କିଛି ଲାଭ ନାହିଁ । ତା' ଉପଲବ୍ଧି କରିପାରିଲେ ମା । ନୀରବ ରହିବା ଶ୍ରେୟ ମଣିଲେ ।

ଦୀର୍ଘ ଚଉଦ ବର୍ଷ କାଳ କଠୋର ତପସ୍ୟାରେ ନିମଗ୍ନ ହେଲା ମହିଷାସୁର । ଅଗ୍ନି ଜଳୁଛି ଚତୁର୍ଦ୍ଦିଗରେ, ମଧ୍ୟସ୍ଥଳରେ ତପୋମଗ୍ନ ସେ, ସ୍ଥିର, ଅବିଚଳିତ ।

ତା'ର ଏ କଠୋର ତପସ୍ୟାରେ ପ୍ରମାଦ ଗଣିଲେ ଇନ୍ଦ୍ରାଦି ଦେବତାଗଣ । ଗୁହାରି କଲେ ଯାଇ ବ୍ରହ୍ମାଙ୍କ ନିକଟରେ 'ଆପଣ

ମହିଷାସୁର ତପସ୍ୟାରେ ସନ୍ତୁଷ୍ଟ ହୋଇ ସେ ଯେକୌଣସି ବର ମାଗିଲେ ଯଦି ଦେଇ ବସନ୍ତି, ତେବେ ବିପର୍ଯ୍ୟୟ ଘଟିବ ଆମ୍ଭମାନଙ୍କର, ତ୍ରିଭୁବନ ବିଜୟୀ ହେବାର ଅଭିଳାଷ ନେଇ ସେ ତପସ୍ୟାରେ ବସିଛନ୍ତି । ଆପଣଙ୍କର ବରଦାନ ଫଳରେ ଯଦି ତା'ର ଅଭିଳାଷ ପୂର୍ଣ୍ଣ ହୁଏ, ତେବେ ଆମ୍ଭମାନଙ୍କର ସ୍ୱର୍ଗଚ୍ୟୁତ ହେବା ନିଶ୍ଚିତ ।'

"ମୁଁ ବରଦାନ କଲାବେଳେ କେବେ ବିଘ୍ନରହୀନ ହେବ ବୋଲି ଭାବୁଛ ?" ବୁଝାଇ କହୁଛନ୍ତି ବ୍ରହ୍ମା ଦେବତାମାନଙ୍କୁ—"ସେ ତପସ୍ୟାରେ ଯେ ସିଦ୍ଧିଲାଭ କରିବ ତା'ର କିଛି ମାନେ ଅଛି ? ସେ ତପସ୍ୟାର ଚରମ ଅବସ୍ଥାରେ ତ ଏଯାଏ ପହଞ୍ଚିନି ।"

ଆଶ୍ୱସ୍ତ ହେଲେ କି ଦେବତାମାନେ ବ୍ରହ୍ମାଙ୍କ ବାଣୀରେ ? ଚୁପଚାପ୍ ଫେରି ଆସିଲେ ।

ମହିଷାସୁର ତପସ୍ୟାରେ ସିଦ୍ଧିଲାଭ କରିବାରୁ ବ୍ରହ୍ମା ଅବିଳମ୍ବେ ଆସି ଉଭା ହୋଇଗଲେ ତା' ସମ୍ମୁଖରେ ଓ ସମ୍ବୋଧନ କରି ତାଙ୍କୁ କହିଲେ—"ମହିଷା ଏବେ ଦୃଷ୍ଟି ମେଲି ଦେଖ, ମୁଁ ବ୍ରହ୍ମା, ତୋ' ତପସ୍ୟାରେ ସନ୍ତୁଷ୍ଟ ହୋଇ ତୋ' ସମ୍ମୁଖରେ ଆସି ଉପସ୍ଥିତ ହୋଇଛି । କି ବର ମାଗୁଛୁ ମାଗ ।"

ମହିଷା ଦୃଷ୍ଟି ମେଲି ଚତୁର୍ମୁଖ ବ୍ରହ୍ମାଙ୍କୁ ଦେଖିଦେଇ ଭାବବିହ୍ୱଳ ହୋଇଗଲା ଓ ଭାବ ଗଦ୍‌ଗଦ କଣ୍ଠରେ କହିଲା—"ଭକ୍ତକୁ କୃପା କରିବେ ଯଦି, ବର ମାଗୁଛି, ମୁଁ ଅମର ଓ ତ୍ରିଭୁବନବିଜୟୀ ହେବି । କଦାପି ରୋଗଗ୍ରସ୍ତ ହେବିନି । ବଜ୍ରସମ ହେବ ଅଙ୍ଗ ମୋର, କୌଣସି ଅସ୍ତ୍ର ଭେଦିବନି ମୋ' ଅଙ୍ଗରେ । ଅଗାଧ ଜଳରେ ବି ସଳିଳସମାଧି ହେବନି ମୋର । ଶୁଣିଛି, ଦୈତ୍ୟମାନଙ୍କୁ ବଧ କରିବାରେ ବିଷ୍ଣୁ ସିଦ୍ଧହସ୍ତ । ବରଦିଅନ୍ତୁ ତାଙ୍କ ହସ୍ତରେ ବି ମୋର ମୃତ୍ୟୁ ହେବନି ଓ 'ହର' ବି ମୋର ପ୍ରାଣ ହରଣ କରି ପାରିବେନି ।"

'ତୋର ସକଳ ମନସ୍କାମନା ପୂର୍ଣ୍ଣ ହେବ, କେବଳ ଗୋଟିଏ ବ୍ୟତୀତ ।' ବ୍ରହ୍ମାଙ୍କ ଓଠରେ ମୃଦୁ ହସର ସ୍ପର୍ଶ ।

ଚମକି ପଡ଼ିଲା ମହିଷାସୁର, ଆତଙ୍କରେ ଦୃଷ୍ଟି ତାର ବିସ୍ଫାରିତ ହୋଇ ଯାଇଛି—'ସେ ଗୋଟିଏ ପୁଣି କ'ଣ ?'

ବ୍ରହ୍ମା ମୁହୂର୍ତ୍ତେ ମୌନ ରହି ମହିଷା ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ—'ଜନ୍ମ ହେଲେ ମୃତ୍ୟୁ ଅନିବାର୍ଯ୍ୟ ।' ତେଣୁ ତୁ ଅମର ହେବୁ ଏପରି ଏକ ଅସମ୍ଭବ ବର ମୁଁ ତୋତେ ପ୍ରଦାନ କରିବି କିପରି ? ମୃତ୍ୟୁ ତୋର ଅବଶ୍ୟମ୍ଭାବୀ, ଅବଶ୍ୟ କୌଣସି ରମଣୀ ହସ୍ତରେ, ପୁରୁଷ କର୍ତ୍ତୃକ ନୁହେଁ ।'

ଶୁଣି ନିର୍ଲଜ ମହିଷା ଅଟ୍ଟହାସ୍ୟ କରୁ କରୁ ବିକୃତ କଣ୍ଠରେ କହିଲା —'ସେପରି ଏକ ମୃତ୍ୟୁକୁ ସ୍ୱାଗତ କରୁଛି ମୁଁ । ନାରୀର ସୌନ୍ଦର୍ଯ୍ୟ ଓ ଯୌବନ ନିରୀକ୍ଷଣ କରୁ କରୁ ଯଦି ମୃତ୍ୟୁ ହୁଏ ମୋର, ତେବେ ଧନ୍ୟ ହେବି, ଧନ୍ୟ ହେବି ମୁଁ । ଅମର ହେବା ଆକାଂକ୍ଷାକୁ ତେଣୁ ଜଳାଞ୍ଜଳି ଦେଉଛି ।'

ଶୁକଦେବ ନିଜର ବକ୍ତବ୍ୟ ଶେଷରେ ମୁହୂର୍ତ୍ତେ ନୀରବ ରହି ପୁନଶ୍ଚ କହିଲେ—'ସ୍ୱେ ତ ଶୁଣିଲ ମହିଷାସୁରର ଜନ୍ମ, ତପସ୍ୟା ଏବଂ ବର ଲାଭର ବୃତ୍ତାନ୍ତ, ସ୍ୱା'ପରେ କହିବି ମୁଁ ତା'ର ବଧ ସମ୍ପର୍କରେ । ବେଶ୍ ଚିତ୍ତାକର୍ଷକ ସେ କାହାଣୀ ।'



# ଶକ୍ତିରୂପେଣ ସଂସ୍ଥିତା

ଶ୍ରୀମତୀ କାକଲୀ ପାଲ୍

ମହିଷାସୁରର ଅତ୍ୟାଚାରରେ ଅତିଷ୍ଠ ହୋଇ ଇନ୍ଦ୍ରାଦି ଦେବଗଣ ଯେତେବେଳେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ଏହି ଦାନବର ବିନାଶ କିପରି ହେବ ସେହି ବିଷୟରେ ଚିନ୍ତା କରିବାକୁ ଅନୁରୋଧ କଲେ, ସେତେବେଳେ ଏହି ତିନ ଦେବଙ୍କ ଚକ୍ଷୁରୁ ଅଗ୍ନିଶିଖା ନିର୍ଗତ ହେଲା । ଆଉ ସେହି ପ୍ରଚଣ୍ଡ ଅଗ୍ନିଶିଖା ମଧ୍ୟରୁ ଜନ୍ମନେଲେ ମହାଶକ୍ତିର ଅଧିକାରିଣୀ ତେଜସ୍ୱିନୀ, ଶକ୍ତିମୟୀ ମହାମାୟା ଚଣ୍ଡୀ । ମହିଷାସୁରକୁ ବିନାଶ କରିବା ପାଇଁ ଜନ୍ମ ନେଲେ ମହାଦେବୀ ଶ୍ରୀ ଶ୍ରୀ ଦୁର୍ଗା ।

ଏହାପରେ ଦୁର୍ଗତିନାଶିନୀ ମହିଷାସୁରର ବିନାଶ କରିବାର ଉଦ୍ଦେଶ୍ୟ ନେଇ ହିମଗିରି ପର୍ବତରେ ଅରଣ୍ୟ ମଧ୍ୟରେ ବାସ କରିବାକୁ ଲାଗିଲେ । ତାଙ୍କର ପ୍ରଚଣ୍ଡ କୋପଦୃଷ୍ଟି ମହିଷାସୁରର ରାଜଧାନୀ ନେନାବଳୀପୁର ଉପରେ ପଡ଼ିବାରୁ ସିଂହଦୁଆରର ଜଗତି ଭାଙ୍ଗି ପଡ଼ିଲା । ସେଠାରେ ହଠାତ୍ ଅଦ୍ଭୁତ ଅଗ୍ନି ଉଦ୍‌ଗୀରଣ ହୋଇ ମହିଷାର ରାଜ-ପ୍ରାସାଦ ଧ୍ୱଂସାଭିମୁଖୀ ହେଲା । ଅନନ୍ତରେ ପ୍ରବଳ ବୃଷ୍ଟିପାତ ହୁଅନ୍ତେ ଘରଗୁଡ଼ିକ ଭାଙ୍ଗି ଗ୍ରାମଗୁଡ଼ିକ ନିଶ୍ଚିହ୍ନ ହେବାକୁ ବସିଲା । ଏହିପରି ନଗରରେ ନାନା ପ୍ରକାରର ଉତ୍ପାତ ଦେଖାଦେଲା । ଏସବୁ ସତ୍ତ୍ୱେ ମହିଷାସୁର ଏସବୁ କାହିଁକି ଘଟୁଛି ବୁଝିପାରନ୍ତି ନାହିଁ । ଶ୍ରୀମୟୀ ଦେବୀଙ୍କର ଅପୂର୍ବ ରୂପ ଲାବଣ୍ୟର କଥା ଶୁଣି କ୍ଷୁଧାତୃଷ୍ଣା ଭୁଲିଗଲା । କିପରି ସେହି ରୂପବତୀ ତରୁଣୀକୁ ନିଜର ଅଙ୍କଶାୟିନୀ କରିବ ସେହି ଚିନ୍ତାରେ ବାତୁଳ

ପ୍ରାପ୍ତ ହେଲା । ଅନେକ ରାତି ଅନିଦ୍ରାରେ କଟାଇଲା । ଶେଷରେ ଦାନବ ଚଣ୍ଡ ଓ ମୁଣ୍ଡକୁ ଦୂତ ରୂପରେ ଶକ୍ତିମୟୀ ଦୁର୍ଗାଙ୍କ ନିକଟକୁ ପ୍ରେରଣ କଲା । କିନ୍ତୁ ସେ ଦୁହେଁ ପ୍ରଭାତରୁ ଯାଇ ତା' ପରଦିନ ପ୍ରଭାତ ପର୍ଯ୍ୟନ୍ତ ନ ଫେରିବାରୁ ମହିଷାର ଆକୁଳତା ବୃଦ୍ଧି ପାଇଲା । ତେଣୁ ସେହିଦିନ ପ୍ରଭାତରୁ ଉଠି ସେ ଶୁମ୍ଭ ଓ ନିଶୁମ୍ଭ ଦୁଇ ଦାନବଙ୍କ ନିକଟରେ ଯାଇ ଉପସ୍ଥିତ ହେଲା । ଶୁମ୍ଭ ନିଶୁମ୍ଭ ଉଭୟେ ମହିଷାକୁ ଆଲିଙ୍ଗନ କରି ତାକୁ ବିଷାଦର କାରଣ ପଚାରିଲେ । ମହିଷା କହିଲା—'ଚଣ୍ଡ ଓ ମୁଣ୍ଡ ମୋତେ ସମ୍ବାଦ ଦେଲେ,ଯେ ରତ୍ନଗିରିର ଶିଖରଦେଶରେ ଦିବ୍ୟସୁନ୍ଦରୀ କୁମାରୀ କନ୍ୟାଟିଏ ବିହାର କରୁଛି । ସେହି କନ୍ୟାର ରୂପଗୁଣ ବିଷୟ ଶୁଣି ମୁଁ ତାହାକୁ ମୋର ରାଣୀ କରିବା ଉଦ୍ଦେଶ୍ୟରେ ଚଣ୍ଡମୁଣ୍ଡ ଦୁଇଭାଇଙ୍କୁ ସେହି କନ୍ୟାକୁ ଧରି ଆଣିବାକୁ ପଠାଇଥିଲି । ଏ ପର୍ଯ୍ୟନ୍ତ ସେମାନଙ୍କର ଦେଖା ନାହିଁ । ସେମାନେ ତା'ର ରୂପରେ ମୋହିତ ହୋଇ ତାହା ସହିତ ଆଉ ରମଣ କରୁନାହାଁନ୍ତି ତ ? ଉଦ୍‌ବେଗରେ ମୋର ରାତିରେ ନିଦ୍ରା ହୋଇ ନାହିଁ ।''

ଶୁମ୍ଭ ନିଶୁମ୍ଭ ଏହା ଶୁଣି କହିଲେ—'ହେ ରାଜନ୍ ପରସ୍ତ୍ରୀକୁ ଇଚ୍ଛା କଲେ ଅଜସ୍ର ଦୁଃଖ ମିଳେ,। ଏପରି ପାଗଳାମୀ ଆପଣଙ୍କୁ ଶୋଭା ପାଏନା । ଆପଣ ଚକ୍ରବର୍ତ୍ତୀ ରାଜା ହୋଇ ସାମାନ୍ୟ ନାରୀଟିଏ ପାଇଁ ଏପରି ଅଧୈର୍ଯ୍ୟ ହେବା ଉଚିତ୍ ନୁହେଁ, ଆପଣ ଅନ୍ତଃପୁରକୁ ବିଜେ କରନ୍ତୁ । ଆମେ ସେହି ଅରଣ୍ୟକୁ ଯାଇ ଦେଖି ଆସି ସମ୍ବାଦ ଦେବୁ ।'

ଏହିପରି କହି ମହିଷାସୁରକୁ ପ୍ରେରିଇ ଦେଇ ଦୁଇ ଦୈତ୍ୟ ଦୁଇଟି ବିରାଟକାୟ ଗଦା ଧାରଣ କରି ରତ୍ନଗିରି ଉଦ୍ଦେଶ୍ୟରେ ଯାତ୍ରା କଲେ । କିନ୍ତୁ ମନେ ମନେ ଚିନ୍ତାକଲେ, ଗୋଟିଏ ଛାର ସ୍ତ୍ରୀଲୋକ ପାଇଁ ଇଏ ଆମକୁ ପଠାଇଲା । ଏକଥା ତ୍ରିପୁରରେ ଆମପାଇଁ ମଧ୍ୟ ଲଜ୍ଜାର କାରଣ ହେବ । ମହିଷାସୁରର ଏ କି ମତିଭ୍ରମ ! ଏ କଥା ଚିନ୍ତାକରି ଅରଣ୍ୟ ଭିତରକୁ ପ୍ରବେଶ କଲେ । ବନ ମଧ୍ୟରେ ସମସ୍ତ ଅପୂର୍ବ କଥା ଦୃଷ୍ଟିଗୋଚର ହେଲା । ସେଠାରେ ସବୁ ଜୀବମାନେ ହିଂସାଭାବ ପରିହରି ପରସ୍ପର ସହିତ ମିତ୍ରତା ଆଚରଣ କରୁଛନ୍ତି । ଆମୋଦିତ ମଳୟ ପବନ ପ୍ରବାହିତ ହେଉଛି ।

ଦୈତ୍ୟ ଦୁହେଁ ଏହାକୁ ସବୁ ଭ୍ରୂକ୍ଷେପ ନକରି ଆଗକୁ ଗ୍ଭଲିଲେ । କେହି-ହେଲେ ଦୃଷ୍ଟିରେ ମଣ୍ଡଲେ ନାହିଁ । କିଛିଦୂର ଯିବାପରେ ଦେଖିଲେ ଏକ ଶଶିମୁଖୀ ସୁନ୍ଦରୀ କନ୍ୟା ବସି ରହିଛି । ଏହି ସୁନ୍ଦରୀ କନ୍ୟାକୁ ଦେଖି ବେନି ଦୈତ୍ୟ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ଦେଖିଲେ ସାଙ୍ଗରେ କେହି ନାହିଁ । ଏକାକିନୀ ନାରୀ ଅରଣ୍ୟ ମଧ୍ୟରେ ନିର୍ଭୟରେ ବସି ରହିଛି । ଏହି ଏକାକିନୀ ସାମାନ୍ୟ ନାରୀଟିକୁ ଏହି ଭୀଷଣ ଦୈତ୍ୟ ଦ୍ୱୟ କାହିଁକି ବା ଭୟ କରନ୍ତେ ! ନିର୍ଭୟରେ ଉଭୟ ପର୍ବତ ଉପରକୁ ଉଠିଲେ ।

ପୃଥିବୀର ଅଳଙ୍କାର ସଦୃଶ୍ୟ ଏହି ଶ୍ରୀମୟୀ ନାରୀକୁ ଦେଖି ଏ ଦୁହେଁ ମୋହିତ ହୋଇଗଲେ । ଏହି ସମୟରେ ଶ୍ରୀଦୁର୍ଗା ବିଶ୍ୱରୂପରେ ଥିଲେ । ଏ ଦୁହିଁଙ୍କୁ ଦେଖି ବୀରମୂର୍ତ୍ତି ତ୍ୟାଗ କରି ଶାନ୍ତମୂର୍ତ୍ତି ଧାରଣ କଲେ । ତାଙ୍କୁ ହିନବସ୍ତ୍ର, ସୁନ୍ଦର ଆଭରଣ ଧାରଣ କରି ଦେବୀ ବ୍ରୀଡ଼ାବନତ ମୁଖ ତୋଳି ବେନି ଦୈତ୍ୟଙ୍କୁ ଗ୍ଭହିଁ ଦିଅନ୍ତେ ଅସୁର ଦ୍ୱୟ ସୌନ୍ଦର୍ଯ୍ୟ ପାଶରେ ବନ୍ଦୀ ହେଲେ । ବିମୋହିତ ସେ ଦୁହେଁ ଦେବୀଙ୍କୁ ଜିଜ୍ଞାସା କଲେ—'ହେ ଦେବୀ, କେଉଁଠାରୁ ତୁମେ ଆସିଛ ?' ଦୁର୍ଗା କହିଲେ, ମୋର ଜନ୍ମ ସ୍ଥାନ ମେରୁସ୍ଥଳୀ । କର୍ମ ଦୋଷରୁ ମୋର ଘରଦ୍ୱାର ନାହିଁ । ତେଣୁ ମନଦୁଃଖରେ ମୁଁ ବନଗାମୀ ହେଲି । ବ୍ୟାଘ୍ର ଭଲ୍ଲୁକ ମୋତେ ଭକ୍ଷଣ କରି ବୃଥା ଜୀବନକୁ ଶେଷକରି ଦିଅନ୍ତୁ । ଏହି ଇଚ୍ଛା ରଖି ମୁଁ ଅରଣ୍ୟରେ ବସବାସ କରୁଛି । ଏ ଜୀବନ ମୋର ଆବଶ୍ୟକ ନାହିଁ, ମନ୍ଦ ଭାଗ୍ୟ ହେତୁ ମୁଁ ମୋର ପିତା ମାତାଙ୍କୁ ମଧ୍ୟ ଦେଖିନାହିଁ ।

ଏହା ଶୁଣି ଶୁମ୍ଭ ନିଶୁମ୍ଭ ନମ୍ରତାର ସହିତ କହିଲେ—'ଚଣ୍ଡମୁଣ୍ଡ ତୁମକୁ ନେବାକୁ ଆସିଲେ । ତୁମେ ତାଙ୍କ ସହିତ ଗଲ ନାହିଁ କାହିଁକି ? ମହିଷାସୁର ପରି ଚକ୍ରବର୍ତ୍ତୀ ରାଜାଙ୍କୁ ପ୍ରତାରିତ କରିବା କ'ଣ ଉଚିତ କଥା ?'

ଶ୍ରୀ ଦୁର୍ଗା କହିଲେ—'ମିଥ୍ୟାଠାରୁ ମହାପାପ ଆଉ ନାହିଁ । ମିଥ୍ୟା କାହିଁକି କହୁଛ ? ମହିଷାସୁରଙ୍କର ଯଦି ମୋଠାରେ କାର୍ଯ୍ୟ ଥାଆନ୍ତା ତେବେ ସୈନ୍ୟବଳ ସହିତ ରାଜା ନିଜେ ଏଠାକୁ ଆସିଥାଆନ୍ତେ । ଦୂତ ସହିତ ମୁଁ କାହିଁକି ଯିବି ? ତୁମେତ ମୋର ରୂପ ଗୁଣ ଦେଖିଲ । ରାଜାଙ୍କ

ଆଗରେ ଯାଇ କୁହ । ହଁ, କଏ ଦୁଇଜଣ ଆସିଥିଲେ, ମୁଁ ତାଙ୍କ ନାମ ଜାଣିନାହିଁ । ସେମାନେ ମୋର ଧର୍ମନାଶ କରିବାକୁ ବସିଥିଲେ । ମୋର କେଶ ଧରିବାକୁ ହାତ ବଢ଼ାଇବାରୁ ଅଦ୍ଭୁତ ଭାବରେ ମୃତ୍ୟୁ ବରଣ କଲେ । ଧର୍ମ ଛାଡ଼ିଲେ ପ୍ରାଣ ଯିବା ସ୍ୱାଭାବିକ । କିନ୍ତୁ ତୁମେ ଦୁହେଁ ମୋତେ ଧାର୍ମିକ ପୁରୁଷ ପରି ଦେଖାଯାଉଛ । ମୁଁ ହତଭାଗୀ ନାରୀ ଏହି ଅରଣ୍ୟରେ ପଡ଼ିଛି । ମୋତେ ଉଦ୍ଧାର କର ।'

ଏକଥା ଶୁଣି ଅସୁର ଦ୍ୱୟ କହିଲେ— ଆମର ମହାଭାଗ୍ୟ । ତୁମର ହୀନଭାଗ୍ୟ ନୁହେଁ । ତୁମେତ ତ୍ରିଜଗତରେ ଉତ୍ତମ ସ୍ତ୍ରୀ । ତୁମ ସମ୍ମୁଖରେ ଆମେ ଆମର ବଂଶାବଳୀ ବର୍ଣ୍ଣନା କରିବୁ । ମହାପ୍ରତାପୀ ତାରକାସୁରର ପଣନାତି ମହାଦାସ ନୃପତି ଆମର ପିତା । ଆମେ ପରାକ୍ରମୀ, ଆମେ ପରାକ୍ରମରେ ଇନ୍ଦ୍ରଙ୍କୁ ମଧ୍ୟ ଜିଣିପାରୁ, କେବଳ ବିଷ୍ଣୁଙ୍କୁ ଆମର ଭୟ । ହେ ଦେବି ! ଆମେ ଘୋର ତପସ୍ୟା କରିଥିଲୁ ସାଗର ସଙ୍ଗମରେ ବସି । ଏକ ଆସନରେ ଏକମନରେ ବସି ଦିବାରାତ୍ରୀ ତପସ୍ୟା କଲୁ ନବସହସ୍ର ବର୍ଷ ଧରି । ଆମର ମାଂସ ଚର୍ମ ସବୁ ମିଳାଇଗଲା । କେବଳ ଅସ୍ଥି ମାତ୍ର ଶରୀରରେ ବାକି ରହିଥିଲା । ପୁନଶ୍ଚ ଆମର କାୟା ସୃଷ୍ଟି ହେଲା । ନୂତନ ମୁଖ, ନାସିକା, ପାଦ, ପାଣି ପ୍ରଭୃତିର ସୃଷ୍ଟି ହେଲା ।

ଏହିପରି ତପସ୍ୟା କରିବା ପରେ, ବ୍ରହ୍ମା ଆମ ଉପରେ ପ୍ରସନ୍ନ ହେଲେ । ହଂସ ବାହାନରେ ବିଜେ ହୋଇ ବିଧାତା କହିଲେ--କି ବର ମାଗୁଛ ମାଗ' । ଆମେ କହିଲୁ, 'ବିଷ୍ଣୁ ଆମର ପରମ ଶତ୍ରୁ । ଯୁଗେ ଯୁଗେ ଅବତାର ଗ୍ରହଣ କରି ସେ ଆମ ଦାନବ କୁଳକୁ ବିନାଶ କରିଛନ୍ତି, ତେଣୁ ଆମର ଯେପରି ପୁରୁଷ ହସ୍ତରେ ମୃତ୍ୟୁ ନହୁଏ, ଏହି ବରଦିଅ ।' ବ୍ରହ୍ମା ପୁନଶ୍ଚ ଏହା ଶୁଣି କହିଲେ—'ବିଷ୍ଣୁଙ୍କ ମାୟା ତୁମେ ଜାଣ ନାହିଁ । ସେ ସ୍ତ୍ରୀ ରୂପ ଧାରଣ କରି ବହୁ ଦୈତ୍ୟ ନାଶ କରିଛନ୍ତି । ବୈଲୋଚନ ଦୈତ୍ୟକୁ ତା'ର ସ୍ତ୍ରୀ ମାଳତୀ ରୂପରେ ସେବା କରୁ କରୁ ତା'ର କେଶରୁ ଉକୁଣୀ ମାରୁ ମାରୁ ତାର କର୍ମବାଳ ଉପାଡ଼ି ଦେବାରୁ ବୈଲୋଚନର ମୃତ୍ୟୁ ଘଟିଲା—'ଧାତାଙ୍କ ମୁଖରୁ ଏପରି କଥା ଶୁଣି ଆମେ ତାଙ୍କୁ କହିଲୁ, ସ୍ତ୍ରୀ ହାତରେ ଆମେ ଯେପରି ନିହତ ନ ହେଉ ଏହି ବରଦିଅ । ତେଣୁ

ବ୍ରହ୍ମା ଆମକୁ ଏପରି ବର ପ୍ରଦାନ କଲେ ଯେ ତୁମେ ଦୁହେଁ ସ୍ତ୍ରୀ କିମ୍ବା ପୁରୁଷ କାହାରି ହାତରେ ମୃତ୍ୟୁବରଣ କରିବ ନାହିଁ ।'

ମହାମାୟା ଏକଥା ଶୁଣି କହିଲେ 'ତୁମେ ଏହି ବର ଫଳରେ ଯୁଗ ଯୁଗ ଧରି ଏହି ମହୀମଣ୍ଡଳରେ ବଞ୍ଚି ରହିବ ଏବଂ ଅନେକ ସ୍ତ୍ରୀଙ୍କୁ ପତ୍ନୀ ରୂପରେ ଗ୍ରହଣ କରିବ । ମୁଁ ତୁମକୁ ବିବାହ କଲେ ଅନେକ ସପତ୍ନୀଙ୍କ ସହିତ ମୋତେ ଘର କରିବାକୁ ପଡ଼ିବ ।' ଶୁମ୍ଭ ନିଶୁମ୍ଭ କହିଲେ —ଆମେ ପୁଣି ବ୍ରହ୍ମାଙ୍କୁ ଆମର ମୃତ୍ୟୁଭେଦ କଥା ପଚାରିବାରୁ ବ୍ରହ୍ମା କହିଲେ ଆମେ ଦୁହେଁ ଏକ ଅପରର ଶିରରେ ହସ୍ତ ସ୍ଥାପନ କଲେ ଆମର ମୃତ୍ୟୁ ହେବ । କିନ୍ତୁ ଏ ରହସ୍ୟ ଆମେ ତୁମ ନିକଟରେ ପ୍ରକାଶ କଲୁ । ତୁମେ ଯେପରି କାହାରି ଆଗରେ ପ୍ରକାଶ ନ କର । ତେଣୁ ଆମେ ମହା ପରାକ୍ରମୀ । ଆମଠାରୁ କେହି ଅଧିକ ବଳବାନ୍ ଏ ପୃଥିବୀରେ ନାହାଁନ୍ତି, ଆମର ବାହୁବଳରେ ମହିଷାସୁର ରାଜପଦ ପାଇଛି । ଆମେ ବରୁଣର ଅଷ୍ଟନିଧି ଓ କୁବେରର ସମସ୍ତ ଧନ-ସମ୍ପତ୍ତିକୁ ଅକ୍ତିଆର କରିଛୁ । 'ହେ ଦେବୀ ! ତୁମେ ଯଦି ଆମ ପ୍ରତି ସଦୟ ହୋଇଛ ତେବେ ଆମର ପତ୍ନୀ ହେବକି ?' ଦୁର୍ଗା କହିଲେ, 'ହେ ବୀର ! ତୁମେ ତୁମର ମିଷ୍ଟ ବଚନରେ ମୋତେ ବଶ କରିପାରିଛ । ମୁଁ ଏ ରାଜ୍ୟର ରାଜାକୁ ଭୁଲିଗଲି, ବନ୍ଧୁ-ବାନ୍ଧବ ସମସ୍ତଙ୍କୁ ତ୍ୟାଗ କରି ତୁମକୁ ପତି ରୂପରେ ବରଣ କରିବି । ଧନ ରତ୍ନରେ ମୋର ଶ୍ରଦ୍ଧା ନାହିଁ ! ମୁଁ ନୃତ୍ୟଗୀତ ଭଲପାଏ ।'

ଏ କଥା ଶୁଣୁ ଶୁଣୁ ଅସୁର ଦ୍ୱୟ ଉଲ୍ଲସିତ ହୋଇ ଉଠିଲେ । କହିଲେ ଯେ ସେମାନେ ପଞ୍ଚତାଳ ଏଧ୍ୟୋର୍ଣ୍ଣ ମୂର୍ଚ୍ଛନା, ତାଣ୍ଡବ ନୃତ୍ୟ ସବୁଥିରେ ପାରଦର୍ଶୀ । ଦୁର୍ଗା କହିଲେ, 'ତୁମେ ତ ସମସ୍ତ ଜାଣିଛ ବୋଲି କହୁଛ । ଠିକେ ତାଣ୍ଡବ ନୃତ୍ୟ କର ମୁଁ ଦେଖିବି ।' ଦୁଇ ଦୈତ୍ୟ ସେତେବେଳକୁ ମଦନଙ୍କର କାମ ବାଣରେ ବିଦ୍ଧ, ବିମୋହିତ ଅବସ୍ଥା, ଦେବୀଙ୍କ ବଚନ ସତେକି ସୁଧା ବର୍ଷଣ । ଦୁହେଁ ଅତି ଆନନ୍ଦରେ ନୃତ୍ୟ ଗୀତରେ ନିମଜ୍ଜିତ ହୋଇଗଲେ । ତାଙ୍କର ଏ ପ୍ରକାର ରଙ୍ଗ ନୃତ୍ୟ କୌତୁକ ଦେଖି ଶଶିମୁଖୀ ଶାକମ୍ଭରୀ କରତାଳି ଦେଇ ହସୁଥାନ୍ତି । ସମସ୍ତ ରସର ସଂଯୋଗରେ ଦୈତ୍ୟ ଦୁହେଁ ମତ୍ତ ହୋଇ ନୃତ୍ୟ କରୁଥାଆନ୍ତି ।

ଦେବୀଙ୍କର ଖିଲ ଖିଲ ହସ ସାଙ୍ଗକୁ ନୃତ୍ୟରେ ମଜ୍ଜି ଯାଇ ଉଭୟେ ଆତୁର ନୃତ୍ୟ କରୁଥାଆନ୍ତି । ଦେବୀ ତାଙ୍କୁ ଦେଖି ଚକିତ । ଉଲ୍ଲସିତ ହସତ ଫୁଆର ବଣ୍ଣହୋଇ ପଡୁଥାଏ ଶିଖରୀ ଦଶନାଙ୍କର ଦଶନରୁ । ସେହି ହସ ଦେଖୁ ଦେଖୁ ଆତୁର ଦ୍ୱିଗୁଣିତ ଆନନ୍ଦରେ ନୃତ୍ୟଗୀତ କରିବାକୁ ଲଗିଲେ ଦୁଇ ଅସୁର । ଏହା ଦେଖି ଉମା କହିଲେ—ତୁମର ସାକ୍ଷାତ ଶୁଭ ବେଳାରେ ପାଇଛି, ଜାଣିଲି ଯେ ନୃତ୍ୟ ଗୀତ ଆଦିରେ ତୁମେ ଅତ୍ୟନ୍ତ ପାରଦର୍ଶୀ, ଆଜିଠାରୁ ତୁମେ ଦୁହେଁ ମୋର ପତି ହେଲ, ତୁମ ସହିତ ମୁଁ ସାରା ଜୀବନ କଟାଇବି । ତୁମର ନୃତ୍ୟଗୀତ ଦେଖି ମୁଁ ପ୍ରୀତ ହେଲି । ଏଥର ଏ ନୃତ୍ୟ ନକରି ବିଚିତ୍ର ନୃତ୍ୟ କର । ଏକଥା ଶୁଣିବା ମାତ୍ରେ ଦୁଇ ଦାନବ ଶରୀରକୁ ଓଲଟାଇ ତଳକୁ ଶିରକରି ନୃତ୍ୟ ଭଙ୍ଗୀରେ ଦୋହଲିବାକୁ ଲଗିଲେ । ପୁଣି ଦେବୀ ଅବରୋହଣ ମୂର୍ଚ୍ଛନା ଦେଖିବାକୁ ଇଚ୍ଛା ପ୍ରକାଶ କଲେ ଓ କହିଲେ, 'ତୁମେ ଏଥର ଅବରୋହଣ ମୂର୍ଚ୍ଛନା ଦେଖାଅ ଓ ଜଣେ ଅପରଜଣଙ୍କର ଶିରରେ ହସ୍ତ ଦେଇ ନୃତ୍ୟ କର ।'

ବ୍ରହ୍ମାଙ୍କ ବର କଥା ବିସ୍ମରଣ ହେଲା । ଦୁଇ ଦୈତ୍ୟ କାମନାରେ ଅନ୍ଧ ହୋଇ ଏକ ଆରେକର ଶିରରେ ହସ୍ତ ନେଇ ରଖିଲେ । ହଠାତ୍ ପ୍ରଳୟାଗ୍ନି ସଦୃଶ ଦୁହେଁ ଜଳି ଉଠିଲେ । ଏହିପରି ଭାବରେ ଦୁଇ ଦୈତ୍ୟଙ୍କର ବିନାଶ ହେଲା । ଯେତେବେଳେ ଅନ୍ତିମ ସମୟ ଉପସ୍ଥିତ ହୁଏ ସେତେବେଳେ ଏହିପରି ଭାବରେ ମୃତ୍ୟୁଭେଦ ମଧ୍ୟ ଜଣା ପଡ଼ିଯାଏ । ନିଜର ମୃତ୍ୟୁଭେଦ ଜାଣି ମଧ୍ୟ ବେନି ଦାନବ କାମାନ୍ଧ ହୋଇ ନିଜେ ନିଜେ ମୃତ୍ୟୁ ବରଣ କଲେ । ପାପର ବିନାଶ ହେଲା । ତମସାମୟ ରଜନୀର ପରିସମାପ୍ତି, ଦେବତାମାନେ ସ୍ୱ-ସ୍ୱ ନୟନରେ ଶୁମ୍ଭ ନିଶୁମ୍ଭଙ୍କର ମୃତ୍ୟୁ ଦେଖି ଆନନ୍ଦରେ ସ୍ୱର୍ଗ ତ୍ୟାଗକରି ଶ୍ରୀ ଦୁର୍ଗାଙ୍କ ନିକଟରେ ଉପସ୍ଥିତ ହେଲେ ।

ମହାମାୟା ଶ୍ରୀ ଦୁର୍ଗାଙ୍କ ନିକଟରେ ପଞ୍ଚାଙ୍ଗ ବିନୟର ସହିତ କହିଲେ —'ମା'ଗୋ ଜଗତଜନନୀ ! ଏବେ ସ୍ୱର୍ଗପୁରର ବାଟ ପରିଷ୍କାର ହୋଇଗଲା, ଏଥର ଦେବରାଜ ଇନ୍ଦ୍ର ସ୍ୱର୍ଗର ସିଂହାସନରେ ପୁଣି ଅଧିଷ୍ଠିତ ହେବେ । ଏ ସବୁ ତୋର ପ୍ରସାଦରୁ ସମ୍ଭବ ହେଲା ମା' ! କେବଳ ତୁ ହିଁ

ତିନିଲୋକର ଦୁର୍ଗତି ଦୂର କରିବୁ । ଦେବତାମାନଙ୍କର ଦୁଃଖ ତ ଦୂର କରିଛୁ, ସେହିପରି ସମସ୍ତଙ୍କ କଷ୍ଟ ଲାଘବ କର ।

'ହେ କାତ୍ୟାୟନୀ ! ହେ ଶିବାନୀ ! ତୋ'ର ଦର୍ଶନରେ ଯମ ଭୟ ଦୂରହୁଏ । ସହସ୍ର ଭୁଜରେ ସହସ୍ର ଅସ୍ତ୍ରକୁ ଧାରଣ କରି ତୁ ଦୁଷ୍ଟ ନିବାରଣ କରୁ, ସନ୍ଥ ପାଳନ କରୁ । ତୁ ସେହି, ଯାହାର ନାମ ସ୍ମରଣ କରିଲେ ସର୍ବ ବିଘ୍ନ ଖଣ୍ଡନ ହୁଏ । ଯାହାକୁ ସ୍ମରଣ କଲେ ଲକ୍ଷ୍ମୀ ପ୍ରାପ୍ତ ହୁଅନ୍ତି । ଯାହାର ନାମ ଭଜନ କଲେ ଆୟୁଷ ବର୍ଦ୍ଧନ ହୁଏ । ଯାହାର ନାମ ଚିନ୍ତା କଲେ ଅରିଷ୍ଟି ଶାନ୍ତ ହୁଏ, ରୋଗ ବ୍ୟାଧି ଦୂର ହୁଏ, ବୁଦ୍ଧି ଓ ଜ୍ଞାନର ଉଦୟ ହୁଏ, ଅପୁତ୍ରିକ ପୁତ୍ର ପାଏ, ସର୍ବବନ୍ଧନ ଦୂରହୁଏ । ତୁମେ ସେହି ଯୋଗ-ମାୟା, ସକଳ ଶକ୍ତିର ଅଧିକାରିଣୀ । ତୁମକୁ ଆମର ପ୍ରଣାମ । ଶତକୋଟି ପ୍ରଣାମ । ତୁମେ ହିଁ କେବଳ ମହିଷାସୁରର ଜୀବନାବସାନ ଘଟାଇ ପାରିବ । ଶୁମ୍ଭ ନିଶୁମ୍ଭ ବଧ ପରେ ଆମେ ମହିଷାସୁର ବଧର ସେହି ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରି ରହିଲୁ ଦେବୀ ।'

ଏହିପରି ଭାବରେ ସମସ୍ତ ଦେବଗଣ ଅତି ଆନନ୍ଦର ସହିତ ସ୍ୱର୍ଗପୁରକୁ ଫେରିଗଲେ । ଆଶ୍ୱସ୍ତ ହେଲା ମେଦିନୀର ଭାର । ଆଶ୍ଚର୍ଯ୍ୟାନ୍ୱିତ ହେଲା ମହିଷାସୁର । ଭୟକଲା ସେହି ଶକ୍ତି ସ୍ୱରୂପିଣୀ ନାରୀ ମୂର୍ତ୍ତିଙ୍କୁ ।

# ଦିବ୍ୟ ଦୃଷ୍ଟି

ଶ୍ରୀମତୀ ବିଜୟିନୀ ଦାସ

ଯଦି ସବୁ ଆଖିଥିବା ଲୋକ ଦେଖି ପାରୁଥାନ୍ତେ ତେବେ ପୃଥିବୀରେ 'ଅନ୍ଧ' ଶବ୍ଦଟି ଅଭିଧାନରେ ନଥାନ୍ତା ।

ସେଇମିତି ସବୁ ଅନ୍ଧ ଯଦି ଦୃଷ୍ଟିଶକ୍ତି ହରାଇ ଥା'ନ୍ତେ ତେବେ 'ଦିବ୍ୟ ଦୃଷ୍ଟି' ଶବ୍ଦଟି ମଧ୍ୟ ଅଭିଧାନରୁ ବାଦ୍ ଦିଆ ଯାଇଥାନ୍ତା ।

ଅନେକ ପରସ୍ପର ବିରୋଧୀ ଘଟଣା ଘଟେ ବୋଲି ଏ ପୃଥିବୀ ଏତେ ବୈଚିତ୍ର୍ୟମୟୀ ଓ ସୌନ୍ଦର୍ଯ୍ୟମୟୀ ।

କୁଳବତୀ ପାଟଣାର ରତ୍ନସିଂହାସନ ଉପରେ ବସି ଶୁମ୍ଭ ନିଶୁମ୍ଭ ଏଇ କଥା ହିଁ ମନ ଭିତରେ ଓଲଟ ପାଲଟ କରୁଥିଲେ । ସେଇ ଚୂଡ଼ାନ୍ତ ମୁହୂର୍ତ୍ତରେ ହିଁ ମହିଷାସୁରର ମନ୍ତ୍ରୀ ଅନ୍ଧକଙ୍କ କଥା ମାନସ ପଟରେ ଉଙ୍କି ମାରିଥିଲା ।

ଶୁମ୍ଭ ଓ ନିଶୁମ୍ଭ ଦୁଇଭାଇ, ଏକ୍କୁ ଏକେ ବଳୀୟାର । ସେମାନଙ୍କୁ ଯୁଦ୍ଧରେ ପରାଜିତ କରିଦେବ ଏମିତି ବୀର ଭଲା ଏ ମହୀମଣ୍ଡଳରେ କିଏ ଅଛି ? ସୁର, ନର, ଦାନବ ସେମାନଙ୍କ ଶୌର୍ଯ୍ୟ, ବୀର୍ଯ୍ୟ ଓ ଐଶ୍ୱର୍ଯ୍ୟ ନିକଟରେ ନତମସ୍ତକ । ନିର୍ଭୟ, ନିରଙ୍କୁଶ ।

ତଥାପି ମୃତ୍ୟୁକୁ କେଉଁ ଦେହଧାରୀର ବା ଭୟ ନାହିଁ ? ମୃତ୍ୟୁର ଫୁଙ୍ଗୁଳା ପଞ୍ଝା ଆଗରେ ଶକ୍ତିଶାଳୀ ଅସ୍ତ୍ରଶସ୍ତ୍ରଧାରୀ ମଧ୍ୟ ନିଜକୁ ଦୁର୍ବଳ ଓ ହୀନବୀର୍ଯ୍ୟ ମନେକରନ୍ତି ।

ମୃତ୍ୟୁକୁ ଜୟ କରିବାକୁ ହେବ । ଆୟତ୍ତ କରିବାକୁ ହେବ । ନଚେତ୍ ଏ ରାଜ୍ୟ ଜୟ ଓ ସାମ୍ରାଜ୍ୟ ସ୍ଥାପନର ମୂଲ୍ୟ କ'ଣ ?

ଦୈତ୍ୟରାଜ ଶୁମ୍ଭ ନିଶୁମ୍ଭଙ୍କ ମନରେ ମୃତ୍ୟୁଞ୍ଜୟ ହେବାର ଅବଦମିତ ଇଚ୍ଛା ବେଳକୁ ବେଳ ପ୍ରବଳ ହୋଇ ଉଠିଲା । ଯୁଗେ ଯୁଗେ ତପସ୍ୟା ବଳରେ ରାକ୍ଷସକୁଳ ଦେବତାଗଣଙ୍କୁ ଭଣ୍ଡି ଆସିଛନ୍ତି । ଦେବ-ଦେବ ମହାଦେବତ ପୁଣି ଭସ୍ମାସୁରର କପଟ ଜାଣିବାକୁ ସକ୍ଷମ ହୋଇ ନଥିଲେ ! 'ଯାହା ମସ୍ତକରେ ହାତ ଦେବୁ, ସେ ଭସ୍ମ ହୋଇଯିବ'—ଭଳି ଭୟଙ୍କର ବରଦାନ କରିଥିଲେ । ସେଇ ଭସ୍ମାସୁର ପୁଣି ତା'ର ବର ଦାତାଙ୍କ ମସ୍ତକରେ ହାତ ରଖିବାର କୃତଘ୍ନତା କରିବାକୁ ପଛଘୁଞ୍ଚା ଦେଇ ନଥିଲା ।

ତଥାପି ଦେବଗଣ ରାକ୍ଷସମାନଙ୍କୁ ଅମରତ୍ୱର ବର ପ୍ରଦାନ କରି ଆସୁଛନ୍ତି । କେବଳ ତପସ୍ୟା ହିଁ ମାଧ୍ୟମ ।

ଶୁମ୍ଭ ନିଶୁମ୍ଭ କଠୋର ତପସ୍ୟା କରି ବ୍ରହ୍ମାଙ୍କଠାରୁ ସେହି ଦୁର୍ଜୟ ବରଲାଭ କଲେ । ଯୁଗେ ଯୁଗେ ଅଜର ଅମର ହୋଇ ରହିବାର ବର ।

ବେଦବର ବ୍ରହ୍ମାଙ୍କ ବରରେ ବଳୀୟାନ । ଏବେ ଭୟ କାହାକୁ ? ନାଁ ଜୀବନକୁ, ନାଁ ମୃତ୍ୟୁକୁ ?

କିନ୍ତୁ ବେଦବର ବରରେ ବଳୀୟାନ ମହିଷାସୁର ଏ ଅହଂକାରକୁ ସହ୍ୟ କରିବା କ'ଣ ସହଜ କଥା ? ସେବେ କାମାକ୍ଷା ତୀରରେ ଥିବା ବଟବୃକ୍ଷ ମୂଳେ କଠୋର ତପସ୍ୟା କରି ଅମରତ୍ୱ ଲାଭ କରିଛି । ସୁର, ନର, ଗନ୍ଧର୍ବ, କିନ୍ନର ହସ୍ତରେ ତାଙ୍କର ମୃତ୍ୟୁ ନାହିଁ । ସେ ଜଳରେ ବୁଡ଼ିବ ନାହିଁ, ବାୟୁରେ ଉଡ଼ିବ ନାହିଁ, ଶସ୍ତ୍ରରେ ଛିଡ଼ିବ ନାହିଁ କି ଅନଳରେ ପୋଡ଼ିବ ନାହିଁ । ମୃତ୍ୟୁ ଯଦି ଅବଶ୍ୟମ୍ଭାବୀ ତେବେ ଦେବଦୁର୍ଲଭ ରମଣୀ ଶିରୋମଣୀର ସୌନ୍ଦର୍ଯ୍ୟକୁ ଋହିଁ ଋହିଁ ତା'ର ମୃତ୍ୟୁ ହେଉ ।

ଏଭଳି ରୂପସୀ ବୀରାଙ୍ଗନା ନାରୀ କ'ଣ ପୃଥିବୀରେ ସମ୍ଭବ ନାଁ ସମ୍ଭବ ହେଲେ ପ୍ରବଳ ପ୍ରତାପୀ ମହିଷାସୁର ସମ୍ମୁଖରେ ଠିଆ ହେବାର ଦୁଃସାହସ କରିବ ? ଅତଏବ ମହିଷା ଅଜେୟ ଅମର !

ଶୁମ୍ଭ ନିଶୁମ୍ଭଙ୍କ ରାଜ୍ୟ ଜୟ କରିବା ଉଦ୍ଦେଶ୍ୟରେ ମହିଷା ତା'ର ସମର ସଜ୍ଜା ଆରମ୍ଭ କଲା । ଦିଗ୍‌ବିଜୟୀ ମହିଷାର ଶକ୍ତି ଆଗରେ ଶୁମ୍ଭ ନିଶୁମ୍ଭ ଓ କୁଳବନ୍ତି ପାଟଣାର ସୈନ୍ୟ ସାମନ୍ତଙ୍କ ଶକ୍ତି କେତେ ନଗଣ୍ୟ ?

ମହର୍ଷି ନାରଦ କହିଛନ୍ତି – କୁଳବନ୍ତି ପାଟଣା ଜମ୍ବୁଦ୍ୱୀପ ମଧ୍ୟରେ ବିଭବ ଶାଳୀନୀ ନଗରୀ । ସେ ବିଭବ କରାୟତ ନକଲା ଯାଏ ମହିଷାର ଶାନ୍ତି କାହିଁ ? କୁଳବନ୍ତି ପାଟଣାରେ ତହସ୍ଥ ସେହି ଅପରୂପମୟୀ ନଗରୀକୁ ମୁଗ୍‌ଧ ଦୃଷ୍ଟିରେ ମହିଷା ଚାହିଁ ରହିଲା । ଏତେ ରାଜ୍ୟ ଜୟ କରିଛି, ହେଲେ ସମସ୍ତ ରାଜ୍ୟର ସମ୍ମିଳିତ ବିଭବ ଓ ସୌନ୍ଦର୍ଯ୍ୟ କୁଳବନ୍ତିପାଟଣା ନିକଟରେ ନିତାନ୍ତ ମ୍ଲାନ । ହୁଏତ ତା' ଅଦୃଷ୍ଟରେ ଶୁମ୍ଭ ନିଶୁମ୍ଭଙ୍କର ଏ ଅଜେୟ ନଗରୀର ରାଜସିଂହାସନ ଲେଖା ହୋଇଛି । ନଚେତ୍ ଉପଯୁକ୍ତ ସମୟରେ ମହର୍ଷି ନାରଦ ତାଙ୍କୁ ଏ ସମ୍ବାଦ ଦେଇ ନଥାନ୍ତେ ।

କିନ୍ତୁ ମହିଷାର ଏ ଭ୍ରମ ଦୂର ହେବାକୁ ବେଶୀ ସମୟ ଲାଗିଲା ନାହିଁ । ଅଜେୟ ନଗରୀ କୁଳବନ୍ତିର ଦୁର୍ଜେୟ ସୈନ୍ୟ ବାହିନୀ ଓ ମହା-ପ୍ରତାପୀ ସମ୍ରାଟ ଶୁମ୍ଭ ନିଶୁମ୍ଭଙ୍କ ଶକ୍ତି ଯେ କଳନାର ବାହାରେ । ପ୍ରବଳ ବାତ୍ୟାଘାତରେ ଉଦ୍ୟାନବନ ବିପର୍ଯ୍ୟସ୍ତ ହେବା ଭଳି ମହିଷା ସୈନ୍ୟ ବାହିନୀର ଅବସ୍ଥା । ଶେଷରେ ଶୁମ୍ଭ ନିଶୁମ୍ଭଙ୍କ ଅଦ୍ଭୁତ ରଣ କୌଶଳ ଆଗରେ ମହିଷା ଭଳି ବୀର ଅସହାୟ ଭାବେ ରଣଭୂମିରେ ଠିଆହୋଇ ରହିଲା । ଶୁମ୍ଭର ଲୌହ ଗଦା ଆଉ ମୁହୂର୍ତ୍ତକେ ମହିଷାର ମସ୍ତକକୁ ସ୍କନ୍ଧ ଚ୍ୟୁତ କରିଥାନ୍ତା । ଆଗରେ ମୃତ୍ୟୁର ଭୟଙ୍କର ରୂପ । ତଥିରେ ରୂପସୀ ଜୀବନର ମୋହ । ବଞ୍ଚି ରହିବାର ଅଦମିତ ଇଚ୍ଛା ଆଗରେ ସକଳ ଅହଙ୍କାର ଓ ଦର୍ପ ପଦାନତ ହୁଏ ନିମିଷକରେ । ଆଉ କିଛି ଚିନ୍ତା ନକରି ମହିଷା ଶୁମ୍ଭର ପାଦତଳେ ବିକଳରେ ଉଚ୍ଚାରଣ କଲା—'ମୁଁ ତୁମର ଶରଣାପନ୍ନ ହେଲି ।

ଉତ୍ତୋଳିତ ଗଦା ଶୁମ୍ଭ ହାତରୁ ଖସି ପଡ଼ିଲା । ଶୁମ୍ଭ ନିଶୁମ୍ଭଙ୍କ ସହ ଯୁଦ୍ଧ କରିବାକୁ ସାହସ କରିଥିବା କେହି ଜଣେ ବୀର ତା'ର ଶରଣାପନ୍ନ । ଏହାଠାରୁ ବଳି ତା' ବୀରତ୍ୱର ଉଜ୍ଜ୍ୱଳତମ ରୂପ ଆଉ କ'ଣ ବା ହୋଇପାରେ ?

କ୍ଷମାଶୀଳ କଣ୍ଠରେ ନିଶୁମ୍ଭ କହିଲା— ଭାଇ, ଏ ଶରଣାଗତ ବୀରକୁ କ୍ଷମା କରିଦିଅ ।

ମହିଷାକୁ ଭୂମିରୁ ଉଠାଇ ଶୁମ୍ଭ ପରମ ଆଦରରେ ନିଜ ବକ୍ଷ ଦେଶରେ ଚାପି ଧରିଲା । କୋମଳ କଣ୍ଠରେ କହିଲା—ଶୁମ୍ଭ ନିଶୁମ୍ଭ ବୀରଙ୍କର ଆଦର କରନ୍ତି, ବୀରକୁ ସମ୍ମାନ ଦିଅନ୍ତି । ତୁମ ନାମ ଓ ଧାମ ବତାଅ । ଆମ ସହ ଯୁଦ୍ଧ କରିବା ଭଳି ଯୋଗ୍ୟ ବ୍ୟକ୍ତି ତୁମେ, ଏହା ତୁମ ଅଦ୍ଭୁତ ରଣ କୌଶଳରୁ ଜଣା ପଡ଼ୁଛି । ତୁମକୁ ବନ୍ଧୁ ରୂପରେ ଆଜଠାରୁ ଆମେ ଗ୍ରହଣ କଲୁ ।

ମହିଷା ଏଭଳି ସୌଜନ୍ୟ ଆଶା କରି ନଥିଲା । ଅପ୍ରତ୍ୟାଶିତ ଏ ପ୍ରାପ୍ତିରେ ତା'ର ହୃଦୟ କୃତଜ୍ଞତାରେ ପୂର୍ଣ୍ଣ ହୋଇଗଲା । ଗଦ୍ ଗଦ୍ କଣ୍ଠରେ କହିଲା--ମୁଁ ସିଂହଳ ଦ୍ୱୀପର ଚକ୍ରବର୍ତ୍ତୀ ମହିଷାସୁର । କ୍ରୌଞ୍ଚଦ୍ୱୀପ, କୁଶଦ୍ୱୀପ ଓ ଚନ୍ଦ୍ର ଦ୍ୱୀପ ବିଜୟ କରି ଜମ୍ବୁଦ୍ୱୀପ ବିଜୟ କରିବା ଅଭିଳାଷରେ ଆସିଥିଲି, ବିଜିତ ହୋଇ ରହିଗଲି । ପରାଜୟର ଆନନ୍ଦ ଯେ ବିଜୟର ଆନନ୍ଦଠାରୁ ବେଳେ ବେଳେ ଅନେକ ଗୁଣରେ ଅଧିକ ହୋଇଥାଏ, ଆଜି ଜାଣିଲି । ଜମ୍ବୁଦ୍ୱୀପ ଯେ ଅଜେୟ ହୋଇପାରିଛି, ତାହା କେବଳ ଶୁମ୍ଭ ନିଶୁମ୍ଭଙ୍କ ଏକତାର ଚମତ୍କାରିତା, ଏହି ଉପଲବ୍ଧି ଆଜି ହାସଲ କଲି ।

ମହିଷାର କଥା କହିବା ଶୈଳୀରେ ଶୁମ୍ଭ ନିଶୁମ୍ଭ ମୁଗ୍ଧ ହେଲେ । ଏବେ ତୁମ ଅଭିଳାଷ କ'ଣ ବ୍ୟକ୍ତ କର । ଆମେ ତାହା ଅବିଳମ୍ବେ ପୂରଣ କରିବୁ ।

ମହିଷା ନିଜର ଲୋଭକୁ ଆଉ ଆଡ଼ୁଆଳ କରିପାରିଲା ନାହିଁ । ଅନୁରକ୍ତ କଣ୍ଠରେ କହିଲା—'ମୋତେ କୁଳବନ୍ତୀ ପାଟଣାର ଜେନାବଳୀ ନଗରର ରାଜା ରୂପେ ବସିବାର ଅଧିକାର ଦିଆଯାଉ । ଏତିକି ମାତ୍ର ଅନୁରୋଧ ।'

ଶୁମ୍ଭ ନିଶୁମ୍ଭ 'ତଥାସ୍ତୁ' ବୋଲି ଅଭୟ ପ୍ରଦାନ କଲେ । ମହିଷାର ହୃଦୟ ପୁନଶ୍ଚ ବିଶ୍ୱାସୀବାର ପାଇଁ କୃତଜ୍ଞତାରେ ଭରିଗଲା । ଶୁମ୍ଭ ନିଶୁମ୍ଭଙ୍କ ଉଦାରତାର ଜୟଗାନ ଭାଷାରେ ପ୍ରକାଶ କରିବ ଭାବି ସେ ନିର୍ବାକ ହୋଇ

ଯାଇଥିଲା । କାରଣ ତା' ନିକଟରେ ସେହି ମୁହୂର୍ତ୍ତର ଉପଯୁକ୍ତ ଶବ୍ଦଟିଏ ମଧ୍ୟ ଧରାଦେଇ ନଥିଲା ।

ଉଦାରତା ! ! ରାକ୍ଷସ ରାଜା ଶୁମ୍ଭ ନିଶୁମ୍ଭ ନିଜର ଶାଣ୍ଡ ବୁଦ୍ଧିକୁ ପ୍ରଶଂସା ନକରି ରହି ପାରିଲେ ନାହିଁ । ମର୍ତ୍ତ୍ୟ ଲୋକର ଖଣ୍ଡିଏ ସାଧାରଣ ପଡ଼ା 'କୁଳବଣ୍ଟ ପାଟଣା'ର ବିନିମୟରେ ସ୍ୱର୍ଗ ରାଜ୍ୟ ଲାଭ କରିବାର ସୌଭାଗ୍ୟ ! ବାବା ! ଏହାକୁ ହିଁ କହନ୍ତି ଯୋଗାଯୋଗ ।

ମହିଷାସୁରର ଅମିତ ପରାକ୍ରମର ପରିଚୟ ସେ ଦୁହେଁ ରଣ-କ୍ଷେତ୍ରରେ ପାଇଛନ୍ତି । ସେଭଳି ଦୁର୍ଜୟ ବୀର ଯଦି ଶୁମ୍ଭ ନିଶୁମ୍ଭଙ୍କ ଭଳି ଅଜେୟ ଶକ୍ତି ସହ ମିଳିତ ହୁଏ, ତେବେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳକୁ ସେମାନେ ପଦାନତ କରି ରଖିପାରିବେ । ଏହାକୁ ହିଁ କହନ୍ତି ରାଜନୀତି, କୂଟନୀତି । ଯାହାକୁ ନିର୍ବୋଧ ମହିଷାସୁର ଭାବିନେଇଛି ଉଦାରତା ।

ଠିକ୍ ସେହି ଚରମ ମୁହୂର୍ତ୍ତରେ ହିଁ ମହର୍ଷି ନାରଦଙ୍କର ଆବିର୍ଭାବ । ତ୍ରିଭୁବନର ବାରତା କେବଳ ସେଇ ହିଁ ଦେବାକୁ ସମର୍ଥ ।

ଶୁମ୍ଭ ନିଶୁମ୍ଭ ମହର୍ଷିଙ୍କର ପଦ ବନ୍ଦନା କଲେ । ସମାଦର କରି ଆସନ ଦେଲେ ।

ଦରହସିତ ଅଧରରେ ମହର୍ଷି ନାରଦ ଶୁମ୍ଭ ନିଶୁମ୍ଭଙ୍କ ଭକ୍ତି ଓ ଆତିଥ୍ୟ ଗ୍ରହଣ କଲେ ।

ଫେରିଯିବା ବେଳେ ନାରଦ କହିଲେ—ବତ୍ସ ଶୁମ୍ଭ ନିଶୁମ୍ଭ । ତୁମ ଦୁହିଁଙ୍କର ଏ ରାଜ୍ୟ କୌଣସି ଗୁଣରେ ଅମରାବତୀଠାରୁ ନ୍ୟୂନ ନୁହେଁ । କିନ୍ତୁ··· । କହୁ କହୁ ନାରଦ ଅଟକିଗଲେ ।

ଶୁମ୍ଭ ବ୍ୟଗ୍ର ବ୍ୟାକୁଳ କଣ୍ଠରେ ଜିଜ୍ଞାସା କଲେ—'କିନ୍ତୁ ପୁଣି କ'ଣ ମହର୍ଷି ?? କିଛି ଊଣା ଦେଖୁଛନ୍ତି ??

ନାରଦ କହିଲେ ବତ୍ସ ! କେବଳ ଗୋଟିଏ ଦ୍ରବ୍ୟର ଅଭାବ ହେତୁ ଏହି ନଗ୍ର ଅମରାବତୀ ନହୋଇ କୁଳବଣ୍ଟ ହୋଇଛି । ଯଦି ଏହି ଗୋଟି ଦ୍ରବ୍ୟ ତୁମେ ଦୁହେଁ କୌଣସିମତେ ରାଜ୍ୟରେ ଥାପି ପାରିବ, ତେବେ ଏହି ପୁର ସ୍ୱର୍ଗପୁରରେ ପରିଣତ ହୋଇଯିବ । ସେ ଗୋଟି ଦ୍ରବ୍ୟ ହେଲା—

ଐରାବତ ହସ୍ତୀ, ନର୍ତ୍ତକୀ ରମ୍ଭା ଅପ୍‌ସରା, ଉଚ୍ଚୈଃଶ୍ରବା ଅଶ୍ୱ ଓ ପାରିଜାତ ବୃକ୍ଷ । ଏହି ଚାରୋଟି ବସ୍ତୁ ପ୍ରାପ୍ତ ହୋଇଥିବାରୁ ଦେବରାଜ ଇନ୍ଦ୍ର ସ୍ୱର୍ଗ ରାଜ୍ୟରେ ସୁଖଭୋଗ କରୁଛନ୍ତି ।

ମହିଷା ଓ ଶୁମ୍ଭ ନିଶୁମ୍ଭ ଏକଥା ଶୁଣି କି ସ୍ଥିର ହୋଇ ରହି ପାରନ୍ତି ? ବର୍ତ୍ତମାନ ତିନି ଶକ୍ତିର ସମାହାର । ସେମାନଙ୍କୁ ପରାଜିତ କରିବେବ ଏଭଳି ଶକ୍ତି ସଚରାଚରେ ନାହିଁ ।

ଦେବରାଜ ଇନ୍ଦ୍ରଙ୍କ ନିକଟକୁ ବାର୍ତ୍ତା ପଠାଗଲା—'ଅବିଳମ୍ବେ ଐରାବତ ହସ୍ତୀ, ଉଚ୍ଚୈଶ୍ରବା ଅଶ୍ୱ, ପାରିଜାତ ପୁଷ୍ପ ଓ ଅପ୍‌ସରା ରମ୍ଭା ଆଣି ଆମର ପାଦତଳେ ସମର୍ପଣ କର । ନଚେତ୍ ଶାସ୍ତି ବିଧାନ ପାଇଁ ପ୍ରସ୍ତୁତ ରହ ।'

ମହିଷା, ଶୁମ୍ଭ ଓ ନିଶୁମ୍ଭ ଜଣମୁଦ ଦେଇ ଏ ଚିଠାଉ ଇନ୍ଦ୍ରଙ୍କ ନିକଟକୁ ଦୂତ ଦେଇ ପ୍ରେରଣ କଲେ । ତିନିଜଣ ଦର୍ପିତ ଭଙ୍ଗୀରେ ପରସ୍ପରକୁ ଚାହିଁଲେ । ପରସ୍ପର ପାଇଁ ସେ ଚାହାଣୀରେ କାଁହିଁକି ପ୍ରଶଂସା ମଧ୍ୟ ମିଶି ରହିଥିଲା ।

କିନ୍ତୁ ପ୍ରତିବାଦ କରିଥିଲେ ତ୍ରିକାଳ ଜ୍ଞାତା ମନ୍ତ୍ରୀ ଅନ୍ଧକ । ମହିଷାସୁରକୁ ସେ ନିଭୃତକୁ ଡାକ ନେଇ କହିଥିଲେ—ମହାରାଜ ! ଏଭଳି ଧୃଷ୍ଟତା କରିବା ଅର୍ଥ ବିପଦକୁ ନିମନ୍ତ୍ରଣ ଜଣାଇବା । ଏହା ମୋ'ର ଭବିଷ୍ୟ ଗଣନା ଶକ୍ତି ବଳରେ ମୁଁ ଜାଣିପାରୁଛି । ଇନ୍ଦ୍ରଙ୍କ ପ୍ରତି ଶତ୍ରୁତା ଆଚରଣ କରନାହିଁ ।

ମହିଷାର କ୍ରୋଧ ସୀମା ଅତିକ୍ରମ କଲା । ଗର୍ଜନ କରି ସେ କହିଲା —ଦୁର୍ଭାଗ୍ୟ କ୍ରମେ ତୁ ମୋର ମାତୁଳ, ନଚେତ୍ ଏଭଳି ଆସ୍ପର୍ଦ୍ଧା ପାଇଁ ମୁଁ ତତେ ମୃତ୍ୟୁଦଣ୍ଡ ଦେଇଥାନ୍ତି । ଅତୀତ କଥା ଭୁଲିଯାଇଛୁ କି ??

ନାଁ ! ସେଭଳି ହୃଦୟସ୍ପର୍ଶୀ ଘଟଣାକୁ କେହି କ'ଣ ଭୁଲିପାରେ ? ଅନ୍ଧକ ମନ୍ତ୍ରୀ ଭୁଲି ନଥିଲେ । ଅନ୍ଧକ ସ୍ମୃତିର ରୋମନ୍ଥନ କଲେ ।

ଶିବ ବର ପାଇ ମହିଷା ଦୁର୍ଦ୍ଦାନ୍ତ ଦୁର୍ଦ୍ଧର୍ଷ ହୋଇ ଉଠିଲା । ଅନ୍ୟାୟ, ଅନୀତି ଓ ଅତ୍ୟାଚାର ତା'ର ନିତ୍ୟ ସହଚର ପାଲଟିଥିଲେ ।

ଅନ୍ଧକ ମାମୁଁ । ଭଣଜାର ଏଭଳି ଅପକୀର୍ତ୍ତି ସହନ୍ତେ କେମିତି ? ଜୀବନ୍ତ ଥାଉଁ ଥାଉଁ ତାଙ୍କର ଆଖି ଆଗରେ ଏକମାତ୍ର ଭଣଜା ତାଙ୍କର ନର୍କଗାମୀ ହେବ । ଏକଥା ସେ କିପରି ସହ୍ୟ କରିବେ ?

ମାତୁଳ ପଣ ନେଇ ସେ ଅନ୍ଧକକୁ ବୁଝାଇଲେ । ନାନା ବିଧି ଉପଦେଶ ଦେଲେ । ସେ ପାପ ପଥରୁ ନିବୃତ୍ତ ହେବାକୁ ପରାମର୍ଶ ଦେଲେ ।

ମହିଷା କି ପରାମର୍ଶ ଗ୍ରହଣ କରିବା ବ୍ୟକ୍ତି ? ଆସ୍ପର୍ଦ୍ଧା କମ୍ ନୁହେଁ !! ଦିଗ୍‌ବିଜୟୀ ମହିଷାକୁ ପୁଣି ପରାମର୍ଶ-ନିର୍ଦ୍ଦେଶ ଦେବେ ମାତୁଳ । ମହିଷାସୁରର ଚକ୍ଷୁ ଆରକ୍ତ ହୋଇ ଉଠିଲା । ପ୍ରବଳ ଉତ୍ତେଜନାରେ ସେ ଦୁଇକର ବନ୍ଧ ମୁଷ୍ଟି କଲା । ନିର୍ନିମେଷ ନୟନରେ ଅନ୍ଧକ ଚାହିଁଛନ୍ତି ମହିଷାକୁ···। କି ଉପଦ୍ରବ କରିବ ସେ ଜଣାନାହିଁ । କିନ୍ତୁ ବିପଦକୁ ଡର ସତ୍‌ଶିକ୍ଷା, ସତ୍‌ମାର୍ଗ ଓ ସତ୍‌କର୍ମରୁ ଓହରି ଯିବା ଭଦ୍ରଜନୋଚିତ କର୍ମ ନୁହେଁ ।

ହଠାତ୍ ଗୋଟାଏ ଯନ୍ତ୍ରଣାଂଶକାର କାଳୁମଣ୍ଡଳକୁ ଶ୍ୱାସରୁଦ୍ଧ କରି ଦେଲା । ଦୁଇ ହାତରେ ଦୁଇଆଖି ଚାପିଧରି ମନ୍ତ୍ରୀ ଅନ୍ଧକ ଭୂମି ଉପରେ ବସିପଡ଼ିଲେ । ଜବାରଙ୍ଗୀ ରକ୍ତରେ ପାପୁଲି ଓ ପାଦତଳର ମାଟି ଓଦା ହୋଇଗଲା ।

ତୀକ୍ଷ୍ଣଛୁରିକାଘାତ କରି ମହିଷା ମାତୁଳ ଅନ୍ଧକଙ୍କର ଚକ୍ଷୁର ଡୋଳା ଦୁଇଟି କାଢ଼ିନେଲା ।

ନିଷ୍ଠୁରତାର ଚରମ ପର୍ଯ୍ୟାୟ । ତଥାପି ଅନ୍ଧକଙ୍କ ଓଠରୁ ଅଭିଶାପର ବାଣୀ ବାହାରିଲା ନାହିଁ । ଯାହାହେଲେ ଭଗିନୀପୁତ୍ର । ସନ୍ତାନବତ୍ । ସନ୍ତାନ ଯଦି ଜଙ୍ଘରେ ମଳତ୍ୟାଗ କଲା, ଜଙ୍ଘକୁ କି ସନ୍ତାନକୁ ତ ଆଉ ତ୍ୟାଗକରି ହେବ ନାହିଁ । କିନ୍ତୁ ଅପମାନର ଜ୍ୱାଳା ଏତେ ଥିଲା ଯେ ଅନ୍ଧକ ତତ୍‌କ୍ଷଣାତ୍ ସେ ସ୍ଥାନ ପରିତ୍ୟାଗ କଲେ । ଆକୁଳରେ ଅନ୍ଧକ ଦେବାଦେବ ମହାଦେବଙ୍କୁ ଡାକିଲେ—ପ୍ରଭୁ, ଏ ଅନ୍ଧର ଜୀବନରୁ ମୁକ୍ତିଦିଅ । ଦୃଷ୍ଟିହୀନ ହୋଇ ସୃଷ୍ଟିରେ ବଞ୍ଚି ରହିବାର ଦୁଃଖରୁ ମତେ ଉଦ୍ଧାର କର ।

ଭୋଳାନାଥ ଆଶୁତୋଷ ତ ଭକ୍ତର ଭାବରେ ଭୋଳ ଚିରଦିନ । ତତ୍‌କ୍ଷଣାତ୍ ଆସି ଭୂମିରେ ଲୋଟୁଥିବା ଅନ୍ଧକକୁ କୋଳାଗତ କଲେ ।

କହିଲେ ବତ୍ସ ! ତୁ ଅନ୍ଧ ନୋହୁ, ଅନ୍ଧ ସେହି—ଯେ ଚକ୍ଷୁ ଥାଇ ମଧ୍ୟ ହିତାହିତ ଜ୍ଞାନଶୂନ୍ୟ ହୋଇ କିଛି ଦେଖିପାରେ ନାହିଁ । ପ୍ରକୃତ ଅନ୍ଧ ଏଇ ମହିଷା । ସେ ତା' କୃତକର୍ମର ଫଳ ଭୋଗିବ । ତୋତେ ମୁଁ ଆଶୀର୍ବାଦ କରୁଛି ତୋର ଅନ୍ତର୍ଦୃଷ୍ଟି ଉନ୍ମୀଳିତ ହେଉ । ସେହି ଅନ୍ତର୍ଦୃଷ୍ଟି ଦ୍ୱାରା ତତେ ତିନିକାଳର କଥା ଦୃଶ୍ୟ ହେଉ ।'

ଅନ୍ଧକଙ୍କର ସେହି ଅନ୍ଧ ଦୃଷ୍ଟିର ବଳୟ ଭିତରେ ସ୍ପଷ୍ଟ ହୋଇ ଉଠୁଥିଲା ଦେବଦେବ ମହାଦେବଙ୍କର ଭସ୍ମବିଲେପିତ ଶ୍ୱେତ ସୁନ୍ଦର ରୂପ ମାଧୁରୀ । ଏକ ହସ୍ତରେ ତ୍ରିଶୂଳ, ଅନ୍ୟ ହସ୍ତରେ ଡମ୍ବରୁ । ଗଳାରେ ସର୍ପର ହାର, ବାଜୁରେ ସର୍ପର କଙ୍କଣ । କଟୀ ତଟରେ ମୃଗ ଛାଲ । ଶିରରେ ସର୍ପର ମୁକୁଟ । ଜଟାରେ ଅର୍ଦ୍ଧଚନ୍ଦ୍ର ଓ ତା' ଉପରୁ ଝରୁଥିବା ଫୁଆରରେ ପତିତପାବନୀ ଗଙ୍ଗାଙ୍କର ଶଙ୍କିତ ପଦପାତ । ଭାଲଦେଶରେ ବିଭୂତିର ତିନିରେଖା ସୁସଜ୍ଜିତ ଭାବେ ଭ୍ରୂଲତା ଦ୍ୱୟକୁ ଛୁଇଁ ଲେଖା ହୋଇଛି । ତା' ଉପରକୁ ତୃତୀୟ ନୟନ । ସେହି ନୟନରୁ ବିଚ୍ଛୁରିତ ଆଲୋକ ତାଙ୍କ ଅନ୍ଧ ଦୃଷ୍ଟିକୁ ଆଲୋକିତ କରିଦେଉଛି । ସେହି ଆଲୋକରେ ତିନିକାଳ ଓ ତିନିପୁରର ମାନଚିତ୍ର ସ୍ପଷ୍ଟ ହୋଇ ଉଠୁଛି ତାଙ୍କ ଦୃଷ୍ଟି ଆଗରେ ।

ପ୍ରଣତ ଭଙ୍ଗୀରେ 'ନମସ୍ତୁଭ୍ୟଂ' 'ନମସ୍ତୁଭ୍ୟଂ' କହି ଅନ୍ଧକ ଦେବ-ଦେବଙ୍କ ପାଦତଳେ ଭକ୍ତି ଅର୍ଘ୍ୟ ନିବେଦନ କଲେ । ଗଦ୍ ଗଦ୍ କଣ୍ଠରେ ପ୍ରାର୍ଥନା କଲେ ପ୍ରଭୁ, ଚକ୍ଷୁ ନଥାଇ ଯଦି ତୁମ ଦର୍ଶନ ଲାଭ କରିବାର ସୌଭାଗ୍ୟ ଲଭିକରେ ତେବେ ମତେ ଜନ୍ମେ ଜନ୍ମେ ଅନ୍ଧ କର ପ୍ରଭୁ । ଏତିକି ମାତ୍ର ମୋର ଭିକ୍ଷା । ତୁମ କୃପା ସଦାବେଳେ ମୋ' ପାଇଁ ଥାଉ । ଆଉ କିଛି ଲୋଡ଼େ ନାହିଁ ।

ହସି ହସି ତ୍ରିଲୋଚନ କହିଲେ—'ତଥାସ୍ତୁ' । ତୋ' ହୃଦ ଦେଶରେ ମୋର ଏ ତୃତୀୟ ନୟନ ଏଇ ମୁହୂର୍ତ୍ତରେ ଜନ୍ମିନେଉ ।'

ଦେବଦେବ ମହାଦେବ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ । ଅନ୍ଧ ଦୃଷ୍ଟିରେ ବି ଅନ୍ଧକ ଦେଖିପାରୁଥିଲା ସେଇ ଅନ୍ତର୍ଦ୍ଧାନର ଦୃଶ୍ୟ । ଆହୁରି ମଧ୍ୟ ଦେଖି ପାରୁଥିଲା ମହିଷାର ଆବିର୍ଭାବ । ମାତୁଳ ଅନ୍ଧକର ଦୁଇ ହାତକୁ ଜାବୋଡ଼ି ଧରି ମହିଷା ନିବେଦନ କରିଥିଲା—'ମାମୁଁ ମତେ କ୍ଷମା

କର । ଏଥର ରାଜ୍ୟକୁ ଫେରିଚାଲ । ମୋ' ରାଜ୍ୟର ମନ୍ତ୍ରୀତ୍ୱ ପଦ ଗ୍ରହଣ କରି ମତେ ବାଧିତ କର ।'

ସେହିଦିନୁ ଅନ୍ଧକ ମନ୍ତ୍ରୀତ୍ୱର ଶିକୁଳିରେ ମହିଷାର ସିଂହାସନ ସହ ବାନ୍ଧି ହୋଇ ଯାଇଛନ୍ତି, ଅତୀତର ସେ ଲାଞ୍ଛନାକୁ ସମ୍ପୂର୍ଣ୍ଣ ଭୁଲି ଯାଇଛନ୍ତି ।

କିନ୍ତୁ ଆଜି···! ଆଜି ତାଙ୍କ ପ୍ରତି ଦ୍ୱିତୀୟବାର ଏ ଭତ୍ସନା, ଏ ଅବଜ୍ଞା ଓ ତାଙ୍କ ଶକ୍ତି ପ୍ରତି ତାଚ୍ଛଲ୍ୟଭାବ ଅତୀତର ସେହି କ୍ଷତକୁ ଉଖାରି ଦେଉଛି—ରକ୍ତାକ୍ତ କରୁଛି ।

ବିନାଶ କାଳେ ବିପରୀତ ବୁଦ୍ଧି । ସ୍ଥିତଧୀ ଅନ୍ଧକ ନୀରବ ରହିଲେ । ତାଙ୍କ ଦିବ୍ୟ ଦୃଷ୍ଟିରେ ଭବିଷ୍ୟତର ରୂପରେଖ ସ୍ପଷ୍ଟ ହୋଇ ଉଠୁଥିଲା । ପୃଷ୍ଠା ପରେ ପୃଷ୍ଠା ଓଲଟାଇବା ଭଳି ଦୃଶ୍ୟ ପରେ ଦୃଶ୍ୟ ଓଲଟି ଚାଲିଥିଲା । ସେ ଦୃଶ୍ୟ ଥିଲା କିପରି ମହିଷା, ଶୁମ୍ଭ ନିଶୁମ୍ଭଙ୍କ ଦୌରାତ୍ମ୍ୟରେ ବିପର୍ଯ୍ୟସ୍ତ ଦେବଗଣ ବିଷ୍ଣୁଙ୍କ ନିକଟରେ ଦୁଃଖ ଜଣାଉଛନ୍ତି । ପ୍ରଜ୍ୱଳିତ ଅଗ୍ନି ଦେବତାଙ୍କ ତେଜରେ ଅସୁରକୁଳ ସ୍ୱର୍ଗରେ ପ୍ରବେଶ କରି ପାରୁନାହାନ୍ତି । ସେହି ମହାତେଜା ଅନଳର ଶିଖାକୁ ମ୍ଳାନକରି ଉତ୍ପତ୍ତି ହେଉଛନ୍ତି ମହାଶକ୍ତି ଦୁର୍ଗା । ଦେବଗଣଙ୍କର ମିଳିତ ଶକ୍ତିରେ ଶକ୍ତିଶାଳିନୀ ମହାମାୟୀଙ୍କର ରୂପ ସ୍ୱର୍ଗ-ମର୍ତ୍ତ୍ୟ-ପାତାଳକୁ ବ୍ୟାପ୍ତ ହୋଇ ଯାଉଛି । ଅସ୍ତ୍ର ଶସ୍ତ୍ର ସଜିତା ଦଶଭୁଜା ଦୁର୍ଗା, ବିଶ୍ୱର ଦୁର୍ଗତି ନାଶ କରିବାକୁ ମହିଷା-ସୁରକୁ ତ୍ରିଶୂଳ ମୁନରେ ସଂହାର କରୁଛନ୍ତି । ଶୁମ୍ଭ ନିଶୁମ୍ଭଙ୍କ ଛିନ୍ନ ମସ୍ତକ ଦେବୀଙ୍କ ଗଳାରେ ଲମ୍ବି ଥିବା ମୁଣ୍ଡମାଳା ଭିତରେ ଶୋଭା ପାଉଛି । ଦେବୀ ଦୁର୍ଗାଙ୍କର ମହିଷାମର୍ଦ୍ଦିନୀ ରୂପର ତେଜ ବେଳକୁବେଳ ପ୍ରଚଣ୍ଡ ହୋଇ ଉଠୁଛି ।

ଭୟରେ ଅନ୍ଧକ ଆଖି ବୁଜିଦେଲେ ।

ହର୍ଷସ୍ମିତ ଚକ୍ଷୁରେ ପ୍ରାର୍ଥନାର ଛଳ ଛଳ ଭାବ । କୃତାଞ୍ଜଳି ପୁଟରେ ସେ ଉଚ୍ଚାରଣ କରୁଥିଲେ—'ମା' ଦୁର୍ଗେ ଦୁର୍ଗତି ନାଶିନୀ, ଏ ବିପନ୍ନ ବିଶ୍ୱକୁ ଯୁଗେ ଯୁଗେ ରକ୍ଷାକର ମା' । ଆସୁରି ଶକ୍ତି ଉପରେ ବିଜୟର ବୈଜୟନ୍ତୀ ଉଡ଼ାଇ ତୋ'ର ନାମକୁ ସାର୍ଥକ କରୁଥା ।'

●

# ମହାମାୟାଙ୍କର ମାୟା

ଶ୍ରୀମତୀ ଶାନ୍ତି ମହାପାତ୍ର (ବଳ)

ରୋଷକଷାୟିତ ନେତ୍ରରେ ମାତା ଦୁର୍ଗତିନାଶିନୀ ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କଲେ । ସେ ଦୃଷ୍ଟିରୁ ସ୍ଫୁଲିଙ୍ଗ ନିର୍ଗତ ହେଉଥିଲା । ଅଧର ଯୁଗଳ ସ୍ଫୁରିତ । ରକ୍ତମନ୍ଦାରର କାନ୍ତି ଧାରଣ କଲା କ୍ରୋଧଜର୍ଜରିତ ମୁଖମଣ୍ଡଳ । ମନ୍ଦର ପର୍ବତ ସଦୃଶ ବିରାଟକାୟ କଳେବର ଧାରଣ କରି ମେଦିନୀ ଗ୍ରାସ କରିବାକୁ ବସିଲା । ପ୍ରଚଣ୍ଡ କ୍ରୋଧର ଏହି ମୂର୍ତ୍ତିମନ୍ତ ବିଗ୍ରହ ଦେବାଙ୍ଗନା କାତ୍ୟାୟିନୀ ଚାମୁଣ୍ଡାଙ୍କ ମନରେ ଘୋର ଭୟ ଓ ବିସ୍ମୟ ସୃଷ୍ଟି କଲା । ବସୁମତୀ ବିପଦ ଆଶଙ୍କା କଲେ ।

ଦେବୀମାନଙ୍କ ଠାରୁ ନିଜମାନଙ୍କର ଦୟନୀୟ ଅବସ୍ଥା ଶୁଣି ମାତା ଅସ୍ଥିର ହୋଇ ପଡ଼ିଲେ । ସେମାନଙ୍କର ବାସସ୍ଥଳୀ ଧ୍ୱସ୍ତ ବିଧ୍ୱସ୍ତ । ଦେବୀମାନେ ଶୂନ୍ୟବାସିନୀ । ମାତାଙ୍କର ସହଚରୀ ସାତପଦ୍ମ ଦେବୀ, ପନ୍ଦର 'ମେଦକ୍ଷ' ଭୈରବୀ, ନବକୋଟି କାତ୍ୟାୟିନୀ ପୁଣି ଚଉଷଠି ଯୋଗିନୀ ବାସହରା, ଅସହାୟା । ମାତା ଦୁର୍ଗାଙ୍କ ପକ୍ଷରେ ଏହା ଅସହ୍ୟ, ଅପମାନ-ଜନକ ନିଶ୍ଚୟ । ଚତୁର୍ଦ୍ଦିଗ ବିସ୍ତୃତ ଶୋଭାବନ୍ତ ବିଶାଳ ରତ୍ନଗିରି ପର୍ବତ ମାଟି ମେଞ୍ଚାଏ ପରି ଭୂପତିତ । ରାତି ର, ଅନ୍ଧକାର ମଧ୍ୟରେ ସମସ୍ତଙ୍କର ଅଜ୍ଞାତରେ ଏତାଦୃଶ ଦୁର୍ଘଟଣା ଘଟିଯାଇଛି । ସିନ୍ଦୂର ଫାଟିବା ମାତ୍ରକେ ମାରକମା କୃତାଞ୍ଜଳି ପୁଟରେ ବେଦାହତ ପ୍ରତିମା ପ୍ରାୟ ଥରି ଥରି ମହାଦେବୀଙ୍କ ସମ୍ମୁଖରେ ବର୍ଣ୍ଣନା କରୁଥିଲା ଗତରାତିର ଏ ଦୁର୍ଘଟଣା ଆଉ ଦେବୀମାନଙ୍କର ଅସହାୟ ଅବସ୍ଥା ।

ମହିଷାସୁର ଦରବାରରେ ସେଦିନ ଆନନ୍ଦ ମହୋତ୍ସବ, ନୃତ୍ୟ ସଙ୍ଗୀତର ଆସର । ପାତ୍ରମନ୍ତ୍ରୀଗଣ ମଧ୍ୟ ଦାନବରାଜଙ୍କ ଆନନ୍ଦରେ ସମଭାଗୀ । ଯୁଦ୍ଧର ବିଜୟ ଆଶାରେ ସମସ୍ତେ ଦୃଢ଼ ନିଶ୍ଚିତ । ବିଜୟ ସନ୍ଦେଶର ପ୍ରତୀକ୍ଷାରେ ସମସ୍ତେ । ମଦ୍ୟପାନ, ନୃତ୍ୟ ସଙ୍ଗୀତ ଉପଭୋଗରେ ବିଭୋର ପୁରବାସୀ । ସ୍ୱୟଂ କାଳବିମୋଚନ ଆଜି ରଣକ୍ଷେତ୍ରରେ ଅବତୀର୍ଣ୍ଣ । ତା' ପରି ବୀରର କେତେଟା ଅବଳାଙ୍କ ସହିତ ସଂଗ୍ରାମ କରିବା ନିଷ୍ପ୍ରୟୋଜନ । ତାର ଉପସ୍ଥିତିରେ ସେମାନେ ଭୟଭୀତ ହୋଇ ଆତ୍ମ-ଗୋପନ କରିବେ । ନଚେତ୍ ତାର ଫୁତ୍କାରରେ ଧୂଳି ପରି ଧରାପୃଷ୍ଠରେ ଝରି ପଡ଼ିବେ । ଅବଳା ଦୁର୍ବଳାଙ୍କ ସହିତ ପୁଣି ବିଶ୍ୱବିଦିତ ଯୋଦ୍ଧା କାଳବିମୋଚନର ଯୁଦ୍ଧ··· ? ହାଃ, ହାଃ, ହାଃ···

ଏହି ସମୟରେ କାଳବିକାଳ ଦରବାରରେ ଉପସ୍ଥିତ ହେଲେ । ଭୟଭୀତ ମୁଖମଣ୍ଡଳ, ଶୁଷ୍କ କଣ୍ଠ, ଉଦ୍‌ଗ୍ରୀବ ଦୃଷ୍ଟି । ଉନ୍ମତ୍ତ ରାକ୍ଷସରାଜ ଓ ମନ୍ତ୍ରୀ ପରିଷଦଙ୍କର ସେମାନଙ୍କ ପ୍ରତି ଦୃଷ୍ଟି ନାହିଁ । ପ୍ରହରୀ ଥରି ଥରି ସେମାନଙ୍କର ଉପସ୍ଥିତି ସମ୍ପର୍କରେ ଅବଗତ କରାଇଲା । ବାର୍ତ୍ତାବହଙ୍କଠାରୁ ଯେଉଁ ସମ୍ବାଦ ଅବଗତ ହେଲେ, ତାହା ସେମାନଙ୍କୁ ଅବିଶ୍ୱାସ୍ୟ ମନେ ହେଲେ ମଧ୍ୟ ସତ୍ୟ, ନିଷ୍ଠୁର ସତ୍ୟ । ମହିଷାସୁର ମୂର୍ଚ୍ଛାଗତ ହୋଇ ସିଂହାସନରୁ ଭୂପତିତ ହେଲେ । ସଭାସଦଙ୍କ ମଧ୍ୟରେ ଆଶଙ୍କା ଓ ଆଲୋଡ଼ନ ଖେଳିଗଲା—କୌତୁକ ଯୁଦ୍ଧରେ ଅବଳାଗଣ କାଳବିମୋଚନ ପରି ଯୋଦ୍ଧାକୁ ନିହତ କଲେ । ଏହା କି ସମ୍ଭବ ? ବିଶ୍ୱାସ ହୁଏ ନାହିଁ ।

ସେବକ ସେବିକା ଉପସ୍ଥିତ ସଭାସଦ୍ ତତ୍ପର ହୋଇଉଠିଲେ । ଧୂମ୍ରଲୋଚନ ସଂଜ୍ଞାହୀନ ମହିଷା ନୃପତିଙ୍କ ମୁଖରେ ଜଳ ସିଞ୍ଚନ କଲେ । ଆଉ କେହି ଆଲଟ ବ୍ୟଜନ କଲେ । ନାନା ଉପାୟରେ ଧରାଶାୟୀ ରାଜନଙ୍କୁ ସାନ୍ତ୍ୱନା କଲେ ।

ମହାପ୍ରତାପଶାଳୀ ଦେବତା ବ୍ରାହ୍ମଣପୀଡ଼କ ମହିଷାସୁର ମୁଖରେ ଏ କି କରୁଣ ବିଳାପ ! ଯେପରି ହୃଦୟ ବିଦାରକ, ସେହିପରି ନୈରାଶ୍ୟ-ଜନକ । କାଳବିମୋଚନର ଗୁଣାବଳୀ ଗୁଣି ଗୁଣି ସେ ବିଳାପ କରୁଥିଲେ, ନିଜକୁ ମଧ୍ୟ ଧିକ୍କାର କରୁଥିଲେ । —ବାବୁରେ ! ଜେନାବଳୀ ନଗ୍ରକୁ ତୁ

ଆହତ୍ୟ କରଣ । ତୋ ହତ୍ରେ ମୋର ଜୀବନଧାରଣ ନିରର୍ଥକ । ମୋର ଏ ନିର୍ଲଜ୍ଜ ଜୀବନକୁ ଧିକ୍ । କାହାପାଇଁ ଏ ରାଜ୍ୟଭୋଗ, ଯୁଦ୍ଧ ବିଗ୍ରହ ! ମହା ମହା ଯୋଦ୍ଧା, ଆତ୍ମୀୟ ସ୍ୱଜନଙ୍କର ନାରୀଙ୍କ ହାତରେ ନିଧନ ତାଙ୍କୁ ଦୁଃଖରେ ଅଭିଭୂତ କରିଥିଲା । ତେଣୁ ଭବିଷ୍ୟତରେ ଜୀବିତ ନିଜର ପୁତ୍ର-ପୌତ୍ରଙ୍କର ଜୀବନରେ ବିପଦ ଆଶଙ୍କା ସେ ଧୂମ୍ରଲୋଚନ, ଶୁମ୍ଭ ଉପଶୁମ୍ଭଙ୍କୁ ଦେହଧରି ପଳାୟନ କରିବାକୁ ଉପଦେଶ ଦେଉଥିଲେ ।

ଅପ୍ରମିତ ବଳଶାଳୀ ନିର୍ଭୀକ ରାକ୍ଷସରାଜ ମୁଖରେ ଏ ଭୀରୁତା, ପଳାୟନପନ୍ଥି ମନୋଭାବ । ପରମୁହୂର୍ତ୍ତରେ ସେ କାଳବିମୋଚନର ହତ୍ୟା-କାରିଣୀମାନଙ୍କୁ ପାମରୀ, ଦୋରୁଣୀ, କ୍ରୂର ସ୍ତ୍ରୀ ବୋଲି ମଧ୍ୟ ଅବଜ୍ଞା କରୁଥାଏ । ଆଉ କେତେବେଳେ କ୍ରୋଧ ଜର୍ଜରିତ ହୋଇ ଯଥୋଚିତ ପ୍ରତିଶୋଧ ନେବା ପାଇଁ ସେ ଆସ୍ଫାଳନ କରୁଥାଏ । ଦୁଃଖ, ଲଜ୍ଜା, ମନସ୍ତାପ ଓ କ୍ରୋଧରେ ଉନ୍ମତ୍ତ ଦୈତ୍ୟରାଜ ରେ'ରେ ଧ୍ୱନି କରି ଶାଣିତ ଖଡ୍ଗ ଧାରଣ କଲା ଏବଂ ନିକଟସ୍ଥ ବୈଭବ ବ୍ୟାପ୍ତ ଧବଳ ପର୍ବତକୁ ଦୁଇଫାଳ କରିଦେଲା । ରକ୍ତମୁଖା ମହିଷା ଆକାଶକୁ ଗୁଣ୍ଡି ଦେବତାମାନଙ୍କୁ ନିଃଶେଷ କରିଦେବାକୁ କଲା ଆଗ୍ନେୟ ପ୍ରତିଜ୍ଞା । ତା'ର ପ୍ରଚଣ୍ଡ ମୂର୍ତ୍ତି, ଧ୍ୱଂସକାରୀ ଶକ୍ତି ଓ ପ୍ରମତ୍ତ ଶବ୍ଦ ଶ୍ରବଣ କରି ଦେବଗଣ 'ତ୍ରାହିନଃ' ରବ ଛାଡ଼ିଲେ । ତ୍ରାଣକର୍ତ୍ତ୍ରୀ ଦୁର୍ଗତିନାଶିନୀଙ୍କର ଶରଣ ଭିକ୍ଷା କଲେ ।

ଉପସ୍ଥିତ ମୁହୂର୍ତ୍ତରେ ଦେବଗଣଙ୍କୁ ରକ୍ଷା କରିବା ମହାମାୟାଙ୍କର ପରମ କର୍ତ୍ତବ୍ୟ । ସେ ଅବିରାମ ଶର ବର୍ଷଣ କରି ମହିଷାସୁରର ସ୍ୱର୍ଗପୁର ଯାତ୍ରାପଥକୁ ଅବରୋଧ କରିଦେଲେ । ତା'ପରେ ନିଃଶଙ୍କ ମାରବତା ।

ମାଘ ରଜନୀର ଶେଷ ଯାମରେ ବିପଦାପନ୍ନ ସନ୍ଦେଶ ପାଇ ଦେବୀଦୁର୍ଗା ଉତ୍କ୍ଷିପ୍ତ ହୋଇ ଉଠିଲେ ।

ରଜନୀର ଗୁରୁଗମ୍ଭୀର, ସୂଚୀ ଭେଦ୍ୟ ଅନ୍ଧକାର ମଧ୍ୟରେ ପ୍ରତିହିଂସା-ପରାୟଣ ମହିଷାସୁର ଦେବୀମାନଙ୍କର ନିବାସସ୍ଥଳୀ ରତ୍ନଗିରି ଅଭିମୁଖେ ଅଭିଯାନ ଚଳାଇଲା । ମହାବଳଶାଳୀ ଅସୁରଶ୍ରେଷ୍ଠ ମହିଷା ତା'ର କାୟା ବିସ୍ତାର କରି କ୍ରୋଧରେ ଅଗ୍ରସର ହେଲା । ପ୍ରତିହିଂସା ଅନଳରେ ଅନ୍ତର ତା'ର ଜଳୁଥିବା ବିସ୍ଫାରିତ ରକ୍ତିମ ନୟନ । ତା'ର ଶତସିଂହର ପରାକ୍ରମ ସମ୍ମୁଖରେ ରତ୍ନଗିରିର ସ୍ଥିତି ସତେ ଯେପରି ଏକ ମେଷ ଶାବକର

ଅସହାୟ ରୂପ ଧାରଣ କରନ୍ତି । ଧବଳଧାମରେ ତା'ର ସବୁ ଶତବର୍ଷୀୟ ଓ ଛିନ୍ନବିଚ୍ଛିନ୍ନ ହୋଇଗଲା । ବାସହୀନା ଦେବୀମାନେ ଶୂନ୍ୟରେ ଦୋଦୁଲ୍ୟମାନ । ବିପଦଗ୍ରସ୍ତ, ଅସହାୟା ଦେବୀମାନଙ୍କ କଣ୍ଠରେ ମାହେଶ୍ୱରୀଙ୍କଠାରେ ବିନମ୍ର ପ୍ରାର୍ଥନା ଓ ସ୍ତୁତି ଗାନରେ ସାରା ବିଶ୍ୱ ପ୍ରତିଧ୍ୱନିତ ହୋଇ ଉଠିଲା –

"ଶରଣ୍ୟେ ତ୍ର୍ୟମ୍ବକେ ଗୌରି ନାରାୟଣି ନମୋଽସ୍ତୁତେ ।
ସୃଷ୍ଟି ସ୍ଥିତି ବିନାଶାନାଂ ଶକ୍ତିଭୂତେ ସନାତନି
ଗୁଣାଶ୍ରୟେ ଗୁଣମୟେ ନାରାୟଣି ନମୋଽସ୍ତୁତେ ।।"

ତୁ ବହୁ ରୂପରେ ବିଦ୍ୟମାନା –କେତେବେଳେ କାତ୍ୟାୟିନୀ, କେତେବେଳେ ଯୋଗରୂପା, ମହାତପା, ଯୋଗେଶ୍ୱରୀ ତ ପୁଣି ତ୍ରାଣକର୍ତ୍ତ୍ରୀ ଦୁର୍ଗତିନାଶିନୀ ଦୁର୍ଗା ରୂପରେ ଆବିର୍ଭୂତା । ଜଗତର ଦୁଃଖ ମୋଚନ କରି ମଙ୍ଗଳର ଧାରା ଅଜାଡ଼ି ଦେଉ, ଦୁଷ୍ଟ ନିବାରଣ କରୁ ତୁ ମଙ୍ଗଳମୟୀ ଜନନୀ । ସୃଷ୍ଟି ତ୍ରାଣକର୍ତ୍ତ୍ରୀ, ଧନଜନ ଗୋପଲକ୍ଷ୍ମୀ ଐଶ୍ୱର୍ଯ୍ୟଦାୟିନୀ ମାତା । ତୋ'ର କୃପା କଟାକ୍ଷକୁ ଦେବାସୁର, କମଳଯୋନି ବ୍ରହ୍ମା ଆକୁଳ ଦୃଷ୍ଟିରେ ଚାହିଁ ରହିଥାନ୍ତି । ମା'ଗୋ ! ପ୍ରଚଣ୍ଡ ପ୍ରତାପୀ ମହିଷାର ନିପୀଡ଼ନରୁ ଆମକୁ ରକ୍ଷାକର । 'ତ୍ରାହି ନଃ ଜଗଦୀଶ୍ୱରୀ !' ପ୍ରତିଟି ଦେବୀ କଣ୍ଠରୁ ଉଚ୍ଚାରିତ ସମର୍ବେତ କାତର ସ୍ୱରରେ ଆକାଶ ବତାସ ପ୍ରକମ୍ପିତ ହୋଇ ଉଠିଲା ।

ଜଗତମାତାଙ୍କର ମାତୃସୁଲଭ ପ୍ରାଣ ବିଗଳିତ ହୋଇଗଲା । ନାସାଗ୍ରରୁ ନିର୍ଗତ ହେଲା ଅଗ୍ନିଗର୍ଭ ପବନ । ଦେବଗଣ ମହାଦେବୀଙ୍କର ଅଭିଯାନ ଉଦ୍ଦେଶ୍ୟରେ ତତ୍‌କ୍ଷଣାତ୍ ପ୍ରେରଣ କଲେ ସ୍ୱର୍ଣ୍ଣୀୟ ଖେଚରୀ ବିମାନ । ମୁହୂର୍ତ୍ତକରେ ସପ୍ତଦ୍ୱୀପ ଅତିକ୍ରମ କରି ବାୟୁ ବେଗରେ ଦେବୀ ମହିଷାର ଦୁର୍ଗଦେଶରେ ଉପନୀତ ହେଲେ ।

ଦେବୀ ଓ ଦାନବ, ନାରୀ ଓ ପୁରୁଷ ସୃଷ୍ଟି ଓ ପ୍ରଳୟ ଭିତରେ ତୁମୁଳ ସଂଗ୍ରାମ ଯଦିଓ କ୍ଷୟକ୍ଷତିମୁଖୀ, ତଥାପି ନିର୍ମମ ସତ୍ୟ ଓ ଭୟଙ୍କର । ଉଭୟଙ୍କର ପଦାଘାତରେ ବସୁମତୀ ଦୋଦୁଲ୍ୟମାନ, ଉଭୟଙ୍କର କଳେବର କ୍ଷରିତ ରୁଧିରରେ ଲୋହିତ ନିର୍ଝର, କଣ୍ଠରେ ବଜ୍ରର ନିନାଦ ।

ତେତିଶ କୋଟି ଦେବତା ପ୍ରମାଦ ଗଣିଲେ, ଆକାଶ ମଣ୍ଡଳ ପ୍ରକମ୍ପିତ ଓ ଧୂସରିତ ହୋଇ ଉଠିଲା । ଜୀବଜଗତ୍ ବନ୍ଧୁସ୍ତ-ବମୂଢ଼, ଆତଙ୍କିତ, ପବନ ନିସ୍ତବ୍ଧ ।

ଏକ ଅଦ୍ଭୁତ ଦୃଶ୍ୟ ! ମହିଷାସୁରର ଲୌହ କପାଟ ସଦୃଶ ବକ୍ଷ ଉପରେ ଆସୀନା ମାତା ଦୁର୍ଗାଦେବୀ ତା'ର ବକ୍ଷ ବଦୀର୍ଣ୍ଣ କରୁଛନ୍ତି । ଦୈତ୍ୟରାଜ ମହିଷାର ପ୍ରକାଣ୍ଡକାୟ ଶରୀର ତାଙ୍କୁ ତାଙ୍କର ବାହନ ସିଂହ ସଦୃଶ ଦୃଶ୍ୟମାନ ହେଲା । ପୁନଶ୍ଚ ନିର୍ନିମେଷ ନେତ୍ରରେ ଚାହିଁଲେ ମହାମାୟୀ ବୈଶ୍ୱ ମହିଷା ରାକ୍ଷସ ଆଡ଼େ । ତା'ର ଉପୃଷ୍ଟିତ ସକରୁଣ ଦୃଷ୍ଟି ତାଙ୍କ ପ୍ରାଣରେ କରୁଣା ସଞ୍ଚାର କଲା । ତା'ର ହୃତ୍ସ୍ପନ୍ଦନରୁ ସେ ଶୁଣିପାରୁଥିଲେ ସକାତର ସ୍ତୁତିଗାନ । ଜଗଦମ୍ବାଙ୍କ ଅନ୍ତରରେ ମାୟା ଜାତହେଲା ମହିଷାସୁର ପ୍ରତି । ସେ ତାକୁ ମୁକ୍ତକଲେ ।

ଦେବୀଙ୍କ ପାଦ-ପଦ୍ମରେ ପ୍ରଣିପାତ କରି ଭୟାତୁର ମହିଷା ନିଜ ଜୀବନ ଧରି ପବନ ବେଗରେ ସ୍ୱପୁରକୁ ପଳାୟନ କଲା ।

ତା'ର ଚଳପଥକୁ ସିଂହବାହିନୀ ଚାହିଁ ରହି ମୃଦୁ ମୃଦୁ ହସୁଥିଲେ ।

ଯେ ହସରେ ପୁରି ରହିଥିଲା ଅଭେଦ୍ୟ ରହସ୍ୟ ।



# ଶୁମ୍ଭ ନିଶୁମ୍ଭ ବଧ

ଶ୍ରୀ ସାତକଡ଼ି ହୋତା

ଶୁମ୍ଭ ନିଶୁମ୍ଭ ଆନନ୍ଦରେ ରାଜ୍ୟ ଶାସନ କରୁଥିବା ସମୟରେ ଦିନେ ହଠାତ୍ ମହିଷାସୁର ସେଠାରେ ଉପସ୍ଥିତ ହୁଅନ୍ତେ ତାଙ୍କୁ ଯଥାବିଧି ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ ଶୁମ୍ଭ ନିଶୁମ୍ଭ । କୁଶଳ ଜିଜ୍ଞାସା କଲାରୁ ମହିଷାସୁର କାମଜର୍ଜରିତ କଣ୍ଠରେ ନିଜର ଅଭିଳାଷ ବ୍ୟକ୍ତ କଲା । ଦୂତ ମୁହଁରୁ ତ୍ରୈଲୋକ୍ୟସୁନ୍ଦରୀ ସେଇ ତରୁଣୀ ବିଷୟରେ ଯାହା ଶୁଣିଥିଲା ସବୁ ବର୍ଣ୍ଣନା କରି କପଟ ନ କରି ସେ କହିଲା—'ସେଇ କନ୍ୟାକୁ ଅଙ୍କଶାୟିନୀ ଭାବେ ଗ୍ରହଣ କରିବା ଲାଗି ମୁଁ ନିଷ୍ପତ୍ତି କରିଛି । କଥାରେ ଅଛି ଯିଏ ଯାହାର ଯୋଗ୍ୟ ତାକୁ ତାହା ଭୋଗ୍ୟ । ସେଇ ଅପୂର୍ବ ସୁନ୍ଦରୀ ମୋର ରାଣୀ ନ ହେବା ପର୍ଯ୍ୟନ୍ତ ମୁଁ ଶାନ୍ତିରେ ରାଜ୍ୟଶାସନ ବା ଜୀବନ-ଧାରଣ କରିପାରିବି ନାହିଁ ।'

ମହିଷାସୁରର ଏସନ ବାଣୀ ଶୁଣି ଶୁମ୍ଭ ନିଶୁମ୍ଭ ଚିନ୍ତାରେ ପଡ଼ିଲେ । ବିନ୍ଧ୍ୟଗିରି ଶିଖରରେ ବାସ କରୁଥିବା ସେହି ଅପରୂପା ଯୁବତୀକୁ ଲାଭ କରିବା ପାଇଁ ରାଜା ମନ ବଳାଇ ଥିବାରୁ କ୍ଷୁବ୍ଧ ହେଲେ । ସେମାନେ ଦନୁଜ କୁଳରେ ଜନ୍ମ ହୋଇଥିଲେ ହେଁ ଏପର୍ଯ୍ୟନ୍ତ ଧର୍ମଭୟ ଥିଲା ମନରେ । ଧର୍ମଛଡ଼ା ପୁରୁଷର ଶ୍ରୀ ବା କୀର୍ତ୍ତି ବେଶିକାଳ ରହେ ନାହିଁ । ନୀତିନିୟମ ମାନି ଧରଣୀ ଚାଲିଛି ବୋଲି ଏଠାରେ ସୂର୍ଯ୍ୟ ଉଠେ ଠିକ୍ ସମୟରେ, ପବନ ବହେ ଯଥାରୀତି, ଫୁଲ ଫୁଟେ ଓ ଋତୁ ବଦଳେ ସମୟ ଅନୁସାରେ । ମହିଷାସୁର ମହାରାଜା । ତାଙ୍କୁ ଦେଖି ଜଗି ଚଳନ୍ତି

ପ୍ରଜାମାନେ । ସେ ପର ସ୍ତ୍ରୀକୁ ପାଇବା ପାଇଁ ମନ ବଳାଇଲେ ସଂସାର ଧନ୍ଦା କରିବ କେବଳ ।

ସେମାନେ ବହୁତ ବୁଝାଇଲେ କିନ୍ତୁ ତାହା ସତ୍ତ୍ୱେ ଅବୁଝା ମହିଷାସୁର ଆଦୌ ବୁଝିଲା ନାହିଁ, ବରଂ ସେଇ ଅପୂର୍ବ ସୁନ୍ଦରୀ ନାରୀକୁ ପାଇବା ଲାଗି ତା' ମନର ପ୍ରତିଜ୍ଞା ଅଟଳ ହେବାକୁ ଲାଗିଲା । ପର ଦାର ହରଣ କରିବା ଯେ ମହାପାପ, ଏହା ଶୁମ୍ଭ ନିଶୁମ୍ଭ ବାରମ୍ବାର କହିବା ସତ୍ତ୍ୱେ ମହିଷାସୁର କହିଲା—ମୁଁ ଚକ୍ରବର୍ତ୍ତୀ, ଏଇ ପୃଥିବୀର ସବୁ ସମ୍ପତ୍ତି ମୋର । ମୁଁ ତ୍ରିଭୁବନ ବିଜୟୀ ବୀର । ବୀରଭୋଗ୍ୟା ବସୁନ୍ଧରା, ତେଣୁ ସବୁ ସୁନ୍ଦର ଜିନିଷ ମୋର ପ୍ରାପ୍ୟ । ସେଇ ବରାଙ୍ଗନା ମୋର ଅଙ୍କଶାୟିନୀ ହେବା ଯଥାର୍ଥ ।

ମହିଷାସୁରର ଏପରି ବାଣୀ ଶୁଣି ବିମର୍ଷ ହେଲେ ଶୁମ୍ଭ ନିଶୁମ୍ଭ । ସେମାନେ ମନେ ମନେ ଭାବିଲେ ଯେ ଏବେ ହୁଏତ କାଳବେଳ ଆସିଗଲା । ପରସ୍ତ୍ରୀ ଭୋଗ କରିବା ରାଜ୍ୟର ଧର୍ମ ନୁହେଁ କି କର୍ମ ନୁହେଁ । ମହିଷା ଧର୍ମକର୍ମ ଭୁଲି ଭୋଗ ବାସନାମତ୍ତ ହୋଇ ମହୀମଣ୍ଡଳରେ ଅପକୀର୍ତ୍ତି ଅର୍ଜିବା ସାର ହେବ ସିନା ଅସୁର କୁଳର ଶ୍ରୀ ଓ ସମ୍ମାନ ବଢ଼ିବ ନାହିଁ । ତଥାପି ଅନନ୍ୟୋପାୟ ହୋଇ ସେମାନେ ସେଇ ଅନିନ୍ଦ୍ୟ ସୁନ୍ଦରୀର ଅନୁସନ୍ଧାନରେ ବାହାରି ପଡ଼ିଲେ ।

ଜେନାବଳୀ ନଗର ଝଟକୁଥାଏ ଐଶ୍ୱର୍ଯ୍ୟରେ । ସେଇ ନଗର ଉପରେ ଦୁର୍ଗାଙ୍କର କୋପଦୃଷ୍ଟି ପଡ଼ିଲା ତାହା ଥରହର ହେଲା । କେଉଁଠି କେଉଁଠି ଅଗ୍ନିପାତ ମଧ୍ୟ ହେଲା । ଅନେକ ଧନରତ୍ନ ଧ୍ୱଂସ ହେଲା । ଅକାଳରେ ମେଘ ବୃଷ୍ଟି କଲା, ଆକାଶରେ ବିଜୁଳି ଚମକିଲା ଏବଂ ବଜ୍ର ପଡ଼ି ପୃଥିବୀ ନଷ୍ଟ ହେଲା । ନଗରୀ ଉପରେ ଶକୁନ ବସି, ଉତ୍ତରକୁ ମୁହଁକରି ମାଂସ ଖାଇବା ଦେଖାଗଲା ଏବଂ ଘନଘନ ଉଲ୍କାପାତ ହେଲା । ଏପରି ଅଶୁଭ ଶକୁନ ଦେଖି ନଗର ଓ ପୁରବାସୀ ବିଚଳିତ ଏବଂ ଚକିତ ହେଲେ । ଭୂକମ୍ପ ହେବାର ଦେଖି ସମସ୍ତ ପ୍ରଜା ଭୟଭୀତ ହେଲେ ।

ଏପରି ଦୁଃସମୟରେ ମହିଷାସୁରର ଆଜ୍ଞା ପାଳନ କରିବା ପାଇଁ ଶୁମ୍ଭ ନିଶୁମ୍ଭ ସେଇ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଦୁର୍ଗାଙ୍କୁ ଖୋଜି ବୁଲିଲେ । ତାଙ୍କୁ ଯେପରି ହେଉ ଧରିନେଇ ମହାରାଜାଙ୍କୁ ଭେଟି ଦେବାକୁ ହେବ ।

ଏହି କାର୍ଯ୍ୟ ସମ୍ପାଦନ କଲେ ମହିଷା ସହିତ ସେମାନଙ୍କର ସମ୍ପର୍କ ଆହୁରି ସୁଦୃଢ଼ ହେବ ।

ବହୁ ରମଣୀୟ ନଗର, ଜନପଦ, ସବୁଜ ଅରଣ୍ୟ ଓ ପ୍ରାନ୍ତର, ନଦୀକୂଳ ଓ ଦେବାଳୟ ଭ୍ରମଣ କରି ଶେଷରେ ରତ୍ନଗିରି ଶିଖର ଉପରେ ସେଇ ଜଗତ ସୁନ୍ଦରୀଙ୍କୁ ଠାବ କଲେ ଶୁମ୍ଭ ନିଶୁମ୍ଭ । ଦୁର୍ଗାଙ୍କର ଅପରୂପ ଭୁବନମୋହିନୀ ରୂପ ଦେଖି ସେମାନେ ପ୍ରଥମେ ଚକିତ ଏବଂ ପରେ ପରେ ମୋହିତ ହେଲେ । ସେମାନଙ୍କ ମନ ବଢ଼ିବା ପାଇଁ ଦୁର୍ଗା ସଂହାର ମୂର୍ତ୍ତି ପରିହାର କରି ଶାନ୍ତମୂର୍ତ୍ତି ଧାରଣ କଲେ । ଝୀନବସ୍ତ୍ର ପରିଧାନ କରି ମୁହଁ ତଳକୁ କରି ଆଡ଼ ନୟନରେ ଶୁମ୍ଭ ନିଶୁମ୍ଭଙ୍କୁ ଦେଖି ନେଲେ ଥରେ ।

ଶୁମ୍ଭ ନିଶୁମ୍ଭ ତାଙ୍କର ପରିଚୟ ପୁଚ୍ଛନ୍ତେ ଦୁର୍ଗା କହିଲେ—ମେରୁ ଦେଶ ମୋର ଆଦି ଜନ୍ମସ୍ଥାନ । କର୍ମ ଦୋଷରୁ ଗୃହ ତ୍ୟାଗକରି ବଣକୁ ଆସିଛି । ଜୀବନ ଉପରେ ଆଉ ମୋର କେଉଁ ଆଗ୍ରହ ନାହିଁ କି ମାୟା ନାହିଁ । ଏ ଜୀବନ ରହିଲାଭ ନାହିଁ । ମୁଁ ନିର୍ଗୁଣିତା ଅବଳା । ଦୁର୍ଗାଙ୍କର ଏପରି ମଧୁର ବଚନ ଶୁଣି ଶୁମ୍ଭ ନିଶୁମ୍ଭ ଉତ୍ସାହିତ ହୋଇ କହିଲେ—ତୁମ ସୌନ୍ଦର୍ଯ୍ୟର ତୁଳନା ନାହିଁ । ତୁମେ ବୀରାଙ୍ଗନା । ଦୈତ୍ୟ ମହାରାଜା ମହିଷା ଚଣ୍ଡ-ମୁଣ୍ଡଙ୍କୁ ପଠାଇଥିଲେ ତୁମକୁ ପାଶ୍ରେଟି ନେବାପାଇଁ । ତଥାପି ତୁମେ ନ ଯିବାର କାରଣ ଆମେ ବୁଝିପାରୁନୁ ।

ଦୁର୍ଗା ମଧୁର ସ୍ୱରରେ କହିଲେ ମିଥ୍ୟାଠାରୁ ଆଉ ବଡ଼ ପାପ ନାହିଁ ସଂସାରରେ । ସତ୍ୟ ଅଛି ବୋଲି ସାଗର, କୂଳ ଲଂଘି ପୃଥିବୀକୁ ଗ୍ରାସ କରୁନାହିଁ । ଚଣ୍ଡମୁଣ୍ଡଙ୍କ କଥା କାହିଁକି କହୁଛ ? ଯଦି ମୋ' ପ୍ରତି ମହିଷା ଆଗ୍ରହୀ ତେବେ ସେ ନିଜେ ରାଜରଥ ନେଇ ଆସିଥାନ୍ତା ମୋତେ ସଙ୍ଗୋଳିବା ପାଇଁ । ପରକଥା ଶୁଣି କେହି ଯାଏ ନା ମୁଁ ଯାଇଥାନ୍ତି ? କିନ୍ତୁ ମୋ' କଥା ନଶୁଣି ମାତ୍ର ଧର୍ମ ଭୁଲି ଚଣ୍ଡମୁଣ୍ଡ ମୋ' ଉପରେ ବଳାତ୍କାର କରିବା ପାଇଁ ମୋ' କେଶ ଧରିବା ଲାଗି ହାତ ବଢ଼ାଇବାରୁ କ୍ଷଣକେ ନାଶ ଗଲେ । ତୁମେ ଦୁହେଁ ଧାର୍ମିକ ପରି ମନେ ହେଉଛ । ମୁଁ ଅଭାଗିନୀ ନିର୍ଗୁଣିତା ନାରୀ । ମୋର ସହାୟତା କରିବା ତୁମ୍ଭମାନଙ୍କର ଧର୍ମ ।

ଶୁମ୍ଭ ନିଶୁମ୍ଭ ଏପରି ବଚନ ଶୁଣି ଉତ୍‌ଫୁଲ୍ଲିତ ହେଲେ । ସେମାନେ କହିଲେ—ସଂସାରରେ କଥା ଅଛି ଯେ ସୁନ୍ଦରୀ ସ୍ତ୍ରୀ, ସୁନ୍ଦର ଦେବତା, ସୁବ୍ରାହ୍ମଣ ଏମାନେ ନିଜ ସମ୍ବନ୍ଧରେ କିଛି ଗୋପନ ନକରି ସତ ହିଁ କହନ୍ତି । ତୁମେ ଯାହା କହିଲେ ସେଥିରେ ଆମର ପ୍ରତ୍ୟୟ ହେଉଛି । ଏଥର ଆମ ପରିଚୟ ତମେ ଜାଣିବା ଦରକାର ।

ଏହାପରେ ଶୁମ୍ଭ ନିଶୁମ୍ଭ ନିଜ ନିଜର ପରିଚୟ ପ୍ରଦାନ କରି କହିଲେ ଯେ ମହାପ୍ରତାପୀ ତାରକାସୁରର ସେ ଦୁହେଁ ପଣନାତି ଏବଂ ମହାବାହୁ ସେମାନଙ୍କର ପିତା । ପରାକ୍ରମରେ ସେମାନେ ଅଜେୟ ଏବଂ ଅନାୟାସରେ ଇନ୍ଦ୍ରକୁ ମଧ୍ୟ ପରାସ୍ତ କରି ପାରନ୍ତି । ବିଷ୍ଣୁଙ୍କୁ ଛାଡ଼ି ଆଉ କାହାକୁ ସେମାନେ ଭୟ କରନ୍ତି ନାହିଁ ।

ଦୁର୍ଗା କିଛି ନ ଜାଣିବା ପରି ଆହୁରି ଜାଣିବା ପାଇଁ ବାହାନା କରି ପ୍ରଶ୍ନ ପଚାରନ୍ତେ ଶୁମ୍ଭ ନିଶୁମ୍ଭ ଉତ୍ସାହିତ ହୋଇ କହିଲେ— ଅନାହାରରେ ଆମେ ନିଅଶହ ବର୍ଷ ସାଗର ସଙ୍ଗମରେ ତପସ୍ୟା କଲୁ । ଆମ ଦେହରୁ ମାଂସ ଚର୍ମ ମିଳାଇଗଲା କେବଳ ଅସ୍ଥିମାତ୍ର ରହିଲା । ତପସ୍ୟା ବଳରୁ ସେଥିରୁ ନୂଆ ଶରୀରର ଉତ୍ପତ୍ତି ହେଲା । ପୁଣି ନ'ଶହ ବର୍ଷ ତପସ୍ୟା କରି ଦିନେ ସୌଭାଗ୍ୟରୁ ବିଧାତାଙ୍କ ଦର୍ଶନ ଲାଭ କଲୁ । ହଂସ ପିଠିରେ ବସି ବ୍ରହ୍ମା ଆବିର୍ଭାବ ହେଲେ ଏବଂ ପ୍ରସନ୍ନ ଚିତ୍ତରେ ବର ଯାଚିଲେ । ଆମେ କୃତକୃତାର୍ଥ ହୋଇ କହିଲୁ—କୌଣସି ପୁରୁଷ ଯେପରି ଆମକୁ ବଧକରି ନପାରେ ଏଇ ବର ଦିଅ । ଏହାଦ୍ୱାରା ଅମର ହେବା ପଥ ପ୍ରଶସ୍ତ ହୋଇଯିବ । ବିଷ୍ଣୁଙ୍କ ହାତରେ ଆମେ ଆଉ ନିହତ ହେବାର ଭୟ ନଥିବ ।

ତହୁଁ ବ୍ରହ୍ମା କହିଲେ—ବିଷ୍ଣୁଙ୍କ ମାୟା ବୁଝିବା କଷ୍ଟ । କେତେ-ବେଳେ ସେ ପୁରୁଷ ତ ଆଉ କେତେବେଳେ ସ୍ତ୍ରୀ ବେଶ ଧରନ୍ତି । କନ୍ୟା ବେଶ ଧରି ସେ ବୈଲୋଚନ ଦୈତ୍ୟକୁ ନାଶ କରିଥିଲେ ।

ବ୍ରହ୍ମାଙ୍କ ଏପରି କଥା ଶୁଣି ଆମେ ପୁଣି କହିଲୁ—ଆମକୁ ଆଉ ଗୋଟିଏ ବର ଦିଅନ୍ତୁ—କୌଣସି ସ୍ତ୍ରୀ ଆମକୁ ଯେପରି ବଧ ନ କରନ୍ତି ।

ବ୍ରହ୍ମା ସେହି ବର ଦେଲେ । ସେହିଦିନୁ ଆମେ ଅଜେୟ ଓ ଅବଧ୍ୟ ହୋଇ ରହିଛୁ । ତୁମେ ଆମର ବଳବୀର୍ଯ୍ୟ କେତେ ଜାଣ । ଆମର ଅକଳନ୍ତ ଐଶ୍ୱର୍ଯ୍ୟ । ତେଣୁ ହେ ବରାନନେ ! ତୁମେ ଆମକୁ ବରଣ କର ।

ଶୁମ୍ଭ ନିଶୁମ୍ଭ ମୁହଁରୁ ଏପରି ବାଣୀ ଶୁଣି ଦୁର୍ଗା କହିଲେ—ତୁମ ପ୍ରସ୍ତାବ ମନ୍ଦ ନୁହେଁ, କିନ୍ତୁ ଏଇ ଦେହରେ ଅନେକ କାଳ ବଞ୍ଚିବି । ଏଣେ ପର ସ୍ତ୍ରୀ ଉପରେ ତୁମ୍ଭମାନଙ୍କର ଲୋଭ । ମୁଁ ଯଦି ତୁମକୁ ବରଣ କରେ ଯୁବତୀମାନଙ୍କ ସହିତ କେତେକାଳ ରହିବି ? ସଂଶୟ ନକରି, ଗୋପନ ନକରି ଯାହା ଜାଣିଛ କହିଯାଅ ।

ଏହାଶୁଣି ଶୁମ୍ଭ ନିଶୁମ୍ଭ ଚିନ୍ତାମଗ୍ନ ହେଲେ ଏବଂ ଟିକେ ପରେ ପୂର୍ବ କଥା ମନେ ପଡ଼ିଗଲା । ସେମାନେ କହିଲେ—'ବ୍ରହ୍ମାଙ୍କୁ ପୁଣି ଆମେ ଅନୁନୟ ବିନୟ କରି ଆଉ ଏକ ବର ମାଗିଲୁ—ଆମକୁ ଆମର ମୃତ୍ୟୁଭେଦ କହନ୍ତୁ । ଆମେ ପୂର୍ଣାକ୍ଷରେ ମଧ୍ୟ ଏହା ଆଉ କାହାକୁ କହିନାହୁଁ, ଆଜି ତମକୁ କହୁଛୁ, ତୁମେ ଯେପରି ଆଉ କାହାକୁ ନକହ । ଯଦି ଆମେ ପରସ୍ପର ମଥା ଉପରେ ହାତ ରଖିବୁ, ତେବେ ଯାଇ ଆମର ମୃତ୍ୟୁ ହେବ ନଚେତ୍ ଆମେ ଅମର ହୋଇ ରହିବୁ ଏବଂ ଚକ୍ରବର୍ତ୍ତୀ ହୋଇ ପୃଥିବୀକୁ ଭୋଗ କରୁଥିବୁ ।' ନିଜ ବାହୁବଳରେ ଆମେ ମହିଷାସୁରକୁ ପରାସ୍ତ କରି ତା'ପରେ ତା' ସହିତ ସଖ୍ୟ ସ୍ଥାପନ କଲୁ । ଆମେ ବରୁଣପୁର ଜୟ କରି ଅଷ୍ଟନିଧି ଆଣିଲୁ, କୁବେର ପୁରରୁ ଧନରତ୍ନ ସବୁ ଉଦ୍ଧାର କଲୁ । ପୃଥିବୀର ସକଳ ସଂପଦ ଆମର । ବିଷ୍ଣୁ ମଧ୍ୟ ଆମକୁ ଭୟ କରନ୍ତି । ତେଣୁ ହେ ସୁନ୍ଦରୀ ! ଆଉ କାଳ ବିଳମ୍ବ ନକରି ଆମକୁ ପତିଭାବେ ବରଣ କର ।'.

ଦୁର୍ଗା ସ୍ମିତ ହାସ୍ୟକରି କହିଲେ —ଆଉ ଗୋଟିଏ କଥା—ତୁମର କଥା ଶୁଣି ମୁଁ ବଶ ହୋଇ ଗଲିଣି ! ମୁଁ ଏ ରାଜ୍ୟର ରାଜା ପାଖକୁ ଆସିଥିଲି, କିନ୍ତୁ ତାଙ୍କ ପାଖକୁ ଆଉ ଯିବାକୁ ମନ କରୁ ନାହିଁ, ତୁମ ଦୁହିଁଙ୍କୁ ଦେଖି ସବୁ ପାଶୋରି ଗଲିଣି । ବନ୍ଧୁ ବାନ୍ଧବ, ଆତ୍ମୀୟ ସ୍ୱଜନଙ୍କୁ ତ ଆଗରୁ ଛାଡ଼ି ଆସିଛି । ଏଣୁ ଯୁକ୍ତି ବଳରେ ମୁଁ ତୁମ୍ଭମାନଙ୍କର ଭାର୍ଯ୍ୟା ହୋଇ ଯାଇଛି କହିଲେ ଚଳେ । କିନ୍ତୁ ମୋ ମନରୁ ଉଦାସ ଭାବ ଯାଉ

ନାହିଁ । ତୁମେମାନେ ମୋତେ ପ୍ରସନ୍ନ କରିବା ପାଇଁ ନୃତ୍ୟ ଓ ରଙ୍ଗରସ କର । ତାହା ଦେଖିବାକୁ ମୋ ମନ ବ୍ୟାକୁଳ ହେଉଛି ।

ଦୁର୍ଗାଙ୍କ ମାୟା ଅପାର । ତାହା ସ୍ଥିର ଅସୁରେ ଅବା କପରି ବୁଝିବେ ! ତାଙ୍କର ଏପରି କଥା ଶୁଣି ଶୁମ୍ଭ ନିଶୁମ୍ଭ ଆହୁରି ପ୍ରଗଲ୍‌ଭ ହେଲେ । ଶରୀରରେ ଏକ ଅପୂର୍ବ ପୁଲକ ଖେଳିଗଲା । ମନ ଆହୁରି ଉଚ୍ଚାଟ ହେବାକୁ ଲାଗିଲା । ସେମାନେ ସହର୍ଷ ମନରେ କହିଲେ—ଏଇ ସାମାନ୍ୟ ଅନୁରୋଧ ଆମେ ନିଶ୍ଚୟ ପୂର୍ଣ୍ଣ କରିବୁ । ଆମେ ନୃତ୍ୟ ଗୀତରେ ବିଶାରଦ । ତାଣ୍ଡବ ନୃତ୍ୟରେ ଆମେ ଅଦ୍ୱିତୀୟ ।

ଏହା ଶୁଣି ଦୁର୍ଗା ପ୍ରୀତ ହୋଇ ସେମାନଙ୍କୁ ତାଣ୍ଡବନୃତ୍ୟ କରିବାକୁ କହିଲେ । କାମ ଜର୍ଜରିତ ଶୁମ୍ଭ ନିଶୁମ୍ଭ ଉଲ୍ଲସିତ ହୋଇ ମଧୁରସ୍ୱରରେ ଗୀତ ଗାଇବାକୁ ଲାଗିଲେ । ତା'ପରେ ସେମାନେ ତାଣ୍ଡବନୃତ୍ୟ ଆରମ୍ଭ କଲେ । ଚତୁର୍ଦ୍ଦିଗ ମୁଖରିତ ହୋଇ ଉଠିଲା । ସେମାନଙ୍କର ନୃତ୍ୟ ଗୀତ ଦେଖି ଦୁର୍ଗା କେତେବେଳେ କରତାଳି ତ ଆଉ କେତେବେଳେ ହର୍ଷଧ୍ୱନି କରି ସେମାନଙ୍କୁ ଆହୁରି ଉତ୍ସାହିତ କଲେ ।

ବେଳକୁବେଳ ଶୁମ୍ଭ ନିଶୁମ୍ଭଙ୍କ ଉଦଣ୍ଡ ତାଣ୍ଡବନୃତ୍ୟର ଗତି ବଢ଼ିବାକୁ ଲାଗିଲା । ହାତ, ପାଦ, ଶିର ଓ ଶରୀରର ପ୍ରତ୍ୟେକ ଭାଗ ଉଦ୍ଦାମ ହୋଇ ଉଠିଲା । କେତେବେଳେ ପାଦ ଶୂନ୍ୟରେ ତ ଆଉ କେତେ-ବେଳେ ହାତର ଗତି ବିଜୁଳିପରି କ୍ଷିପ୍ର । ଧାରଣା, ମୂର୍ଚ୍ଛନା, ଧୁଆମଠା, ଚନ୍ଦ୍ରକ୍ଷେପା, ବଙ୍କ, ପରିତାଳ, ଝାମ୍ପ ଏବଂ ପ୍ରବନ୍ଧମ ପ୍ରଭୃତି ବିଭିନ୍ନ ତାଳ ପ୍ରଦର୍ଶନ କଲେ ସେମାନେ । ପରେ ପରେ ଉତ୍ସାହିତ ହୋଇ ଶୃଙ୍ଗାର, ବୀର, ହାସ୍ୟରସ ମଧ୍ୟ ପ୍ରକଟିତ ହେଲା । ମହାମାୟା ସେଇ ନୃତ୍ୟ ଦେଖି ପ୍ରସନ୍ନ ହେବାର ସୂଚନା ଦେବାରୁ ସେମାନେ ଆହୁରି ଉଲ୍ଲସିତ ହୋଇ ମତ୍ତଗଜ ପରି ନିଜ ନିଜର ଶକ୍ତି ପ୍ରଦର୍ଶନ କଲେ ।

ତା'ପରେ ଦୁର୍ଗା କହିଲେ—ତୁମ୍ଭମାନଙ୍କର ନୃତ୍ୟ ଗୀତ ଦେଖି ମୁଁ ପ୍ରୀତ ହେଲି । କିନ୍ତୁ ମୋର ଆଉ ଗୋଟିଏ ମନୋବାଞ୍ଛା ପୂର୍ଣ୍ଣ କର । ଏହା ପୂର୍ଣ୍ଣ ହେଲେ, ତୁମ ଦୁହିଁଙ୍କୁ ବରଣ କରିବାରେ ଆଉ କିଛି ବାଧାବିଘ୍ନ ରହିବ ନାହିଁ, ତୁମ ଦୁହିଁଙ୍କୁ ମୁଁ ଖୁସିରେ ପ୍ରାଣନାଥ ଭାବେ ଗ୍ରହଣ କରିବି ।

ତୁମେ ଦୁହେଁ ଆତ୍ମାରଣ ମୂର୍ଚ୍ଛନା ପ୍ରଦର୍ଶନ କର ଏବଂ ଉଭୟ ଉଭୟଙ୍କ ମଥା ଉପରେ ହାତ ରଖ ।

ଶୁମ୍ଭ ନିଶୁମ୍ଭ ସେତେବେଳକୁ ତାଙ୍କ ରୂପଲାବଣ୍ୟ ଦେଖି ଏମିତି ମୋହିତ ହୋଇ ଯାଇଥିଲେ ଯେ ସେଇ ରୂପସୀଙ୍କୁ ଲାଭ ନକଲେ ସେମାନଙ୍କ ବଞ୍ଚିବା ନିରର୍ଥକ ଭାବିଲେ । ତେଣୁ ଆଉ କାଳବିଳମ୍ବ ନକରି ଦୁର୍ଗାଙ୍କ ମନୋବାଞ୍ଛା ପୂର୍ଣ୍ଣ କରିବାପାଇଁ ତାଳକୁ ମୁଣ୍ଡକରି ବଚନ ନୃତ୍ୟ କଲେ । ବ୍ରହ୍ମାଙ୍କ ବର ଆଜି ମନେପଡ଼ିଲା ନାହିଁ । କାମଦଗ୍ଧ ମନରେ ସବୁ ଭୁଲି ସେଇ ତ୍ରିପୁରସୁନ୍ଦରୀଙ୍କୁ ଲାଭ କରିବା ସକାଶେ ପରସ୍ପର ପରସ୍ପର ମଥା ଉପରେ ହାତ ରଖନ୍ତେ ପ୍ରଳୟାଗ୍ନି ପରି ଜଳିଉଠି ଭସ୍ମ ହୋଇଗଲେ ।

ସେମାନଙ୍କୁ ବଧ କରିବାଲାଗି ଆଜି ମହାମାୟାଙ୍କୁ ଅସ୍ତ୍ର ପ୍ରୟୋଗ କରିବାକୁ ପଡ଼ିଲା ନାହିଁ ।

ଭସ୍ମୀଭୂତ ହୋଇଥିବା ଶୁମ୍ଭ ନିଶୁମ୍ଭଙ୍କ ଭସ୍ମରାଶିକୁ ଦେଖି ମହାମାୟାଙ୍କ ମୁହଁ ଉପରେ ରହସ୍ୟମୟ ଉକ୍ତି ଉଠିଲା । ଆନନ୍ଦରେ ଦେବଗଣ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ।



# ଦୁର୍ଗାଙ୍କର ଆବିର୍ଭାବ ଓ ଦେବଗଣଙ୍କର ଅସ୍ତ୍ରଦାନ

ଡକ୍ଟର ବନବିହାରୀ ପଣ୍ଡା

ଅସୁରମାନଙ୍କୁ ବିଜୟ କରିବା ଲାଗି ଯଜ୍ଞର ଆୟୋଜନ କଲେ ପିତାମହ ବ୍ରହ୍ମା ଓ ଦେବବୃନ୍ଦ ।

ଅଗ୍ନିଙ୍କର ଶାନ୍ତି ଲାଗି ବ୍ରହ୍ମା ଆହୁତି ଦେଲେ ଅଗ୍ନିରେ । ମହା ଆନନ୍ଦ ମଧ୍ୟରେ ଜ୍ୟୋତିର ବିକାଶ ହେଲା—ସୃଷ୍ଟି ହେଲା ତେଜପୁଞ୍ଜ—ଯେଉଁଥିରେ ପ୍ରକାଶମାନ ହେଲେ ଅନାଦି ଶକ୍ତି ଅଭୟ କାତ୍ୟାୟିନୀ, ମହା ବୈଷ୍ଣବୀ ଦେବୀ । ଅନାଦି ଶକ୍ତିଙ୍କର ବେଦପାଦ, ଏକଶିର ଓ ସହସ୍ରଭୁଜ ମାତା ଅନ୍ନପୂର୍ଣ୍ଣାଙ୍କର ଦିବ୍ୟ ରୂପ ଦର୍ଶନ କଲେ ବ୍ରହ୍ମା, ରୁଦ୍ର, ଇନ୍ଦ୍ର, ଚନ୍ଦ୍ର, ମହାବିଷ୍ଣୁ । ଅଗ୍ନିଙ୍କୁ ଗୃହ୍ନିଁ ସମସ୍ତେ କଲେ ପ୍ରଣାମ । ଭକ୍ତିପୂତ ପ୍ରାଣରେ ସାଷ୍ଟାଙ୍ଗ ପ୍ରଣାମ କଲେ 'ତେତିଶକୋଟି ଦେବତା । ତା'ପରେ ଦଣ୍ଡାୟମାନ ହୋଇ ରହିଲେ ଅତି ବିମୋହିତ ଭାବରେ । ଦେବୀଙ୍କର ମହା ବୈଷ୍ଣବୀ ରୂପ ଅବଲୋକନ କରି ସ୍ତୁତିକଲେ ଦେବବୃନ୍ଦ । ତେତିଶକୋଟି ଦେବତାଙ୍କର ମହାତେଜକୁ ସାଙ୍ଗରେ ନେଇ ଆଜି ଅନ୍ନପୂର୍ଣ୍ଣାଙ୍କର ଆବିର୍ଭାବ ହେଲା ଏହି ମେଦିନୀରେ । ଦେବତାମାନଙ୍କର ଦୁର୍ଗତି ନାଶ କରିବା ଲାଗି ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହେଲେ ଆଦିମାତା । ଦେବତାମାନଙ୍କର ହୃଦୟରୁ ଦୂର ହେଲା ବ୍ୟାକୁଳତା । ବ୍ରହ୍ମା ମାତାଙ୍କର ନାମ ଦେଲେ ଦୁର୍ଗା । ମହାଶଙ୍ଖ ଧ୍ୱନି କଲେ ମହାପ୍ରଭୁ ପୁରୁଷୋତ୍ତମ, ମହାମାୟାଙ୍କର

ଶରୀରର ସୃଷ୍ଟି ହେଲ ବ୍ରହ୍ମ ତେଜର ଅନଳରୁ । ବିଷ୍ଣୁଙ୍କର ତେଜରୁ ବିକାଶ ଲଭିକଲ ଦେବୀଙ୍କର ମୁଖମଣ୍ଡଳ । ଈଶ୍ୱରଙ୍କ ତେଜରୁ ଜାତ ହେଲ ଦନ୍ତପନ୍ତ । ଇନ୍ଦ୍ରଙ୍କର ତେଜରୁ ନୟନ, ସୂର୍ଯ୍ୟଙ୍କର ତେଜରୁ ନାସିକା, ଅଗ୍ନିଙ୍କ ତେଜରୁ ଜିହ୍ୱା । ଇନ୍ଦ୍ରଙ୍କ ତେଜରୁ ଶିରର ଶୋଭା ଶମନଙ୍କ ତେଜରୁ କେଶ, ଯମଙ୍କର ତେଜରୁ ଗଣ୍ଡସ୍ଥଳ, କୁବେରଙ୍କ ତେଜରୁ ବକ୍ଷସ୍ଥଳ, ବିଶ୍ୱଦେବଙ୍କର ତେଜରୁ ସୃଷ୍ଟି ହେଲ କୁକ୍ଷି । ସକଳ ଦେବଙ୍କର ତେଜର ଅବସ୍ଥାନ ନାଭି ପଦ୍ମରେ । ଅଶ୍ୱିନୀ କୁମାରଙ୍କର ତେଜ କଟି ଦେଶରେ, ବୃହସ୍ପତିଙ୍କର ତେଜ ନିତମ୍ବ ଦେଶରେ । ପ୍ରଜାପତିଙ୍କର ତେଜରୁ ସୃଷ୍ଟି ହେଲ ପାଦତଳ । ନବ ସହସ୍ର ଦେବତା ଓ ଦେବପତ୍ନୀମାନଙ୍କର ତେଜରୁ ପ୍ରକାଶ ହେଲ ମହାମାୟାଙ୍କର ଅଙ୍ଗୁଷ୍ଠି । ରବିଙ୍କର ତେଜ ପ୍ରକାଶ ହେଲ ଅଙ୍ଗୁଷ୍ଠିର ନଖରେ । ହେମନ୍ତ ତେଜରେ ପ୍ରକାଶ ହେଲ ପୃଷ୍ଠଦେଶ । ବିଷ୍ଣୁ ନନ୍ଦନ କାମଦେବଙ୍କ ତେଜରୁ ସୃଷ୍ଟି ହେଲ ସ୍ତନଯୁଗଳ । ନକ୍ଷତ୍ର ମାନଙ୍କର ତେଜରୁ ସୃଷ୍ଟି ହେଲେ ରୋମ ଶ୍ରେଣୀ, କିରଣଙ୍କ ତେଜରୁ ଗର୍ଭ, ମେଘଙ୍କ ତେଜରୁ କଟିଭାଗ, ଅଣଗୃସ ପବନରୁ ସୃଷ୍ଟି ହେଲ ସହସ୍ର ଭୁଜ, ଚତୁର୍ଦ୍ଦଶ କୋଟି ଗଣନାୟକଙ୍କ ତେଜରୁ ସୃଷ୍ଟି ହେଲ ଭୁଜର ଅଙ୍ଗୁଳି । ପର୍ବତଙ୍କ ତେଜ ଆଉ ଅନଳଙ୍କ ଶିଖା—ଏହି ତେଜରୁ ସୃଷ୍ଟି ହେଲ ଅଙ୍ଗୁଷ୍ଠିର ନଖ ।

ମହା ତେଜମୟୀ ମହାମାୟା ଦୁର୍ଗାଙ୍କର ଶରୀର । ମହାମାୟାଙ୍କର ବୈଷ୍ଣବୀ ପଣର ତୁଳନା—ଦେବକାଶୀ ସଦୃଶ । ତପୀ ପଣରେ ମା' ମହର୍ଷି ଦୁର୍ବାସା । ବାକ୍ୟ କଥନରେ—ପରାଶରଙ୍କର ଶିଷ୍ୟ । ବ୍ରହ୍ମାଙ୍କ ପରି ମାତା ମହାଲକ୍ଷ୍ମୀ । କାମଦେବଙ୍କ ପରି ନୟନ ମୋହିନୀ ରୂପ । ବୁଦ୍ଧି ବୃହସ୍ପତିଙ୍କ ପରି । ଇନ୍ଦ୍ରଙ୍କ ସଦୃଶ ବଡ଼ିମା । ତେଜ କାନ୍ତି ଆଦିତ୍ୟଙ୍କ ପରି । ସହ୍ୟ ଗୁଣରେ ଅନନ୍ତ କାତ୍ୟାୟନୀ । ସହନ ଶକ୍ତିରେ ବସୁନ୍ଧରା । ମରୁତ ପରି ଚଞ୍ଚଳ, ମେରୁ ପରି ଅଟଳ, ମେଘ ସଦୃଶ କାମରୂପୀ । ବରୁଣ ସଦୃଶ ତ୍ରିଲୋକବ୍ୟାପୀ । ସମସ୍ତ ଦେବତାମାନଙ୍କର ଗୁଣ ପ୍ରକଟିତ ହେଲ ଦେବୀଙ୍କର ପାଖରେ । ମହାମାୟାଙ୍କ ପ୍ରକାଶ—ଦେବତାମାନଙ୍କର ଦୁର୍ଗତିର ବିନାଶ ଲଗି । ସେଥିଲଗି ମହାମାୟାଙ୍କର ନାମ ଦୁର୍ଗା ।

ଅପୂର୍ବ ରୂପ, ଅପୂର୍ବ ତେଜ ମହାମାୟାଙ୍କର । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସ୍ତୁତିକଲେ ମା’ ଦୁର୍ଗାଙ୍କର—ମା, ମହାମାୟା । ମା ଦୁର୍ଗା, ଦେବତାମାନଙ୍କର ଚରମ ଦୁର୍ଗତି କାଳରେ ତୁମର ଆବିର୍ଭାବ । ଆମମାନଙ୍କର ଦୁର୍ଗତିର ବିନାଶ କର । ଦେବତାମାନଙ୍କର ସ୍ୱର୍ଗରାଜ୍ୟ ଅସୁରମାନେ ହରଣକରି ନେଇଛନ୍ତି । ଦେବତାମାନଙ୍କୁ ସ୍ୱର୍ଗପୁର ମା’ ତୁମେ ଫେରାଇଦିଅ ।

ତେତିଶ କୋଟି ଦେବତା ସ୍ତୁତିକଲେ ମା’ ଦୁର୍ଗାଙ୍କର । ସ୍ତୁତି କଲେ ଦେବତାମାନେ—ମା’ ଦୁର୍ଗା ତୋର ନାମ ସ୍ମରଣ କଲେ ଦୁର୍ଗତି ନାଶ ହୁଏ ମନୁଷ୍ୟମାନଙ୍କର । ନାଶ ହୁଏ ସହସ୍ର ଆପଦ । ସମସ୍ତ ବିଘ୍ନ । ନଷ୍ଟ ହୁଏ ସମସ୍ତ ରୋଗ, ବ୍ୟାଧି । ଫିଟିଯାଏ କାଳଫାଶ । ଲାଗେ ନାହିଁ ଯମ ଦଣ୍ଡ । ମହାମାୟାଙ୍କର ପବିତ୍ର ନାମ ଦୂରକରେ ମନର ସନ୍ତାପ । ଦାନ କରେ ଧନ, ଜନ ପୁତ୍ର । ସ୍ଥିରକରେ ଚିତ୍ତ । ମନୁଷ୍ୟ ହୁଏ ଦୀର୍ଘାୟୁ ।

କନ୍ୟା ମାସ ଶୁକ୍ଳପକ୍ଷ, ଅଷ୍ଟମୀ ତିଥି । ସେଦିନ ଜନ୍ମ ନେଲେ ମା’ କାତ୍ୟାୟିନୀ । କୃଷ୍ଣପକ୍ଷ ଅଷ୍ଟମୀରୁ ଶୁକ୍ଳପକ୍ଷ ଅଷ୍ଟମୀ ପର୍ଯ୍ୟନ୍ତ ମା’ଙ୍କର ପୂଜା ଅର୍ଚ୍ଚନା କଲେ ମା ଜଗତାରଣୀ ପୂର୍ଣ୍ଣ କରନ୍ତି ମନୁଷ୍ୟର ସକଳ ମନବାଞ୍ଛା । ଲୋଭ, ଭୟ, ମୋହ, କାମ ସଂସାର ଅପବାଦ—ଏଥିରୁ ମୁକ୍ତି ମିଳେ ମା’ଙ୍କର ପ୍ରସାଦରୁ ।

ଦେବଗଣଙ୍କର ବିନୟ ଭକ୍ତିରେ ପ୍ରୀତ ହେଲେ ମହାମାୟା । ଆଶ୍ୱାସନା ଦେଲେ ଦେବତାମାନଙ୍କୁ । କହିଲେ—ଦେବଗଣ ! ତୁମେମାନେ ମୋର ଅନେକ ପ୍ରକାର ସ୍ତୁତି କରିଛ । ତୁମର ବ୍ୟାକୁଳତାର କାରଣ କ’ଣ ମୋ’ ଆଗରେ ପ୍ରକାଶ କର । ବିଷ୍ଣୁ କହିଲେ ବ୍ରହ୍ମାଙ୍କୁ—ଦେବତାମାନଙ୍କର ଦୁଃଖ, ବ୍ୟାକୁଳତାର କାରଣ ପ୍ରକାଶ କର ମହାମାୟାଙ୍କ ନିକଟରେ । ବ୍ରହ୍ମା କହିଲେ ଦେବୀଙ୍କୁ—ମାତା, ଜଗତଜନନୀ । ଦକ୍ଷପ୍ରଜାପତିଙ୍କର ଷାଠିଏ ଦୁହିତା । ଧର୍ମଦେବତାଙ୍କର ବିବାହ ହେଲା ଦଶଟି କନ୍ୟାଙ୍କ ସାଙ୍ଗରେ । ସେହି କନ୍ୟାମାନଙ୍କର ନାମ ହେଲା—ତନୁ, ଭାନୁ, ମେଧା, ଶ୍ରଦ୍ଧା, ଶ୍ରୁତି, ସ୍ମୃତି, ଶାନ୍ତି, ବୁଦ୍ଧା, ସୁମେଧା, ତୁଷ୍ଟି । ଧର୍ମଦେବତା ଉମା ନାମକ କନ୍ୟାଙ୍କୁ ପ୍ରଦାନ କଲେ କଶ୍ୟପଙ୍କୁ

ମୋଟେ ପ୍ରଦାନ କଲେ ସାବର୍ଣୀଙ୍କୁ । ଲୀଳାବତୀଙ୍କୁ ପ୍ରଦାନ କଲେ ବରୁଣଙ୍କୁ । ଅଗ୍ନିଙ୍କୁ ପ୍ରଦାନ କଲେ ସ୍ୱାହା ଓ ସ୍ୱଧା । ବୃହସ୍ପତିଙ୍କୁ ପ୍ରଦାନ କଲେ ତାରା । କୁବେରଙ୍କୁ ପ୍ରଦାନ କଲେ ପ୍ରୀତ । ଆଦିତ୍ୟଙ୍କୁ ଦେଲେ ଛାୟା, ମାୟା । ଚନ୍ଦ୍ରଙ୍କୁ ଦେଲେ ଅଶ୍ୱିନୀ, ଦ୍ୱିଜା ଆଦି ସପ୍ତବିଂଶତି କନ୍ୟା— ଦମା ନାମକ କୁମାରୀ ବିବାହ ନ କରି ହେଲେ ପରମ ଯୋଗୀ । ପୁଣି ତେରଟି କନ୍ୟା ଦେଲେ କଶ୍ୟପଙ୍କୁ ।

ତା'ପରେ ବ୍ରହ୍ମା କହିଲେ ମହାମାୟାଙ୍କୁ—ମା' 'ଅଦିତିଙ୍କର ଗର୍ଭରୁ ଜନ୍ମନେଲେ ଦେବବୃନ୍ଦ । ଦିତିଙ୍କର ଗର୍ଭରୁ ଜାତହେଲେ ପବନ ସଂପାତି । ବିନତୀ ସୃଷ୍ଟିକଲେ ଗନ୍ଧର୍ବ ଲୋକ । ଯକ୍ଷ ଓ କିନ୍ନର ଜନ୍ମନେଲେ ପକ୍ଷୀଠାରୁ । ଚତୁଷ୍ପଦ ଜୀବବୃନ୍ଦ ଜନ୍ମନେଲେ ଋକ୍ଷଙ୍କଠାରୁ । ଅରିଷ୍ଟା ଜନ୍ମଦେଲେ ଅରିଷ୍ଟ ଲୋକମାନଙ୍କୁ । କାଳାନ୍ତରୀଙ୍କଠାରୁ ଜନ୍ମନେଲେ କାଳପୁରୁଷମାନେ ।

ଅତି ଜାଜୁଲ୍ୟ ଭାବରେ କହୁଥାଆନ୍ତି ବ୍ରହ୍ମା । ଶୁଣୁଥାଆନ୍ତି ଜଗତ୍ ଜନନୀ । କରପତ୍ର ଯୋଡ଼ି ପାଖରେ ଦଣ୍ଡାୟମାନ ହୋଇ ଥାଆନ୍ତି ଦେବବୃନ୍ଦ । ସୃଷ୍ଟି ହୋଇଥାଏ ଗୋଟିଏ ଅପୂର୍ବ ପରିବେଶ ।

କହିଲେ ବ୍ରହ୍ମା—ମା', ତା'ପରେ ଜନ୍ମନେଲେ ଅଣାକାର, ହେମବନ୍ତ ଆଦି ଆଠଲକ୍ଷ ମହାଗିରି, ଗୁହ୍ୟଙ୍କଠାରୁ ଜନ୍ମନେଲେ ଗୁହ୍ୟ-ଲୋକ । ସିଂହିକାଙ୍କ ଗର୍ଭରୁ ଜାତହେଲେ ରାହୁ । ରାହୁର ଅର୍ଦ୍ଧଅଙ୍ଗ କେତୁ । କେତୁର କୁମାର ଜମ୍ଭଦୈତ୍ୟ । ତା'ର ବିନାଶ କଲେ ପୁରୁହୁତ । ଜମ୍ଭଦୈତ୍ୟର ତନୟ ହିରଣ୍ୟାକ୍ଷ । ତା'ର ବେଦପୁତ୍ର ଋକ୍ଷ, ଭକ୍ଷ ଅତି ଉପଦ୍ରବ କଲେ ସଂସାରରେ । ତେବେ ସତ୍ୟ ଯୁଗରେ ଭଗବାନ ବିଷ୍ଣୁ ବିନାଶ କଲେ ସେମାନଙ୍କୁ । ଋକ୍ଷ ଭକ୍ଷଙ୍କର ପୁତ୍ର ହେତି ଓ ପ୍ରହେତି । ସେମାନଙ୍କୁ ବିନାଶ କଲେ ଶ୍ରୀଦାମୋଦର । ହେତି ପ୍ରହେତିଙ୍କର ପୁତ୍ର ବଜ୍ରାଙ୍ଗ, କାଳାନଳ । ସେମାନଙ୍କର ମସ୍ତକ ଛେଦନ କଲେ ଶ୍ରୀକୃଷ୍ଣ । ବଜ୍ରାଙ୍ଗର ପୁତ୍ର ହିରଣ୍ୟକବଚ । ଜନାର୍ଦ୍ଦନ ରୂପରେ ଏହି ଅସୁର ବିନାଶ କଲେ ଭଗବାନ ବିଷ୍ଣୁ । ବଜ୍ରକବଚ ହିରଣ୍ୟକବଚର ପୁତ୍ର । ତାକୁ ବଧ କଲେ ସବ୍ୟସାଚୀ । ହିରଣ୍ୟକବଚର ପୁତ୍ର ଅନ୍ଧକ । ତାକୁ ବଧକଲେ

ପ୍ରଭୁ ବିଶ୍ୱନାଥ । ଅନ୍ଧକର ପୁତ୍ର ତ୍ରିପୁର । ତା'ର ବିନାଶ ହେଲା ଈଶ୍ୱରଙ୍କ ହାତରେ । ତ୍ରିପୁରର ପୁତ୍ର ଶୁମ୍ଭ ନିଶୁମ୍ଭ । ବେଦବତୀ ହରଣରେ ସେମାନଙ୍କୁ ନାଶ କଲେ କାମ । ଶୁମ୍ଭର ପୁତ୍ର ଜଳତରଙ୍ଗ । ତାକୁ ବଧ-କଲେ ପ୍ରଭୁ କେଶବ ।

ଜଳତରଙ୍ଗର ପୁତ୍ର ଶଙ୍ଖାସୁର ହରଣ କଲା ବ୍ରହ୍ମାଙ୍କର ବେଦ ପୋଥି । ଲୁଚିରହିଲା ସମୁଦ୍ର ମଧ୍ୟରେ । ମୀନ ରୂପରେ ତା'ର ବିନାଶ କଲେ ଭଗବାନ ବିଷ୍ଣୁ । ଶଙ୍ଖାସୁରର ପୁତ୍ର ଅବମା, କୂର୍ମ ରୂପରେ ତା'ର ବିନାଶ କଲେ ଅନନ୍ତ । ଅବମା ଦୈତ୍ୟର ପୁତ୍ର ହିରଣାକ୍ଷ, ବରାହ ରୂପରେ ତାହାର ଶରୀରକୁ ଦନ୍ତରେ ବିଦାରଣ କଲେ ଶ୍ରୀହରି । ହିରଣାକ୍ଷର ପୁତ୍ର ଦୈତ୍ୟକେଶୀ । ତା'ର ବିନାଶ ହେଲା ଗୋମୁଖ କେଶବଙ୍କ ହସ୍ତରେ । କେଶୀ ଦୈତ୍ୟର ତନୟ ଅମାତ୍ୟ, ତାହାର ବିନାଶ କଲେ ବାସୁଦେବ ଗ୍ରୀବ ରୂପରେ । ଅମାତ୍ୟର ନନ୍ଦନ ହିରଣ୍ୟ । ନୃସିଂହ ରୂପରେ ତା'ର ବିନାଶ କଲେ ଶ୍ରୀହରି । ହିରଣ୍ୟର ପୌତ୍ର ବୈରୋଚନ । କପଟ ସ୍ତ୍ରୀ ରୂପରେ ତା'ର କେଶ ଉପାଡ଼ି ତା'ର ବିନାଶ କଲେ ଭଗବାନ ବିଷ୍ଣୁ । ବୈରୋଚନର ପୁତ୍ର ବଳି, ବାମନ ରୂପରେ ବାଳକୁ ପାତାଳକୁ ଚାପି ଦେଲେ ଶ୍ରୀହରି । ବାଳର ପୁତ୍ର ବାଣାସୁର । ଘୋର ସଂଗ୍ରାମ କଲା ବାଣାସୁର ପ୍ରଭୁ ଚକ୍ରଧରଙ୍କ ସାଙ୍ଗରେ । ବାଣାସୁରର ପୁତ୍ର ମାୟାସୁରର ମୃତ୍ୟୁ ହେଲା ପ୍ରଭୁ ଚକ୍ରଧରଙ୍କ ହସ୍ତରେ । ମୟଦୈତ୍ୟର ପୁତ୍ର ଅମୟ । ସତ୍ୟଯୁଗରେ ତାକୁ ମାଡ଼ିବସିଲେ ପ୍ରଭୁ ହନୁମନ୍ତ । ଅମାତ୍ୟ ନନ୍ଦନ ତାରକାସୁର ମୃତ୍ୟୁ ଲଭିଲା କାର୍ତ୍ତିକେଶ୍ୱରଙ୍କ ହସ୍ତରେ । ତାରକାସୁରର ପୁତ୍ର ଲୌହାସୁର । ତା'ର ପୁତ୍ର ବଜ୍ରସିଂହ । ବଜ୍ରସିଂହର ପୁତ୍ର କପିଳ-ସିଂହ । କପିଳ ସିଂହର ପୁତ୍ର ମହିଷାସୁର ।

ବ୍ରହ୍ମା କହୁଛନ୍ତି—ମାତା, ଜଗତ୍‌ଜନନୀ, ମହିଷାସୁର ମୋର ଆରାଧନା କରି ଘୋର ତପସ୍ୟା କଲା । ଅଶୀ ସହସ୍ର ବର୍ଷ ରହିଲା ନିରାହାରରେ । ତା'ର ତପସ୍ୟାରେ ପ୍ରୀତ ହୋଇ ମୁଁ ତାକୁ କହିଲି—ଯାହା ବର ମାଗୁଛୁ ମାଗ । ବର ମାଗିଲା ମହିଷାସୁର—ମୁଁ ପୁରୁଷର ହସ୍ତରେ ମରିବି ନାହିଁ, ଯୁଗ ଯୁଗ ଧରି ରହିବି ଅମର ହୋଇ, ଯୁଦ୍ଧରେ ମୁଁ ଜୟ କରିବି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ।

ମହିଷାସୁରକୁ ମୁଁ ତା'ର ଇପ୍‌ସିତ ବର ପ୍ରଦାନ କଲି । ସେଥିଲାଗି ଅମର ହେଲ ମହିଷାସୁରର ଶରୀର, କୌ ସହସ୍ର ସୈନ୍ୟ ଦୈତ୍ୟ ମହିଷାସୁରର । ତା'ର ସୈନ୍ୟମାନେ ଘୋଟିଗଲେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ । ଚନ୍ଦ୍ରଦ୍ୱୀପରେ ରାଜା ହେଲ ଦୈତ୍ୟ ବଜ୍ରସିଂହ । ସିଂହଳ ଦ୍ୱୀପରେ ମହିଷାସୁର ମହାରାଜା । ପାତାଳରେ ପ୍ରଜାମାନଙ୍କୁ ପାଳନ କରୁଛନ୍ତି ଚଣ୍ଡ, ମୁଣ୍ଡ । ଉତ୍ତର ଓ ଦକ୍ଷିଣ ଦିଗର ରାଜା ଶୂନ୍ୟ ଓ ଉପଶୂନ୍ୟ । ପୂର୍ବ, ପଶ୍ଚିମରେ ନୃପତି କାଳ, ବିକାଳ । ବନସ୍ତର ଅଧିପତି ଖରଦଣ୍ଡ । ପର୍ବତମାନଙ୍କର ଅଧିପତି ଆଲ୍ମାସୁର । ଶୁମ୍ଭ, ନିଶୁମ୍ଭଙ୍କର ରାଜତ୍ୱ ଅମରପୁରରେ । ପଞ୍ଚମଣି ପୁରର ରାଜା କାଳଦଣ୍ଡ । ହିରଣ୍ୟଗର୍ଭ ପୁରର ରାଜା ରକ୍ତବୀର୍ଯ୍ୟ । ଏହିପରି ସମସ୍ତପୁର, ନବଦ୍ୱୀପ, ସପ୍ତସିନ୍ଧୁ ରହିଛି ଦୈତ୍ୟମାନଙ୍କର ଶାସନରେ, ମୋର ଭୁବନ ଯଶୋବନ୍ତ ଖଣ୍ଡ । ତାକୁ ପାପିଷ୍ଟମାନେ ଧ୍ୱଂସ କରି ଦେଇଛନ୍ତି ।

ବ୍ରହ୍ମା କହିଲେ—ମାତା, ତିନିପୁରରେ ଧ୍ୱଂସର ଲୀଳା ଚଳାଇଛନ୍ତି ଦୈତ୍ୟମାନେ, ଅତି ଉନ୍ମତ୍ତ ହୋଇଛି ମହିଷାସୁର । ଅମରବର ପାଇଛି ସେହି ଦୈତ୍ୟ, ଶରୀର ତା'ର ରହିବ ଚିରକାଳ ଲାଗି । ତୁ ମା' ଦୟା ନ କଲେ ଦେବତାମାନେ ଧ୍ୱଂସ ହୋଇଯିବେ ।

ତା'ପରେ ବ୍ରହ୍ମା କହିଲେ ମାତା—ଅନେକ ତୋ'ର ନାମ । ଅନେକ ତୋ'ର ରୂପ । ତୁ ଆମମାନଙ୍କୁ ରକ୍ଷାକର ।

ବ୍ରହ୍ମାଙ୍କର ବିନୟ ବଚନରେ ପ୍ରସନ୍ନ ହେଲେ କାତ୍ୟାୟିନୀ । ଅମୃତ ଦୃଷ୍ଟିରେ ଚାହିଁଲେ ପରମେଷ୍ଠିଙ୍କୁ । କହିଲେ—ମୁଁ ତୁମ ଉପରେ ପ୍ରସନ୍ନ । ବର ମାଗ, ତୁମର ସମସ୍ତ ଅଭିଳାଷ ମୁଁ ପୂର୍ଣ୍ଣ କରିବି ।

କହିଲେ ବ୍ରହ୍ମା—ମୋର ଓ ତେତିଶ କୋଟି ଦେବତାଙ୍କର କେବଳ ମାତ୍ର ଗୋଟିଏ ବର । ମହିଷାସୁର ବଧ । ଏହି କାର୍ଯ୍ୟ କେବଳ ତୋର ଦ୍ୱାରା ହିଁ ସମ୍ଭବ ହୋଇ ପାରିବ ।

କହିଲେ ମହାମାୟା—ମୋ' ହସ୍ତରେ କୌଣସି ଅସ୍ତ୍ରଶସ୍ତ୍ର ନାହିଁ, ବିନା ଯୁଦ୍ଧରେ ମହିଷାସୁରର ମୃତ୍ୟୁ ଅସମ୍ଭବ । ବିନା ଅସ୍ତ୍ରରେ ମୁଁ ଯୁଦ୍ଧ କରିବି କିପରି ?

ନିଜ ନିଜର ଅସ୍ତ୍ର ଦେବତାମାନେ ଦେଲେ—ଜଗତ୍‌ଜନନୀଙ୍କୁ । ପ୍ରଭୁ ତ୍ରିଅମ୍ବକ ମା' ଦୁର୍ଗାଙ୍କ ହସ୍ତରେ ଦେଲେ ତ୍ରିଶୂଳ, ଡମ୍ବରୁ, ଆଜ ପିନାକ, ଇନ୍ଦ୍ର ଦେଲେ ଅଜଗବ ଧନୁ ବଜ୍ରଶକ୍ତି । ଆଦିତ୍ୟ ଦେବତା ଦେଲେ ସୂର୍ଯ୍ୟାବର୍ତ୍ତିକ ଚକ୍ର ଓ ଅମୃତକୁଣ୍ଡ । ଏହିପରି ବିଭିନ୍ନ ଅସ୍ତ୍ରଶସ୍ତ୍ର ମା' ଦୁର୍ଗାଙ୍କ ହସ୍ତରେ ଦେଲେ ଦେବବୃନ୍ଦ ।

ଦେବତାମାନଙ୍କର କାର୍ଯ୍ୟରେ ପ୍ରୀତ ହେଲେ ଜଗତଜନନୀ । ଅଭୟ ଦେଲେ ଦେବତାମାନଙ୍କୁ । ଆଶ୍ୱାସନା ଦେଲେ ଦେବତା-ମାନଙ୍କୁ—ତୁମମାନଙ୍କର ହିତଲାଗି ମୁଁ ମହିଷାସୁରର ବିନାଶ କରିବି । ବିରାଟ ରୂପ ଧାରଣ କଲେ ମହାମାୟା । ମହାମାୟାଙ୍କର ସହସ୍ର ଭୁଜରେ ସହସ୍ର ଅସ୍ତ୍ର । ମହାମାୟା ହେଲେ ବିଶ୍ୱବ୍ୟାପୀ । ମା' ଦୁର୍ଗାଙ୍କର କରାଳ ଭୟଙ୍କର ରୂପ । ଭୟଭୀତ ହେଲେ ଦେବବୃନ୍ଦ । କହିଲେ ଜଗତଜନନୀ—ଦେବଗଣ, ଭୟ କରନାହିଁ । ମୁଁ ଏବେ ଗମନ କରୁଛି ଅସୁର ଭୁବନକୁ । ମହିଷାସୁରର ବିନାଶ ହେବ ନିଶ୍ଚିତ ଭାବରେ । ତୁମମାନଙ୍କର ଦୁଃଖ ଦିନର ଅବସାନ ଘଟିଛି ।





# ମହିଷାସୁର ବଧ

ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି

ପୁରାଣ କାଳର କଥା । ଦେବ, ଦାନବଙ୍କ ମଧ୍ୟରେ କଳି । ଦେବତାମାନେ ଜଗତର ମଙ୍ଗଳ ଚାହାଁନ୍ତି । ବିଶ୍ୱର କଲ୍ୟାଣ ପାଇଁ ଦେବତାମାନେ ସଦାସର୍ବଦା ଚିନ୍ତିତ ଥା'ନ୍ତି । ଅନ୍ୟ ପକ୍ଷରେ ଅସୁରମାନେ ଦେବଲୋକ ଅଥବା ମର୍ତ୍ତ୍ୟଲୋକର ସବୁବେଳେ କ୍ଷତିର କାରଣ ହୁଅନ୍ତି । ଦେବତାମାନେ କେତେ ଅବା ସହ୍ୟ କରିବେ । ଏ କଳି ଆଜିର ନୁହେଁ । କାହିଁ କେଉଁ ଯୁଗରୁ ତାର ଇୟତ୍ତା ନାହିଁ । ଦେବତାମାନଙ୍କ ବରଦାନରେ ଅସୁରମାନେ ବଳୀୟାନ୍ ହୁଅନ୍ତି । ପ୍ରଚଣ୍ଡ ଆସୁରିକ ମାୟା ବିସ୍ତାର କରି ଜଗତର କ୍ଷତି ସାଧନ କରିଥାନ୍ତି । ଅପ୍ରମିତ ଶୌର୍ଯ୍ୟର ଅଧିକାରୀ ହେବାପରେ ଅସୁରମାନେ ପ୍ରଥମେ ଦେବତାମାନଙ୍କୁ କରଗତ କରିବାପାଇଁ ଉଦ୍ୟମ କରିଥାନ୍ତି । ଅସୁରମାନଙ୍କ ପ୍ରକୋପରେ ଚଉଦ ଭୁବନ ପ୍ରକମ୍ପିତ ହୋଇଥାଏ । ନରଲୋକ ଓ ଦେବଲୋକରେ ହାହାକାର ପଡ଼େ । କେହି ଶାନ୍ତିରେ ରହି ପାରନ୍ତି ନାହିଁ । ମର୍ତ୍ତ୍ୟଲୋକ ଓ ଦେବଲୋକର ଆର୍ତ୍ତନାଦରେ ବୈକୁଣ୍ଠବିହାରୀ ଭଗବାନ ବିଷ୍ଣୁ ଚିନ୍ତିତ ହୋଇଉଠନ୍ତି । ଅସୁରମାନଙ୍କ ମଧ୍ୟରେ ଥିବା ପରାକ୍ରମଶାଳୀ ଅସୁର-ରାଜାଙ୍କୁ ନିଧନ କରିବା ପାଇଁ ମନ୍ତ୍ରଣା ଚାଲେ । ବିଶ୍ୱ ବ୍ରହ୍ମାଣ୍ଡରେ ଶାନ୍ତି ମୈତ୍ରୀ-ସଦ୍‌ଭାବ ପାଇଁ ସମସ୍ତେ ଅସୁର-ମାନଙ୍କ ବଂଶକ୍ଷୟ ନିମନ୍ତେ ବହୁ ପ୍ରକାର ଉଦ୍ୟମ କରିଥାନ୍ତି ।

ଦେବତାମାନେ ଧରାଧାମରେ ଶାନ୍ତି, ପ୍ରୀତି ଓ ମୁକ୍ତିର ସାଧନ ପାଇଁ ନୀତି ନିୟମ ଏବଂ ରୀତିର ପରିକଳ୍ପନା କଲାବେଳେ ଆସୁରିକ

ପ୍ରବୃତ୍ତି ଓ ଆସୁରିକ ମାୟା ଏ ସବୁର ପ୍ରତିବନ୍ଧକ ହୋଇଥାଏ । ଅସୁରମାନେ ଏଭଳି ମାୟାବୀ ଯେ ସେମାନଙ୍କ ମାୟା ରଚନାରେ ବେଳେବେଳେ ଦେବତାମାନେ ମଧ୍ୟ ସ୍ତବ୍ଧ ଚକିତ ହୋଇଥାନ୍ତି ।

ଏହିଭଳି ଏକ ଭୟାନକ ଘଟଣା । ମହିଷାସୁର ନାମରେ ଥିଲା ଏକ ପ୍ରବଳ ପ୍ରତାପୀ ରାକ୍ଷସ ରାଜା । ଅସୀମ ବଳର ଅଧିକାରୀ ହୋଇ ସେ ଧରାଧାମକୁ ସରାଜ୍ଞାନ କରୁଥିଲା । ଆପଣାର ଅମିତ ବଳ ପ୍ରୟୋଗରେ କେବଳ ନରଲୋକ ନୁହେଁ, ଦେବଲୋକକୁ ବିଜୟ କରି ଜଗତରେ କ୍ଷମତା ବିସ୍ତାର କରିବାକୁ ଚାହିଁଲା । ମହିଷାସୁରର ଅଧୀନରେ ଥିବା ସମସ୍ତ ଅସୁର, ଦେବଲୋକ ଓ ନରଲୋକରେ ଅକଥନୀୟ ଅତ୍ୟାଚାର କରିଗଲେ । ମହିଷାକୁ ପ୍ରତିରୋଧ କରିବାପାଇଁ ଦେବଲୋକ ମଧ୍ୟ ସମର୍ଥ ହୋଇପାରିଲା ନାହିଁ । ଚତୁର୍ଦ୍ଦିଗରେ ହାହାକାର ପଡ଼ିଲା । କିପରି ମାୟାବୀ ବଳଶାଳୀ ରାକ୍ଷସ ରାଜା ହାତରୁ ଜଗତ ରକ୍ଷା ପାଇବ । ଦେବତାମାନେ ବହୁ କଳ୍ପନା ଜଳ୍ପନା କଲେ ।

ମହିଷାସୁର ଦେବତାମାନଙ୍କ ବର ଲାଭ କରିଥିଲା । ଦେବଦତ୍ତ ବରରେ ସେ ସସାଗରା ମେଦିନୀକୁ ଭୋଗ କରିବାକୁ ଚାହିଁଲା । ସ୍ୱର୍ଗରେ ଇନ୍ଦ୍ର ପଦକୁ ଧୂଳିସାତ୍ କରିବାପାଇଁ ଉଦ୍ୟମ କଲା । ମର୍ତ୍ତ୍ୟଲୋକର ଧର୍ମ କର୍ମରେ ବ୍ୟାଘାତ ସୃଷ୍ଟି କଲା । ସେନାବାହିନୀକୁ ଚତୁର୍ଦ୍ଦିଗକୁ ପ୍ରେରଣ କରି ସଂହାରଲୀଳା ଆରମ୍ଭ କଲା । କେହି ତାକୁ ବାଧା ଦେବାକୁ ସାହସ କରି ପାରିଲେ ନାହିଁ । ମହିଷାସୁରର ନାମ ମାତ୍ର ଶୁଣିଲେ ସବୁଆଡ଼େ କୋଳୁଆ ଭୟ । ଜଗତର ବିଧିବିଧାନକୁ ଧ୍ୱଂସ ବିପର୍ଯ୍ୟସ୍ତ କରୁଥିବା ମହିଷାସୁରର ନିଧନ ପାଇଁ ଦେବଲୋକ ଏବଂ ନରଲୋକ ତ୍ରାହି ତ୍ରାହି ଡାକ ଛାଡ଼ିଲେ । ସମସ୍ତେ ଏକତ୍ରିତ ଓ ଏକମୁଖ ହୋଇ ପରମେଶ୍ୱରଙ୍କୁ ପ୍ରାର୍ଥନା କଲେ । ସର୍ବେ ହୋଇଲେ ଏକ ମୁଖ, ବୋଇଲେ ନାରାୟଣ ରଖ । ନାରାୟଣ ରକ୍ଷାକର୍ତ୍ତା ହୋଇ ବିହିତ କାର୍ଯ୍ୟାନୁଷ୍ଠାନ ନକଲେ ଦେବଲୋକ ଓ ନରଲୋକ ଲୋପ ପାଇଯିବ । ଏ ପ୍ରକାର ଧାରଣା ସମସ୍ତଙ୍କ ଠାରେ ସୃଷ୍ଟି ହେଲା ।

ପରିଶେଷରେ ଦେବତାମାନେ ଏକତ୍ର ହୋଇ ବୈକୁଣ୍ଠ ଗମନ କଲେ । ଭଗବାନ ବିଷ୍ଣୁଙ୍କ ଆଗରେ ସେମାନଙ୍କର ଅତ୍ୟାଚାରିତ

ଜୀବନର ବୃତ୍ତାନ୍ତ କହିଲେ । ଦେବତାମାନଙ୍କ ବ୍ୟଥା ଓ ବେଦନାରେ ଭଗବାନ ବିଷ୍ଣୁ ବ୍ୟଥିତ ହେଲେ । ମହିଷାସୁର ପ୍ରତି ତାଙ୍କଠାରେ ଘୃଣା ଜାତହେଲା । ମହାବଳବାନ ମହିଷାସୁର ଦେବତାଙ୍କ ବରରେ ପ୍ରଚଣ୍ଡ ଓ ଅସାଧ୍ୟ ତାର ନିୟନ୍ତ୍ରଣ । ନାନା ଉପାୟ ଚିନ୍ତାପରେ ଭଗବାନ ବିଷ୍ଣୁ ଅନ୍ୟ ଦୁଇ ପ୍ରମୁଖ ବ୍ରହ୍ମା ଓ ମହେଶ୍ୱରଙ୍କ ପରାମର୍ଶ ନେଲେ । ସିଦ୍ଧାନ୍ତ ହେଲା, ମା ଦୁର୍ଗାହିଁ ମହିଷାସୁରକୁ ନିଧନ କରିବାପାଇଁ ସମର୍ଥା ।

ଦୁର୍ଗାଙ୍କୁ ସବିନୟ ବନ୍ଦନା ସହକାରେ ଅସୁର ନିଧନ ନିମନ୍ତେ ଜଣାଇ ଦିଆଗଲା । ମା ଦୁର୍ଗା ଅସୁରର ଭୟଙ୍କର ତେଜ ଓ ବଳର କଳନା କରି ଏଥିପାଇଁ ଦେବପୁରର ସମସ୍ତ ଅସ୍ତ୍ରଦାନ ତଥା ଦେବ ଶ୍ରେଷ୍ଠ-ମାନଙ୍କ ପ୍ରିୟ ଆୟୁଧମାନଙ୍କୁ ମଧ୍ୟ ନିଜ ନିୟନ୍ତ୍ରଣରେ ରଖିଲେ । ମା' ଦୁର୍ଗା ମହିଷାସୁରକୁ ନିଧନ କରିବାପାଇଁ ସଂକଳ୍ପ କଲେ । ଯୁଦ୍ଧକୁ ବାହାରିଲା ବେଳେ ମା'ଙ୍କ ଭୁବନବିଖ୍ୟାତ ରଣଚଣ୍ଡୀ ରୂପ ଦେଖି ଦେବଲୋକ ଚକିତ ଓ ପ୍ରକମ୍ପିତ ହେଲା । ଯୁଦ୍ଧ ଦୁନ୍ଦୁଭିରେ ଚଉଦଭୁବନ ପ୍ରକମ୍ପିତ ହେଲା । ଏଭଳି ଭୟଙ୍କର ସମରସଜ୍ଜା ଦେବତାମାନେ କେବେ ଦେଖିନଥିଲେ । ଏ ପ୍ରକାର ଭୟଙ୍କର ଯୁଦ୍ଧର ଫଳାଫଳ କ'ଣ ହେବ ଚିନ୍ତାକରି ଦେବଲୋକ ସଙ୍କିତ ହୋଇ ଯାଇଥିଲା ।

ଦେବୀ ସମରକ୍ଷେତ୍ରରେ ଅବତୀର୍ଣ୍ଣା ହେଲେ । ଦାନବକୁ ସଂହାର କରିବା ପାଇଁ ତାଙ୍କଠାରେ ଅସାଧାରଣ କୋପ ଜାତ ହେଲା । ଦେବୀଙ୍କ କୋପରେ ତାଙ୍କ ନେତ୍ରରୁ ଭୟଙ୍କର ଆଗ୍ନେୟ ଜ୍ୟୋତି ନିର୍ଗତ ହେଲା । ଦେବୀଙ୍କର କାମରୂପୀ ରୂପ ତ୍ରିଲୋକକୁ ବ୍ୟାପିଗଲା । ମହିଷାକୁ ବଧ କରିବା ପାଇଁ ଦେବୀ ସିଂହ ରଡ଼ି ଛାଡ଼ିଲେ । ଦେବୀଙ୍କର ବର୍ଦ୍ଧିତକାୟା ଧରାଧାମର ସମସ୍ତ ପର୍ବତକୁ ଚିପି ବିସ୍ତାରିତ ହେଲା ।

ଦେବୀ ମହିଷାର ସମ୍ମୁଖୀନ ହେଲେ । ମହିଷାସୁର ଦେବୀଙ୍କୁ ଦେଖି ବହୁ ତାଚ୍ଛଲ୍ୟ କଲା । ଦେବୀଙ୍କୁ ସାଧାରଣ ନାରୀ ଭାବି ହେୟ ମଣିଲା । ଦେବୀଙ୍କ ନିକଟକୁ ଆକ୍ରମଣ ପାଇଁ ମାଡ଼ିଯିବା ପୂର୍ବରୁ ଦେବୀ ତାର ପ୍ରକାଣ୍ଡ ଶରୀର ଉପରେ ନିଜ ନଖ ଦ୍ୱାରା ଭୟାନକ ଆକ୍ରମଣ କଲେ । ମହିଷା ମଧ୍ୟ ଛାଡ଼ିବା ଜନ୍ତୁ ନଥିଲା । ସେ ଦେବୀଙ୍କୁ ରୁଧିରାକ୍ତ କରିବାପାଇଁ ପ୍ରଚଣ୍ଡ

ସବେ ଦେବୀଙ୍କର ସମ୍ମୁଖୀନ ହେଲା । ରକ୍ତର ସ୍ରୋତରେ ଧରଣୀ ସିକ୍ତ ହୋଇଗଲା । ଅବାଶତ ଏ ସଂଗ୍ରାମ । ଏହାର ଗତି ଅତି ଭୟଙ୍କର । କଳ୍ପନାତୀତ । ପ୍ରତିକ୍ଷଣରେ ଯୁଦ୍ଧ ଭୟଙ୍କରରୁ ଅତି ଭୟଙ୍କର ହୋଇ ଉଠୁଥିଲା । ଦେବୀଙ୍କୁ ଏକ ଅପୂର୍ବ ସୁନ୍ଦରୀ ରୂପେ ଜ୍ଞାନ କରି, ନିଜ ଭୋଗର ଆଶାକୁ ମଧ୍ୟ ଅସୁର ପ୍ରକାଶ କରିବାପାଇଁ ସଙ୍କୋଚବୋଧ କରୁନଥିଲା ।

ଦେବୀଙ୍କ ସହ ମହିଷାର ଭୟଙ୍କର ସମର ଅନୁଷ୍ଠିତ ହେଉଥିବା ବେଳେ ଉଭୟ ପକ୍ଷର ଆକ୍ରମଣ ଓ ପ୍ରତି ଆକ୍ରମଣ ଯେତିକିଥିଲା ଭୟଙ୍କର, ଅନ୍ୟ ପକ୍ଷରେ ସେତିକି ମାତ୍ରାରେ ଥିଲା ଅପୂର୍ବ ଓ ଦୁର୍ଦ୍ଧର୍ଷ । ଏକ ସମୟରେ ମହିଷା ଯୁଦ୍ଧ କ୍ଷେତ୍ରରେ ଦେବୀଙ୍କର ପ୍ରବଳରୁ ପ୍ରବଳତର ଆକ୍ରମଣର ସମ୍ମୁଖୀନ ହେଉଥିବା କାଳରେ ତାହାର ସହଯୋଗୀ ଶୂନ୍ୟ ଓ ଉପଶୂନ୍ୟଙ୍କୁ ଯୁଦ୍ଧରେ ଯୋଗଦେବା ପାଇଁ ଉଦ୍ଧ୍ୱାହିତ କରିଥିଲା । ଯୁଦ୍ଧ ପ୍ରତି ସେମାନଙ୍କୁ ଆକୃଷ୍ଟ କରିବାପାଇଁ ଉଭୟଙ୍କ ମୁଣ୍ଡରେ ସମ୍ମାନର ସହିତ ବହୁମୂଲ୍ୟ ରତ୍ନ ଖଚିତ ପଗଡି ମଧ୍ୟ ବାନ୍ଧାଇ ଥିଲା । ଗର୍ଜିତ ମହିଷାର ବିଜୟ-ବାଣୀ ଶୁଣି ଶୂନ୍ୟ ଓ ଉପଶୂନ୍ୟ ସେନାପତି ବିକ୍ରମରେ ଯୁଦ୍ଧ କ୍ଷେତ୍ରକୁ ପ୍ରବେଶ କଲେ । ସେମାନେ ମହାରଣ୍ଡ ବିକଟାଳ ଶବ୍ଦ ସହିତ ଯୁଦ୍ଧ କ୍ଷେତ୍ରକୁ ଅବଲମ୍ବେ ପ୍ରକମ୍ପିତ କରି ଦେଲେ । ସେମାନଙ୍କ ସହିତ ଯୁଦ୍ଧ କ୍ଷେତ୍ରକୁ ବହୁ ସଂଖ୍ୟାରେ ବହୁ ବଳଶାଳୀ ସୈନିକମାନେ ଯୁଦ୍ଧରେ ଯୋଗଦାନ ପୂର୍ବକ ପୃଥିବୀ ଓ ଦେବଲୋକରେ ଭୟ ସଞ୍ଚାର କରିଥିଲେ । ସୁନନ୍ଦ, ପୁନନ୍ଦ ନାମରେ ଦୁଇଜଣ ରାକ୍ଷସ ପୁତ୍ରଙ୍କର ଅଠରଟି ଲେଖା ଭୁଜ ମଧ୍ୟ ଥିଲା । ସେମାନେ ନାନା ପ୍ରକାର ଭୟଙ୍କର ଅସ୍ତ୍ର ଶସ୍ତ୍ର ସହିତ ଦଶଲକ୍ଷ ସେନାବଳ ନେଇ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହୋଇ ସମର ପରିଚାଳନା କରିଥିଲେ ।

ଦେବୀ ଦୁର୍ଗା ଅସୁର ସେନାପତିମାନଙ୍କ ସହିତ ଭୟଙ୍କର ସମର କରୁଥିବା ବେଳେ ଦେବୀଙ୍କ କୃପାଣରେ ଲକ୍ଷ ଲକ୍ଷ ଅସୁର ମୃତ୍ୟୁବରଣ କରୁଥିଲେ । ଅସୁରମାନଙ୍କ ରକ୍ତରେ ଶୋଣିତର ନଦୀ ବହି ଯାଉଥିଲା । ଅସୁରମାନେ ମଧ୍ୟ ପର୍ବତ, ପାହାଡ଼ ଉପାଡ଼ି ଦେବୀଙ୍କ ଉପରକୁ ନିକ୍ଷେପ କରୁଥିଲେ । ଅସୁରମାନଙ୍କ ଅସ୍ତ୍ର ଶସ୍ତ୍ର ଦେବୀଙ୍କ ଦେହରେ ପଡ଼ିବା ମାତ୍ରେ

ସେଗୁଡ଼ିକ ଅଗ୍ନିରେ ତୃଣ ପଡ଼ିଲେ ହେଲେ ଭସ୍ମ ହେଲାପରି ଭସ୍ମ ହୋଇ ଯାଉଥିଲା । ଦେବୀ ସମର ଉନ୍ମତା ଥିବାବେଳେ ତାଙ୍କ ଶରୀର ରକ୍ତବର୍ଣ୍ଣ ହୋଇ ଯାଉଥାଏ । ସେ ରାକ୍ଷସମାନଙ୍କର ରକ୍ତ ମୁହଁ ଲଗାଇ ପାନ କରୁଥାନ୍ତି । ଦେବୀଙ୍କର ପ୍ରତାପ ଥିଲା ଅସୀମ । ସଂଗ୍ରାମ କଲାବେଳେ ସେ ଗୀତ ମଧ୍ୟ ଗାଉଥାନ୍ତି । ରଣାଙ୍ଗନରେ ନିର୍ଭୟା ଦେବୀ ମହାମାୟୀ ଅସୁର କୁଳକୁ ନିପାତ କରିବା ପାଇଁ ନିଷ୍ପତ୍ତି ନେଇଥିବାରୁ ଯୁଦ୍ଧର ଦୃଶ୍ୟଥିଲା ଅତି ଆଶ୍ଚର୍ଯ୍ୟଜନକ ଓ ଭୟାନକ ।

ଦେବୀ ଏବଂ ଅସୁରମାନଙ୍କ ମଧ୍ୟରେ ଚାଲିଥିବା ମହାରଣରେ ଦଶଲକ୍ଷ ଯୋଦ୍ଧା ମୁହୂର୍ତ୍ତିକ ମାତ୍ରରେ ଯମାଳୟ ଯାଉଥାନ୍ତି । ଅସୁର ବଳ ନିଧନରେ ଅସୁର ସେନାପତି ଶୂନ୍ୟ ଓ ଉଗ୍ରଶୂନ୍ୟ ମହାକୋପ ଆରମ୍ଭ କଲେ । ମହାକୋପରେ ଜର୍ଜରିତ ହୋଇ ମହାଦେବୀଙ୍କୁ ରାବଣ ତ୍ରିପୁରି ଧାଇଁଯାଇ ଆକ୍ରମଣ କଲେ । ଲୌହନିର୍ମିତ ରଥରେ ଅସୁରମାନେ ଯୁଦ୍ଧ କରୁଥିଲେ । ସେମାନଙ୍କ ରଥକୁ ମହାଦେବୀ ଏକାଥରକେ ଗ୍ରାସ କରୁଥିଲେ । ଅସୁରମାନେ ଦେବୀଙ୍କ ଆକ୍ରମଣରେ କ୍ରୋଧାନ୍ୱିତ ହୋଇ ଦେବୀଙ୍କ ମସ୍ତକ ଉପରେ ଲୌହ ଗଦାରେ ପ୍ରହାର କରିଥିଲେ । ଦେବୀ ସତେ ଯେପରି ତାଙ୍କ ମୁଣ୍ଡ ଉପରେ କୋଟିଏ ବଜ୍ର ପଡ଼ିଲା ଭଳି ଅନୁଭବ କଲେ । ମାତ୍ର ଦେବୀଙ୍କ ମସ୍ତକରେ ଲୌହଗଦା ବାଜିଲାକ୍ଷଣି ତାହା ଟୁକୁରି ଟୁକୁରି ଲୌହ ଖଣ୍ଡରେ ପରିଣତ ହୋଇ ଯାଇଥିଲା । ଏହାପରେ ଅସୁର-ମାନେ ଘୋର ମାୟା ରଚନା କଲେ । ସେମାନଙ୍କ ମସ୍ତକ ଆକାଶକୁ ସ୍ପର୍ଶ କରୁଥିଲା । ଭୟଙ୍କର ଅସ୍ତ୍ର ଶସ୍ତ୍ର ଧାରଣ କରି ସେମାନେ ଦେବୀଙ୍କୁ ଆକ୍ରମଣ କଲେ । ଅସୁରମାନଙ୍କର ମାୟାବୀ ରୂପ ଦେଖି ଦେବୀ ସେମାନଙ୍କୁ କିପରି ନିଧନ କରିବେ, ସେଥିନେଇ ଘୋର ଚିନ୍ତାରେ ପଡ଼ିଲେ ।

ମହାଦେବୀ ଦୁର୍ଗା ଅସ୍ତ୍ରଦ୍ୱାରା ଅସୁରମାନଙ୍କ ମୁଣ୍ଡ କାଟିଲେ ମଧ୍ୟ ସେମାନଙ୍କ କାନ୍ଧରେ ଲକ୍ଷ ଲକ୍ଷ ସଂଖ୍ୟାରେ ନୂତନ ମୁଣ୍ଡ ଜନ୍ମ ନେଉଥିଲା । ଏ ପ୍ରକାର ଅସାଧାରଣ ଦୃଶ୍ୟରେ ଦେବୀ ବିବ୍ରତ ହୋଇ ଯାଉଥିଲେ । ଅସୁରମାନଙ୍କ ମୃତ୍ୟୁର ଭେଦ ଓ ରହସ୍ୟ ପ୍ରେତାଶୁଣୀଠାରୁ ଶୁଣିବାପରେ ସେମାନଙ୍କୁ ବଧ କରିବା ସହଜ ହୋଇଥିଲା । ଏଣେ ଘୋର ଯୁଦ୍ଧର

ସମ୍ପୂର୍ଣ୍ଣ ଧ୍ୱଂସ ହୋଇ ଶୂନ୍ୟ ଓ ଉପଶୂନ୍ୟ ସେନାପତି ଦ୍ୱୟଙ୍କର ଶୋଚନୀୟ ମୃତ୍ୟୁ ହୋଇ ଯାଇଥିଲା ।

ବ୍ରହ୍ମାଙ୍କଠାରୁ ବ୍ରହ୍ମଶକ୍ତି, ମହାଦେବଙ୍କଠାରୁ ତ୍ରିଶୂଳ, ଶତଧାର ବଜ୍ର ଇନ୍ଦ୍ରଙ୍କଠାରୁ ଆଣି ଦେବୀ ତାଙ୍କର ରଣକୌଶଳ ପୁନରାୟ ସ୍ଥିର କଲେ । ଏହି ତିନି ଅସ୍ତ୍ରକୁ ଦେବୀ ଏକାଧାରରେ ଯୋଚି ପାରିଲେ । ଏଭଳି ଘଟଣା କେବେ ଦେଖାନଥିଲି କି ଶୁଣି ନଥିଲି । ଏହି ଅସ୍ତ୍ରମାନ ମନ୍ଦର ପର୍ବତ ଠାରୁ ଅଧିକ ଓଜନ ଥିଲା । ଏହି ଅସ୍ତ୍ରମାନ ଅସୁରଙ୍କଠାରେ ପ୍ରୟୋଗ କଲେ ସେମାନେ ନାଶପିବେ ବୋଲି ଶୂନ୍ୟବାଣୀ ହେଲା । ମହାମାୟୀ ଶୂନ୍ୟବାଣୀ ଶୁଣି ଆନନ୍ଦ ପ୍ରକାଶ କଲେ । ତିନି ଅସ୍ତ୍ରକୁ ଅସୁରଙ୍କ ଦେହରେ ପ୍ରୟୋଗ କଲାବେଳେ ଅସ୍ତ୍ରମାନେ ବାହାରକୁ ନ ଆସିବା ପାଇଁ ଦେବୀ ସମ୍ପୃକ୍ତ ଅସ୍ତ୍ରମାନଙ୍କୁ ନିର୍ଦ୍ଦେଶ ମଧ୍ୟ ଦେଇଥିଲେ । ଏଣୁ ଶରଗୁଡ଼ିକ ଅସୁରଙ୍କ ଦେହରେ ପତିତ ହେଲା । ସେମାନଙ୍କ ନାଭିଦେଶରେ ଶୂଳଶକ୍ତି ଫୁଟିଥିଲା । ହୃଦୟରେ ବଜ୍ରଶକ୍ତି ଭେଦ କଲା । କଣ୍ଠ ଦେଶରେ ବ୍ରହ୍ମଶକ୍ତି ଲାଗିଗଲା । ଏହିସବୁ ଅମୋଘ ଅସ୍ତ୍ରରେ ମହିଷାସୁରଙ୍କର ପ୍ରଧାନ ପ୍ରଧାନ ସେନାପତିମାନେ ବିନାଶର ସମ୍ମୁଖୀନ ହେଲେ । ଦେବଲୋକରେ ଆନନ୍ଦ ଉଲ୍ଲାସ ଖେଳିଗଲା । ଦେବଲୋକ ମା' ଦୁର୍ଗାଙ୍କର ସ୍ତୁତିଗାନ କଲେ ।

ଅସୁର ସେନାପତିମାନଙ୍କ ନିଧନ ବାର୍ତ୍ତା ମହିଷାସୁରଙ୍କର କର୍ଣ୍ଣଗତ ହେଲା । ଏକ ପକ୍ଷରେ ଲକ୍ଷ ଲକ୍ଷ ସୈନିକମାନଙ୍କ ନିଧନ, ଅନ୍ୟ ପକ୍ଷରେ ଦେବୀଙ୍କଦ୍ୱାରା ଶୂନ୍ୟ, ଉପଶୂନ୍ୟ ଓ ଅନ୍ୟାନ୍ୟ ବୀରମାନଙ୍କ ନିଧନରେ ମହିଷାସୁର ହତୋତ୍ସାହ ହୋଇ ପଡ଼ିଲା । ମହିଷାସୁରର ଚିନ୍ତା ବଢ଼ିଲା । ମହିଷା ଭାବୁଥିଲା ଏ ଜୀବନ ରକ୍ଷିକରିବା ଲାଭ ନାହିଁ । ଏକ୍ଷପାନ କରିବା ପାଇଁ ମଧ୍ୟ ସେ ସ୍ଥିର କଲା । ସେ ଭାବୁଥିଲା ଶତପଦ୍ମ ସୈନ୍ୟ ତାର ଥିଲେ । ସେମାନେ ଥିଲେ ଏକରୁ ଆରେକ ବଳବାନ । ସେମାନଙ୍କର ନର ଓ ନାଗ ଲୋକଙ୍କୁ ଭୟ ନଥିଲା । ଏକଷୌହିଣୀ ଏକକୋଟି ଯେଉଁ ପଦାତିକବାହିନୀ ଥିଲେ ସେମାନେ ମଧ୍ୟ ଯୁଦ୍ଧର ଚତୁର୍ଦ୍ଦଶ ଦିବସରେ ନିହତ ହେଲେ । ସମଗ୍ର ପୃଥିବୀକୁ ମହିଷାର ଯେଉଁ ସୈନ୍ୟମାନେ କରଗତ କରି ପାରିଥାନ୍ତେ, ସେମାନଙ୍କୁ ଦେବୀ ଏପରି ନିଧନ କଲେ ଯେ, ସେମାନଙ୍କ ରକ୍ତ ମାଂସ

ଭୂମି ଉପରେ ମଧ୍ୟ ଚଢ଼ିନଥିଲା । ତାହା ଶୂନ୍ୟ ଶୂନ୍ୟ ମିଳାଇ ଯାଇଥିଲା । ପୁନର୍ବାର ମହିଷା ନିଜ ମନକୁ ବୁଝାଇଲା । ଦେବୀଙ୍କର ସମ୍ମୁଖୀନ ହେବାକୁ ଦମ୍ଭ ଧରିଲା ।

ଏହାପରେ ମହିଷାସୁର ଅନ୍ତଃପୁରରୁ ବାହାରିଲା । ତାର ସାରଥି ଧୂମ୍ରଲୋଚନକୁ ରଥ ସଜ କରିବାପାଇଁ ନିର୍ଦ୍ଦେଶ ହେଲା । ସ୍ୱର୍ଗରୁ ମହିଷାସୁର ଆଣିଥିବା ସୂର୍ଯ୍ୟକେତୁ ବିମାନକୁ ଧୂମ୍ରଲୋଚନ ସୁସଜ୍ଜିତ କରିଦେଲା । ସ୍ୱର୍ଗପୁରର ଐଶ୍ୱର୍ଯ୍ୟରେ ସେହି ରଥ ଥିଲା ସୁଶୋଭିତ । ତାହା ବିନା ଚକରେ ଶୂନ୍ୟରେ ଉଡ଼ି ପାରୁଥିଲା । ବିଜୟ କେତନ ମୁକୁଟ ନିଜର ଶିରରେ ଲଗାଇଲା । କୋଟି ସୂର୍ଯ୍ୟଙ୍କୁ ପରାହତ କରୁଥିବା ରତ୍ନରାଜିକୁ ଦେହର ଆଭରଣ କଲା ମହିଷା । କର୍ଣ୍ଣରେ କର୍ଣ୍ଣାଚଳ, କଣ୍ଠରେ ରତ୍ନ ସୂର୍ଯ୍ୟରଶ୍ମି, ହାର ସେ ପିନ୍ଧିଲା । କଟି ତଟରେ ଗଜ ମୁକ୍ତାର ହାର ଘେନିଲା । ଦୋନି ଭୂଜରେ ରକ୍ଷସଂହାର ଓ ମାଣିକ୍ୟର ଗୁରସଣ ହାର ଗୁଡ଼ାଇଲା । ସୁବର୍ଣ୍ଣ ଓ ହୀରାର ବାହୁଟିରେ ତାର ଭୁଜ ଦୁଇ ଶୋଭା ପାଉଥିଲା । କଟଟିରେ ମର୍କତ ଓ ହୀରାର ଅଳଙ୍କାର ତାର ଶୋଭା ପାଉଥିଲା । ଦୋନି ପାଦରେ ରତ୍ନ ନୂପୁର ପିନ୍ଧି ମହିଷାସୁର ପ୍ରସ୍ତୁତ ହେଲା । ହାତରେ ଧାରଣ କରିଥିବା ଧନୁ ଥିଲା—ବଜ୍ରରତ୍ନ ଖଚିତ । ଏପରି ରତ୍ନମାନ ଦେବଲୋକଙ୍କ ପାଇଁ ମଧ୍ୟ ଦୁର୍ଲଭ ଥିଲା । ନିଜର ଅଙ୍ଗୁଳି-ମାନଙ୍କରେ ମହିଷା ସପ୍ତରତ୍ନ ମୁଦିମାନ ପିନ୍ଧିଥିଲା, ଏହିପରି ବିବିଧ ମହାର୍ଘ ରତ୍ନ ଅଳଙ୍କାର ଶୋଭିତ ହୋଇ ମହିଷାସୁର ଯୁଦ୍ଧ କ୍ଷେତ୍ରକୁ ଆଗମନ କଲା ।

•

ମହିଷାସୁର କନ୍ୟା ମାସ ଶୁକ୍ଳ ମହାଷ୍ଟମୀ ଦିନ ଦେବୀଙ୍କ ସହିତ ଯୁଦ୍ଧ କରିବାପାଇଁ ଯୁଦ୍ଧ କ୍ଷେତ୍ରକୁ ବାହାରିଥିଲା । ଏହି ଯୁଦ୍ଧ ଦୀର୍ଘ ଦୁଇଦିନ ଧରି ଚାଲିଥିଲା । ଦେବୀ ମଧ୍ୟ ମହା ପ୍ରତାପରେ ମହିଷାର ସମ୍ମୁଖୀନ ହୋଇଥିଲେ । ଉଭୟଙ୍କ ମଧ୍ୟରେ ଘୋରତମ ସମର ହୋଇଥିଲା । ଦେବୀ ମହିଷାକୁ ସମସ୍ତ ଶକ୍ତି ଖଟାଇ ନାନାପ୍ରକାର ଅସ୍ତ୍ରମାନ ପ୍ରୟୋଗ କଲେ । ଯେତେ ଅସ୍ତ୍ର ପ୍ରୟୋଗ କଲେ ମଧ୍ୟ ମହିଷାର ଶରୀରରେ ପଡ଼ି ତାହା ନଷ୍ଟ ହୋଇ ଯାଉଥିଲା । ବିଧାତାଙ୍କ ବରଦାନ ଲାଭ କରି ମହିଷା ଥିଲା

ଅଜେୟ । ଦେବୀ ବଡ଼ ପ୍ରମାଦରେ ପଡ଼ିଲେ । ଯେଉଁସବୁ ଅସ୍ତ୍ର ସେ ବିଭିନ୍ନ ଦେବତାଙ୍କଠାରୁ ଲାଭ କରିଥିଲେ—ତାହା ସବୁ ମହିଷାସୁର ବଧ ନିମନ୍ତେ ଯଥେଷ୍ଟ ମନେହେଲା ନାହିଁ । ଏଣିକି ଦେବୀ ଅନ୍ୟ ଉପାୟ ଚିନ୍ତା କଲେ । କଥିତ ଥିଲା ଦେବୀଙ୍କ ଉଲଗ୍ନ ଶରୀର ଦେଖିବା ମାତ୍ରେ ମହିଷା ହତବଳ ହୋଇଯିବ । କିନ୍ତୁ ଦେବୀ କିପରି ବା ଉଲଗ୍ନ ହେବେ । ଏଣେ ଉଲଗ୍ନ ନହେଲେ ରାକ୍ଷସର ମୃତ୍ୟୁ ହେବନାହିଁ । ରାକ୍ଷସର ମୃତ୍ୟୁ ନହେଲେ ସ୍ୱର୍ଗଲୋକ, ନାଗଲୋକ, ଦେବଲୋକରେ ଅଶାନ୍ତି । ଜଗତର ମଙ୍ଗଳ ପାଇଁ ଦେବୀ ନିଜର ଲଜ୍ଜା ତ୍ୟାଗ ପାଇଁ ପ୍ରସ୍ତୁତ ହେଲେ । ଦେବୀଙ୍କ ନଗ୍ନ ଜାନୁ, ବକ୍ଷଦେଶ ଓ ନାଭିଦେଶ ଦେଖି ଅସୁର ବିମୋହିତ ହେଲା । ତାର ହାତରେ ଥିବା ଅସ୍ତ୍ରମାନ ଅଚଳ ହୋଇଗଲା । ଦେବୀ ଏହି ସୁଯୋଗରେ ଆଉ କାଳକ୍ଷେପଣ ନକରି କନ୍ୟା ମାସ ଦଶମୀ ଦିନ ମହିଷାସୁରକୁ ବଧ କଲେ । ସର୍ବଲୋକରେ ଶାନ୍ତି ବିରାଜମାନ କଲା । ନରଲୋକ, ଦେବଲୋକ, ନାଗଲୋକ ମହିଷାସୁର ବଧ ପରେ ଶାନ୍ତିଲାଭ କରି ଦେବୀଙ୍କର ସ୍ତୁତି ଗାନ କଲେ । ଧରାଧାମରେ ଦେବୀଙ୍କର ଅଖଣ୍ଡ ମହିମା ବିରାଜମାନ କଲା

କାଳେ କାଳେ ଆସୁରିକ ପ୍ରକୃତି ଓ ପ୍ରବୃତ୍ତି ଲୋକ ଜଗତର ଅଶାନ୍ତିର କାରଣ ହୋଇଛି । ଶାନ୍ତି, ମୈତ୍ରୀ ଓ ପ୍ରଗତି ପାଇଁ ଆସୁରିକ ବଳ ଓ ପ୍ରବୃତ୍ତିର ସଂହାର ଧରିତ୍ରୀ ଲୋଡ଼ିଛି । ବିଳମ୍ବରେ ହେଲେ ମଧ୍ୟ ସତ୍ୟ, ଶାନ୍ତି, ଅହିଂସାର ବିଜୟ ହୋଇ ଆସିଛି । ଆସୁରିକ ତେଜ, ବଳ, ଐଶ୍ୱର୍ଯ୍ୟ ସତ୍ୟ ନିକଟରେ ପରାଜୟ ସ୍ୱୀକାର କରି ଆସିଛି । ମା’ ‘ଦୁର୍ଗା ସତ୍ୟ, ଶାନ୍ତି ଓ ପ୍ରଗତିର ପ୍ରତୀକ । ଆସୁରିକ ବଳ ପ୍ରଚଣ୍ଡ ହେଲେ ମଧ୍ୟ ତାହା କାଳେ କାଳେ ପରାଜୟରୁ, ପରାଭବ ଭୋଗ କରି ଆସିଛି ।



# ରାମାଭିଷେକ

ଶ୍ରୀ ଯଦୁନାଥ ଦାଶମହାପାତ୍ର

ଶ୍ରୀରାମଚନ୍ଦ୍ର ଲଙ୍କାର ରାବଣକୁ ବଧ କରି ଜାନକୀଙ୍କୁ ଉଦ୍ଧାର କଲେ । ବିଭୀଷଣଙ୍କୁ ଲଙ୍କାର ରାଜା କରାଇ ଦେବତାମାନଙ୍କର କଷ୍ଟ ମୋଚନ କଲେ । ତତ୍ପରେ ଚଉଦ ବର୍ଷ ବନବାସ କାଳ ସମ୍ପୂର୍ଣ୍ଣ ହେଲା । ଶ୍ରୀରାମ, ସୀତା, ଲକ୍ଷ୍ମଣ, ହନୁମାନ ସଙ୍ଗତରେ ଯାଇ ସରଯୂ ନଦୀ କୂଳରେ ଉପନୀତ ହେଲେ । ନିକଟବର୍ତ୍ତୀ ଅଯୋଧ୍ୟାରେ ପ୍ରବେଶ କରିବାକୁ ଶ୍ରୀରାମ ସଙ୍କୋଚବୋଧ କଲେ । ଲକ୍ଷ୍ମଣଙ୍କୁ କହିଲେ—ବାବୁ ଲକ୍ଷ୍ମଣ ! ତୁମେ ବହନ ଯାଇ ରାଜମାତାମାନଙ୍କୁ ସମ୍ବାଦ ଦିଅ । ରାଜାଙ୍କର ଇଚ୍ଛା ହେଲେ ଆମ୍ଭେ ଅଯୋଧ୍ୟାକୁ ଯିବା । ମାତାଙ୍କୁ ଦର୍ଶନ କରି ପୁନଶ୍ଚ ବନସ୍ତରେ ପ୍ରବେଶ କରିବା ।

ଶ୍ରୀରାମଙ୍କ ଏଭଳି କଥାରେ ଲକ୍ଷ୍ମଣ ତଟସ୍ଥ ହୋଇ କହିଲେ—ହେ ଦେବ ! ଆପଣଙ୍କ ମୁଖରେ ଏଭଳି କଥା ଶୋଭା ପାଏନା । ଶାନ୍ତଶୀଳ ହୋଇ ଦୁର୍ଜନ ବୁଦ୍ଧି ବହନ କରିବା ଅନୁଚିତ୍ । ଆପଣ ଅଯୋଧ୍ୟାର ନାୟକ । ଆମ୍ଭେମାନେ ଆପଣଙ୍କର ସେବକ । ଶୀଘ୍ର ଚାଲନ୍ତୁ; ମାତା-ମାନଙ୍କୁ ଦର୍ଶନ କରିବା ।

ଏହିଭଳି କଥୋପକଥନ ପରେ ସନ୍ଧ୍ୟା ଉପଗତ ହେଲା । ରଘୁବୀର ସ୍ନାନ ନିମନ୍ତେ ବିଜେ କଲେ । ପିତୃପିତାମହଙ୍କ ଉଦ୍ଦେଶ୍ୟରେ

ତର୍ପଣ କଲେ । ହନୁମାନ ସଂଗ୍ରହ କରି ଆଣିଥିବା ଫଳମୂଳକୁ ସମଭାଗରେ ବଣ୍ଟନ କଲେ । ଭୋଜନ ପରେ ମୁଖ ପ୍ରକ୍ଷାଳନ କରି କୋମଳ ପତ୍ର ବିଛଣାରେ ଶୟନ କଲେ । ଜାନକୀ ଶୋଇଲେ ତାଙ୍କ କୋଳରେ ଏବଂ ହନୁମାନ ଉପବେଶନ କଲେ ତାଙ୍କ ପାଦ ଦେଶରେ ।

ରାଣୀ କୌଶଲ୍ୟା ଦିନ ଗଣନା କରୁଥିଲେ । ଚଉଦ ବର୍ଷ ଅତିକ୍ରାନ୍ତ ହେବାରୁ ମନ୍ତ୍ରୀ ସୁମନ୍ତ୍ରଙ୍କୁ ଡାକି କହିଲେ—ପୁତ୍ରର ବନବାସ ଯୋଗ ଶେଷ ହୋଇଛି । ଅଯୋଧ୍ୟା ନଗରରେ ଉତ୍ସବର ଆୟୋଜନ କର । ହାଟ ବାଣ୍ଡକୁ ପହଁରେଇ ଦିଅ । ନଗରମଣ୍ଡନ କରି ପସରମାନ ବସେଇ ଦିଅ ।

ଏତେ କହି ମାତା କୌଶଲ୍ୟା ବନ୍ଦନ ଯାଇ ବଶିଷ୍ଠଙ୍କ ପାଦ ତଳେ ସମ୍ମାନ ଜଣାଇ ରାମଚନ୍ଦ୍ରଙ୍କ ଆଗମନ ବାର୍ତ୍ତା ପଚାରିଲେ । କହିଲେ — ଚଉଦ ବର୍ଷ ତ ଅତିକ୍ରାନ୍ତ ହେଲଣି । ବିଚାର କରି କହନ୍ତୁ ମୋର ପୁତ୍ର କେଉଁଦିନ ଫେରିବେ ? କୌଶଲ୍ୟାଙ୍କ ପ୍ରଶ୍ନ ଶୁଣି ବ୍ରହ୍ମର୍ଷି ଧ୍ୟାନରେ ବସିଲେ । ଧ୍ୟାନରେ ଜାଣିଲେ ସରଯୂ ନଦୀ କୂଳଠାରେ ରାମ, ଲକ୍ଷ୍ମଣ, ଅବସ୍ଥାନ କରୁଛନ୍ତି ।

କୌଶଲ୍ୟାଙ୍କୁ କହିଲେ—ତୁମ ପୁତ୍ର ଶ୍ରୀରାମ ସରଯୂ ନଦୀ କୂଳରେ ପହଞ୍ଚି ସାରିଛନ୍ତି । ଅର୍ଘ୍ୟଥାଳ ଧରି ଶୀଘ୍ର ବାହାରି ଆସ । ଆମେ ସରଯୂ ନଦୀ ପର୍ଯ୍ୟନ୍ତ ଯିବା ।

ଏହା ଶୁଣି ମହାଦେବୀ ଅତ୍ୟନ୍ତ ହରଷ ହୋଇ ସ୍ନାନାଦି ନିତ୍ୟକର୍ମ ଶେଷକରି ଅର୍ଘ୍ୟଥାଳ ସଜାଇଲେ । ଗ୍ରାମଦେବତୀ ମଙ୍ଗଳା ଓ ହରଗୌରୀ ପୀଠକୁ ଯାଇ ପୂଜାର୍ଚ୍ଚନା କରି ଶ୍ରୀରାମଙ୍କ ଶୁଭ ମନାସିଲେ ।

ଅଯୋଧ୍ୟା ନଗରରେ ଶ୍ରୀରାମଙ୍କ ଆଗମନ ବାର୍ତ୍ତା ପ୍ରଚାର ହୋଇ ଯିବାରୁ ପ୍ରଜାମାନେ ସରଯୂ ନଦୀ ଅଭିମୁଖେ ଧାଡ଼ି ଲଗାଇଲେ । ଭରତ ପାତ୍ରମନ୍ତ୍ରୀଙ୍କ ସହିତ ବାଦ୍ୟ ଶବ୍ଦରେ ପୃଥିବୀକୁ ଉଲ୍ଲସିତ କରି ରାମଙ୍କୁ ସ୍ୱାଗତ ଜଣାଇବା ପାଇଁ ଅଗ୍ରସର ହେଲେ । ଅଯୋଧ୍ୟାପୁରରେ ଗହଳ ଚହଳ ଲାଗିଗଲା । ପୁରନାରୀମାନେ ହୁଳହୁଳି ଶବ୍ଦକରି ଘରୁ ବାହାରି ହେଲେ । ମୁହୂର୍ତ୍ତକରେ ସମସ୍ତେ ଯାଇ ସରଯୂ କୂଳରେ ପହଞ୍ଚିଲେ ।

ସେମାନଙ୍କ ବାଦ୍ୟ ଶବ୍ଦରେ ଶ୍ରୀରାମଙ୍କ ନିଦ୍ରା ଭଙ୍ଗହେଲା । 'ଏ କି ଶବ୍ଦ ଶୁଭୁଛି' ବୋଲି ସେ ଲକ୍ଷ୍ମଣଙ୍କୁ ପଚାରିଲେ । ଗଛଡାଳ ଚଢ଼ିଲ ଓ ଥାଟ ଦେଖି ଲକ୍ଷ୍ମଣ କହିଲେ—ହେ ସୀତାନାଥ ! ଅଯୋଧ୍ୟାର ଥାଟ ସେନ ରାଜା ଭରତ ଆସୁଛି । ସେ ନିଶ୍ଚୟ ଆମ୍ଭଙ୍କୁ ଅଯୋଧ୍ୟାରେ ପ୍ରବେଶ କରିବାକୁ ନ ଦେଇ ଏଠାରୁ ଘଉଡ଼ାଇ ଦେବ । ଆଜ୍ଞା ଦିଅନ୍ତୁ ମୁଁ ଯାଇ ଭରତ ଓ ତା'ର ସୈନ୍ୟବଳକୁ ନିପାତ କରିବି ।

ଲକ୍ଷ୍ମଣଙ୍କ କଥା ଶୁଣି ଶ୍ରୀରାମ ହସିଲେ । କହିଲେ—ରାଜା ଭରତ ଯଦି ଆମ୍ଭମାନଙ୍କୁ ଅଯୋଧ୍ୟାରେ ପ୍ରବେଶ କରିବାକୁ ନ ଦିଏ, ତେବେ ଜାନକୀ ସହିତ ମୁଁ ବନସ୍ତରେ ରହିବି ।

ସୂର୍ଯ୍ୟୋଦୟ ହୁଅନ୍ତେ ସୀତା କୁଟୀର ବାହାରକୁ ଆସି ଶାଶୁମାନଙ୍କୁ ଦେଖି ପ୍ରଣାମ ଜଣାଇ ଶ୍ରୀରାମଙ୍କୁ କହିଲେ—ତୁମ୍ଭ ମାତା ଆସୁଛନ୍ତି ।

ଶ୍ରୀରାମ ଦେଖିଲେ ବଶିଷ୍ଠ ମୁନିଙ୍କ ସହିତ ରାଜା ଭରତ, ମନ୍ତ୍ରୀ ସୁମନ୍ତ ଓ ମାତା କୌଶଲ୍ୟା ପ୍ରମୁଖ ସମ୍ମୁଖରେ ଉପସ୍ଥିତ । ପୁତ୍ରକୁ ଦେଖି କୌଶଲ୍ୟା ରାଣୀଙ୍କ ଦୁଇ ନୟନରୁ ଅଶ୍ରୁଧାର ବିଗଳିତ ହେଲା । ସେ 'ହା ରାମ ହା ରାମ' କରି ଦ୍ରୁତ ପଦରେ ଆଗେଇ ଆସନ୍ତେ ରାମ ବେନିକର ଯୋଡ଼ି ତାଙ୍କ ପାଦତଳେ ପଡ଼ିଗଲେ । କୌଶଲ୍ୟା ରାଣୀ ତାଙ୍କୁ ଉଠାଇନେଇ କୋଳାଗ୍ରତ କଲେ । ସୁମିତ୍ରା, କୈକେୟୀଙ୍କ ପାଦରେ ମଧ୍ୟ ରାମ ଓଳିଗି ହେଲେ । ସୀତା ଓ ଲକ୍ଷ୍ମଣ ବଶିଷ୍ଠଙ୍କ ପାଦ ସ୍ପର୍ଶ କରି ପ୍ରଣତି ବାଢ଼ିଲେ । ଭରତ ଓ ଶତ୍ରୁଘ୍ନ ରାମଙ୍କ ପାଦତଳେ ଭୂମିଶାୟୀ ହେଲେ ।

ଶ୍ରୀରାମ ବଶିଷ୍ଠଙ୍କୁ କହିଲେ ହେ ଋଷି ! ଏମାନଙ୍କୁ ସାଙ୍ଗରେ ଘେନି କାହିଁକି ଆଗମନ କଲେ ? ମୁଁ ତ ବନବାସୀ । ବନ ମୋର ଘର ।

ବଶିଷ୍ଠ କହିଲେ—ବନବାସ ଯୋଗ ଆଉନାହିଁ । ଅଯୋଧ୍ୟା ରାଜ୍ୟ ତୁମ୍ଭର । ଶୀଘ୍ର ଅଯୋଧ୍ୟାରେ ପ୍ରବେଶ କରି ରାଜ୍ୟ ସମ୍ଭାଳିବା ତୁମ୍ଭର କର୍ତ୍ତବ୍ୟ ।

ଶ୍ରୀରାମ କହିଲେ—ହେ ବ୍ରହ୍ମାପୁତ୍ର ! ଭରତ ହିଁ ଅଯୋଧ୍ୟାର ରାଜା । ସେ ନ କହିଲେ ମୁଁ ଅଯୋଧ୍ୟାରେ ପ୍ରବେଶ କରିବି କିପରି ?

ଏହା ଶ୍ରବଣ କରି ଭରତଙ୍କ ସମଗ୍ର ଶରୀର କମ୍ପମାନ ହେଲା । 'ହେ ରାମ' କହି ସେ ତାଙ୍କ ପାଦତଳେ ପଡ଼ିଗଲେ ଓ କହିଲେ– ତୁମେ ଅଯୋଧ୍ୟାର ଠାକୁର । ତୁମରି ଆଜ୍ଞାରେ ମୁଁ ରାଜ୍ୟର ଜଗୁଆଳ । ରାଜ-ସିଂହାସନରେ ବସିବାକୁ ମୁଁ ଭାଜନ ନୁହେଁ । ତୁମରି ରତ୍ନ ପାଦୁକା ସିଂହାସନ ଉପରେ ବିରାଜମାନ । ମୁଁ କେବଳ ରାଜ୍ୟର ଭଲମନ୍ଦ ବୁଝୁଥିଲି । ଏବେ ତୁମ ରାଜ୍ୟଭାର ତୁମେ ହିଁ ସମ୍ଭାଳ ।

ଭରତ ଖୁବ୍ ଜୋର୍‌ରେ କ୍ରନ୍ଦନ କରୁଥିଲେ । ରଘୁନାଥ ତାଙ୍କୁ ପ୍ରବୋଧନା ଦେଇ କହିଲେ –ଏଥିରେ ତୋ'ର ବା ଦୋଷ କଣ ! ମାତା ପିତା ଏଭଳି ଭିଆଣ କରିଥିଲେ । ପୂର୍ବର ରାଜପଣ ନୟନରେ ଦେଖିଲେ । ତୁ କାନ୍ଦନା ଭାଇ ।

ଏହି ଦୃଶ୍ୟରେ ସମସ୍ତେ କୈକେୟୀଙ୍କୁ ଧିକ୍‌କାର କଲେ । ଶ୍ରୀରାମ ପୁନଶ୍ଚ ବଶିଷ୍ଠଙ୍କୁ କହିଲେ – ହେ ମୁନି ! ଭରତଙ୍କୁ କହନ୍ତୁ, ସେ ଯାଇ ରାଜ୍ୟ ଶାସନ କରୁ । ମୁଁ ତା'ର ରାଜପଣ ଛଡ଼ାଇ ନେବାକୁ ଚାହେଁ ନାହିଁ । ମୁଁ ଏହି ପବିତ୍ର ସରଯୂ ନଦୀ କୂଳରେ ନଗର ନିର୍ମାଣ କରି ସେହିଠାରେ ହିଁ ଅବସ୍ଥାନ କରିବି ।

ବଶିଷ୍ଠ ଶ୍ରୀରାମଙ୍କୁ କହିଲେ—ଦୈବଯୋଗରୁ ତୁମ୍ଭର ବନବାସ ଯୋଗ ଥିଲା । ଏଥିପାଇଁ କେହି ଦାୟୀ ନୁହନ୍ତି । ରଘୁନାଥ, ତୁମେ ପରଂ-ବ୍ରହ୍ମ ପୁରୁଷ । ଅଯୋଧ୍ୟାକୁ ଯିବାପାଇଁ ରଥ ଆରୋହଣ କର । ଅଭିଷେକ ଶେଷ କରି ରାଜ୍ୟ ଶାସନରେ ମନୋନିବେଶ କର ।

ବଶିଷ୍ଠଙ୍କ କଥାରେ ରାମଚନ୍ଦ୍ର ଜାନକୀଙ୍କ ସହିତ ରଥରେ ଆରୋହଣ କଲେ । ବାନରଗଣଙ୍କ ହୁଳହୁଳି ଶବ୍ଦରେ ମେଦିନୀ କମ୍ପମାନ ହେଲା । ତିନି ରାଣୀ ହାନ୍ଦୋଳାରେ ବିଜେ କଲେ । ସରଯୂ ପାରହୋଇ ସେମାନେ ଅଯୋଧ୍ୟା ନଗରରେ ପ୍ରବେଶ କଲେ । ସିଂହଦ୍ୱାରରେ ରଥ ପ୍ରବେଶ କରନ୍ତେ କାମିନୀକୁଳ ଅର୍ଘ୍ୟ ବନ୍ଦାପନା କଲେ । ଶ୍ରୀରାମ ଅନ୍ତଃପୁରରେ ପ୍ରବେଶ

କଲେ । ସ୍ନାନ ଶୌଚାଦି, ପିତୃତର୍ପଣ, ମାଜଣା ପ୍ରଭୃତି ଶେଷକରି ନୂତନ ବସ୍ତ୍ର ପରିଧାନ କଲେ । ଦେବ ପୂଜା ଶେଷକରି ବ୍ରାହ୍ମଣମାନଙ୍କୁ ଧନରତ୍ନ, ଅଳଙ୍କାର, ବସ୍ତ୍ର, ଗୋଦାନ, ଅନ୍ନଦାନ ଓ ଭୂମିଦାନ ପ୍ରଭୃତି କଲେ । ମଣୋହ୍ୱ ଶେଷକରି ବଶିଷ୍ଠଙ୍କ ପଦ୍ମ ପଲଙ୍କରେ ବସିଜକଲେ । ମାତା ଓ ଭ୍ରାତାମାନେ, ପାରିଷମନ୍ତ୍ରୀ ଅମାତ୍ୟଗଣ ନିକଟରେ ଉପବେଶନ କଲେ । ରାମଚନ୍ଦ୍ର ବନବାସ କାଳର ସମସ୍ତ ଘଟଣା ଯଥା :—ସୀତା ଅପହରଣ, ହନୁମାନଙ୍କ ଦ୍ୱାରା ସୀତାଙ୍କ ଠାବ, ସମୁଦ୍ରରେ ସେତୁବନ୍ଧ ନିର୍ମାଣ, ରାବଣ ସହିତ ଯୁଦ୍ଧ ଓ ତା'ର ମୃତ୍ୟୁ, ସୀତା ଉଦ୍ଧାର ପ୍ରଭୃତି ବର୍ଣ୍ଣନା କଲେ । ମଧ୍ୟାହ୍ନରେ ପ୍ରଭୁ ଶୟନ କରି ପ୍ରଦୋଷରୁ ଉଠି ନିତ୍ୟକର୍ମ ଶେଷକରି ଲକ୍ଷ୍ମଣ ଓ ହନୁମନ୍ତଙ୍କୁ ସାଙ୍ଗରେ ଘେନି ଅଯୋଧ୍ୟା କଟକ ବୁଲି ଦେଖିଲେ । ବୁଲିଲାବେଳେ କୌଣସି ଘର ସେ ବାଦଦେଲେ ନାହିଁ । ଭ୍ରମଣ ଶେଷରେ ପିତାଙ୍କ ଶ୍ମଶାନରେ ଯାଇ ଉପସ୍ଥିତ ହେଲେ । କୋଦଣ୍ଡଧାରୀ ଅନେକ ରୋଦନ କଲେ ।

ବୁଲିବା ଶେଷକରି ସୀତାଙ୍କ ପୁରକୁ ଗଲେ । ଭୋଜନ ଶେଷ କରି ଶୟନ କଲେ ।

ଏହିପରି ପାଞ୍ଚଦିନ ବିତିଗଲା । ଅଯୋଧ୍ୟାରେ ଶ୍ରୀରାମ ମହାସୁଖରେ କାଳାତିପାତ କଲେ । ଇତିମଧ୍ୟରେ ବଶିଷ୍ଠ ମୁନି ଭରତ, ଶତ୍ରୁଘ୍ନ, ମନ୍ତ୍ରୀ ସୁମନ୍ତ୍ର, ପାରିଷଗଣ, ରାଜତ, ମାହୁନ୍ତ ପ୍ରଭୃତିଙ୍କ ସହିତ ଅଭିଷେକ ବିଷୟରେ ବିଶଦ ଆଲୋଚନା କଲେ । ମହା ସମାରୋହରେ ଅଭିଷେକର ଆୟୋଜନ କରିବା ପାଇଁ ମନ୍ତ୍ରୀ ସୁମନ୍ତଙ୍କୁ ଦାୟିତ୍ୱ ଅର୍ପଣ କରାଗଲା । ବନ୍ଧୁବର୍ଗମାନଙ୍କୁ ଗୁଆ ନିମନ୍ତ୍ରଣ ପଠାଗଲା । ମକର ମାସ ଅର୍କବାରର ଦ୍ୱାଦଶୀ ଦିନ ଅମୃତ ଲଗ୍ନରେ ଶ୍ରୀରାମଙ୍କ ବୃଷ ରାଶିକୁ ଚନ୍ଦ୍ରଶୁଦ୍ଧି ହେଉଥିବାରୁ ଉକ୍ତ ସମୟରେ ଅଭିଷେକର ବ୍ୟବସ୍ଥା କରାଗଲା । ନଗ୍ରସାରା ଅଭିଷେକ କାଳର ଘୋଷଣା କରାଗଲା । ନଗରର ଲୋକେ ସେମାନଙ୍କ ଗୃହକୁ ନାନାବର୍ଣ୍ଣର ପୁଷ୍ପମାଳରେ ସଜାଇଲେ । ପିଣ୍ଡାରେ ସୁବର୍ଣ୍ଣ କଳସ ସ୍ଥାପନ କଲେ । ଘରେ ହୁଳହୁଳି ଦୁନ୍ଦୁଭି ବାଜି ଉଠିଲା । ଯଥା କାଳରେ ବଶିଷ୍ଠ ମୁନି ରାମଚନ୍ଦ୍ରଙ୍କୁ ଅଭିଷେକ ସ୍ଥାନକୁ ଯିବାପାଇଁ କହିଲେ । ଶ୍ରୀରାମ ହର୍ଷଭରେ ଶିରରେ ସୁବର୍ଣ୍ଣ ମୁକୁଟ

ବାନ୍ଧିଲେ । କପାଳରେ କସ୍ତୁରୀର ତିଳକ, କର୍ଣ୍ଣରେ କୁଣ୍ଡଳ, ଗଳାରେ ଗଜମୋତି ହାର, ବାହୁରେ ବାହୁଟି, ହୃଦୟରେ ସୁବର୍ଣ୍ଣ-ଜଣା ଉପବୀତ, କଟିରେ କାଛେଣୀ, ଉତ୍ତରୀୟ ପରିଧାନ କରି ସ୍କନ୍ଧଦେଶରେ କୋଦଣ୍ଡ ଧରି ଅଭିଷେକ ମଣ୍ଡପରେ ଉପସ୍ଥିତ ହେଲେ ।

ଏଣେ ଅନ୍ତଃପୁରର ଦାସୀମାନେ ଜାନକୀଙ୍କୁ ସ୍ନାନକରାଇ, ଅପରୂପ ବେଶରେ ସଜ୍ଜିତ କଲେ । ଜୁଡ଼ାରେ ଗନ୍ଧପୁଷ୍ପ, ଜଟମୂଳରେ ମାଣିକ୍ୟଝରର ଝୁମ୍ପା, କର୍ଣ୍ଣ ଓ ନାସାରେ ଅଳଙ୍କାର, ନୟନରେ କଜ୍ଜ୍ୱଳ, ମଥାରେ ସିନ୍ଦୂର ଗଳାରେ ମୁକ୍ତାହାର, ହୃଦୟରେ ସ୍ୱର୍ଣ୍ଣପଦକ, ବାହୁରେ ସୁବର୍ଣ୍ଣର ବାହୁ-ବନ୍ଧ, ହସ୍ତରେ କଙ୍କଣ, କୁଚପରେ କାଞ୍ଚଲି, କଟୀରେ ଘାଗୁଡି ପ୍ରଭୃତି ଶୋଭା ପାଇଲା । ଝୀନପଟନ ଶାଢ଼ୀ ପରିଧାନ କରି ସେ ଆସ୍ଥାନ ଉପରକୁ ଯାଇ ଶ୍ରୀରାମଙ୍କ କୋଳ ମଣ୍ଡନ କଲେ ।



୧

# ଶ୍ରୀଲଙ୍କାରେ ରାମଚନ୍ଦ୍ର

ଶ୍ରୀ ଗୋରାଚାନ୍ଦ ମିଶ୍ର

ଶ୍ରୀଲଙ୍କା ବା ଲଙ୍କାରେ ରାମଦୂତ ହନୁମାନ, ସୀତା ଠାକୁରାଣୀଙ୍କ ଠାବ କରିବାପାଇଁ ଯାଇଛନ୍ତି । ଅସୁର ଅସୁରୁଣୀମାନଙ୍କ ରାଜ୍ୟ ଶ୍ରୀଲଙ୍କା । ବାନର ବୀର ହନୁମନ୍ତ ଏକା ଡିଆଁକେ ସମୁଦ୍ର ପାର ହୋଇ ପହଞ୍ଚିଛନ୍ତି ସେ ଶ୍ରୀଲଙ୍କାରେ । ଦୁଇଟି କାର୍ଯ୍ୟ ହାସଲ କରିବାକୁ ପଡ଼ିବ । ମା' ସୀତାଙ୍କୁ ତ ଠାବ କରିବେ, ତା' ସହିତ ଶ୍ରୀଲଙ୍କାର ଗଳିକନ୍ଧି ସବୁ ଠଉରେଇବେ । ରାବଣର ବଳ କଳନା କରିବେ ।

ଜାଣିଶୁଣି ଧରା ଦେଇଛନ୍ତି ପବନପୁତ୍ର ହନୁମାନ । ତା' ପୂର୍ବରୁ ରାମପୂଜକ ହନୁମାନ ଲଙ୍କାର ଗଛପତ୍ର, ଫଳ, ଫୁଲ ସବୁ ଉଜାଡ଼ି ପକାଇଛନ୍ତି । ରାବଣର କ୍ରୋଧ କହିଲେ ନସରେ । ଦଶଟାଯାକ ମୁଣ୍ଡ ଭିତରେ ରାଗ ଚଢ଼ି ଯାଇଛି । ଆଦେଶ କରିଛନ୍ତି, ଅସୁର ସେନାମାନଙ୍କୁ, ଏ ମାଙ୍କଡ଼ଟାକୁ ଗୋଟେ ଘରେ ନେଇ ବନ୍ଦୀ କର । ତିଳ ତିଳକରି ତା'ର ମାଂସ କାଟିପକାଅ । ରାଉତ ମାହୁନ୍ତଙ୍କ ଭିତରେ ତା' ମାଂସ ବାଣ୍ଟିଦିଅ । ମାଙ୍କଡ଼ ମାଂସ ରନ୍ଧାହିବ—ଖାଇବାବାଲାଙ୍କ ମନଖୁସି । ରାବଣର ଆଦେଶ ମାତ୍ରେ ଅସୁରମାନେ ହନୁମାନଙ୍କୁ ବାନ୍ଧି ପକାଇଲେ । ତାକୁ ଟାଣି ଓଟାରି ନେଲେ ।

ଶ୍ରୀଲଙ୍କା ସାରା ଏ ଖବର ପ୍ରଚାର ହୋଇଗଲା । ମାଙ୍କଡ଼ ତ ମାଙ୍କଡ଼ କିନ୍ତୁ ଏପରି ପର୍ବତ ପ୍ରମାଣ ମାଙ୍କଡ଼କୁ କେହି କେବେ ଦେଖି ନଥିଲେ ।

ପିଲାଠୁ ବୁଢ଼ାବୁଢ଼ୀ, ଅସୁର ଅସୁରୁଣୀ ସମସ୍ତଙ୍କ ଧାଡ଼ ଲମ୍ବିଲା ଏ ଅଦ୍ଭୁତ ମାଙ୍କଡ଼କୁ ଦେଖିବା ଲାଗି । ରାବଣର ସାତଶ'ପଚାଶ ରାଣୀ । ସେମାନଙ୍କର ଆଗ୍ରହ ମଧ୍ୟ କମ୍ ନୁହେଁ । ସେମାନେ ରାଣୀହଂସପୁର ଛୁଡ଼ି ଦୌଡ଼ିଲେ ହନୁମାନଙ୍କ ଦର୍ଶନ ଲାଗି । ମାଲଗୋଦାମ ଭଳି ଏକ ବଡ଼ ଘରେ ହନୁମାନ ବନ୍ଧାହୋଇ ପଡ଼ିଛି, ପର୍ବତ ଭଳି ପଡ଼ିରହିଛି । ସାଙ୍ଘାତିକ ବାନର । ରାଣୀଙ୍କ ଭିତରେ ନାନା ଚର୍ଚ୍ଚା ଚାଲିଲା । କିଏ କହିଲା, ଏଥର ମାଙ୍କଡ଼ଟା ଲଙ୍କା ଭିତରେ ବାଟହୁଡ଼ି ପଶିଯାଇଛି । ତା'ର ମରଣ ନିଶ୍ଚିତ । ତା' ମାଂସ ପ୍ରତି ରାଣୀମାନଙ୍କର ମଧ୍ୟ ଲୋଭ । କେହି କେହି କହିଲେ, କାଠ କୁରାଢ଼ି ଆଣ, ଯ୍ୟାକୁ ହାଣି ସଜ ସଜ ମାଉଁସ ଖାଇବା । ରାଣୀ, ଦାସ, ଦାସୀଙ୍କ ହାତରେ ହଜାର ହଜାର କାଠ କୁରାଢ଼ି ।

ବୀରବର ହନୁମାନ ମୁହଁମାଡ଼ି ପଡ଼ି ରହିଥିଲେ । ରାଣୀମାନଙ୍କ କଥାବାର୍ତ୍ତା ସେ ଚୁପଚାପ ଶୁଣୁଥିଲେ । ହଠାତ୍ ସେ ଉଠିପଡ଼ିଲେ । ଚକାମୁଣ୍ଡି ପକାଇ ବସିଲେ । ତା'ପରେ ତାଙ୍କର ଲୀଳା ଆରମ୍ଭ ହୋଇଗଲା । ଲାଙ୍ଗୁଡ଼ରେ ରାଣୀମାନଙ୍କୁ ଛନ୍ଦାଛନ୍ଦି କରି ବାନ୍ଧି ପକାଇଲେ । କାଠ କୁରାଢ଼ି ସବୁ ସେମାନଙ୍କଠୁ ଛଡ଼ାଇ ନେଇ ଏତେ ଜୋର୍‌ରେ ଫିଙ୍ଗିଲେ ଯେ, କାହାର ମୁଣ୍ଡ କଟିଲା ତ କାହାର ଗଣ୍ଡି କଟି ତଳେ ପଡ଼ିଲା । ରକ୍ତର ନଦୀ ବହିଲା । ଗୁଡ଼ାଏ ଅସୁର ଅସୁରୁଣୀଙ୍କୁ ସେ କାଖରେ ଜାକିଦେବାମାତ୍ରେ ସେମାନଙ୍କ ପ୍ରାଣବାୟୁ ଉଡ଼ିଗଲା । କାହାର ଗାଲ କଟିଲା ତ କାହାର ନାକ, ଗୋଡ଼, ହାତ କଟିଗଲା । ପିଲାଗୁଡ଼ାକ ତାଙ୍କ ଦୀର୍ଘଶ୍ୱାସରେ ଆକାଶକୁ ଉଠି ତଳେ କଚଡ଼ି ହୋଇ ପଡ଼ିଲେ । ରାବଣକୁ ଖବର ଦେବାକୁ କେହି ରହିଲେ ନାହିଁ । ତାଙ୍କୁ ଦେଖିବା ପାଇଁ ଯିଏ ସବୁ ଆସିଥିଲେ, ସମସ୍ତଙ୍କ କାଳ ପୂରିଗଲା ।

ତା'ପରେ ମହାବୀର ଏକ ପାହାଡ଼ ଉପରକୁ ଉଠିଲେ । ଏକା ଡିଆଁକେ ସମୁଦ୍ର ଉପର ଦେଇ ଆରପାଖରେ ଯାଇ ପହଞ୍ଚିଲେ ସେ । ଇଆଡ଼େ ଶ୍ରୀରାମଚନ୍ଦ୍ର ଚିନ୍ତିତ । ହନୁମାନ ଗଲା ଯେ ଏ ପର୍ଯ୍ୟନ୍ତ ଫେରିଲା ନାହିଁ । ତା'ର କ'ଣ କିଛି ଅନିଷ୍ଟ ହେଲା କି ? ଅସୁର, ଅସୁରୀମାନେ ତାକୁ ଗିଳିପକାଇଲେ କି ! ଏହିଭଳି ନାନା ଚିନ୍ତା କରୁଥିବାବେଳେ ମହାବୀର

ହନୁମାନ ଶ୍ରୀରାମଙ୍କୁ ପ୍ରଣାମ କଲେ । ଲଙ୍କାରୁ ଫେରିବାରେ କାହିଁକି ବିଳମ୍ବ ହେଲା ଠିକଣାଠି ସବୁ ଖବରଦେଲେ । ହନୁମାନ କହିଲେ, ଗୋଟିଏ ଅସୁରୀ ଛଦ୍ମ ରୂପଧରି ତାଙ୍କ ପାଖରେ ପହଞ୍ଚିଲା । ନାନା କପଟ କଲା ସେ । ମୁଁ ତୁମର ସ୍ତ୍ରୀ ହେବି ବୋଲି କହିଲା । ତା'ପରେ ମତେ ସଙ୍ଗେ ସଙ୍ଗେ ଗିଳି ପକାଇଲା । ମୁଁ ତା' ପେଟରେ ପଶୁ ପଶୁ ମୋର ଦେହକୁ ଦି'ଗୁଣ କରିନେଲି । ମତେ ସମ୍ଭାଳି ପାରିଲା ନାହିଁ । ବାନ୍ତି କରିଦେଲା । ମୁଁ ତା' ପେଟରୁ ଆସି ତଳେ ପଡ଼ିଲି । ଶବଭଳି ଅଚେତ ଅବସ୍ଥା । ମତେ କାଟିକୁଟି ମୋର ମାଂସ ଖାଇବା ପାଇଁ ଅସୁର ଅସୁରୁଣୀମାନଙ୍କ ଭିତରୁ ଲାଳ ଗଡ଼ିଲା । ମତେ ବାନ୍ଧିପକାଇ ଗୋଟିଏ ଘର ଭିତରେ ପୂରେଇଦେଲେ । କାତି କୁରାଢ଼ି ଧରି ସେମାନେ ମତେ ହାଣିବାକୁ ଆସିବାମାତ୍ରେ, ମୁଁ ସେମାନଙ୍କୁ ଉଚିତ ଶିକ୍ଷା ଦେଲି । ସେହିମାନଙ୍କ କାତି କୁରାଢ଼ି ଛଡ଼ାଇ ନେଇ କାହାର ନାକ, ହାତ, ଗୋଡ଼ କାଟି ପକାଇଲି । କଏ ମଲା ତ କଏ ଖଣ୍ଡିଆ ଖାବରା ହେଲା । ସେମାନେ କାନ୍ଦବୋବାଳି କରୁଥିବାବେଳେ ମୁଁ ଖସି ଆସିଲି ।

ଶ୍ରୀରାମ ଏକଥା ଶୁଣି ଖୁସି ହେଲେ । ହନୁମାନଙ୍କୁ ଧନ୍ୟ ଧନ୍ୟ କହିଲେ । ତାଙ୍କ ମୁଣ୍ଡ ଉପରେ ହାତ ଥୋଇ କହିଲେ, ଏହି ଜଙ୍ଗଲ ଅଞ୍ଚଳରେ ତୁ ହନୁମାନ, ମୋର ଏକମାତ୍ର ସଖା । ମୁଁ ତୁମକୁ କିଛି ଦେଇ ପାରୁନି । କ'ଣ ବା ଅଛି ଦେବି ?

ହନୁମାନ ମୁଣ୍ଡ ନୁଆଇଁ କହିଲା, ତୁମେ ମୋର ପ୍ରଭୁ । ତୁମେ ତ୍ରିଲୋକର ନାଥ । ମୁଁ ତୁମର ଦାସାନୁଦାସ । ମୋର ଏକମାତ୍ର ପ୍ରାର୍ଥନା, ମତେ ପଶୁ ଜନ୍ମରୁ ଉଦ୍ଧାର କରନ୍ତୁ ।

ରାତି ପାହିଲା । ରଘୁବୀର ଶ୍ରୀରାମ ନିତ୍ୟକର୍ମ ଶେଷକଲେ । ସ୍ନାନ କରି ପିତୃ, ପିତାମହ ଆଦିଙ୍କୁ ଜଳ ତର୍ପଣ କଲେ···

ପାର୍ବତୀ ପଚାରୁଛନ୍ତି, ମହାଦେବ ରାମଚରିତ ବର୍ଣ୍ଣନା କରୁଛନ୍ତି । ପାର୍ବତୀଙ୍କ ପ୍ରଶ୍ନ—ହନୁମାନ ତ ଅସୁରମାନଙ୍କ ନାକକାନ କାଟି ଖସିଆସିଲା, ତା'ପରେ ଲଙ୍କାରେ କ'ଣ ହେଲା, ମତେ କହନ୍ତୁ । ମହାଦେବ କହିଲେ,

ତା'ପରେ ସେ ଲଙ୍କାରେ ହାହୁଲି ପଡ଼ିଗଲା । ସୁର ମାଙ୍କଡ଼ଟା ରାକ୍ଷୀମାନଙ୍କୁ ମଧ୍ୟ ଛାଡ଼ିଲା ନାହିଁ । ସମସ୍ତଙ୍କୁ କଦାକାର କରି ପକାଇଲା । କେତେଜଣ ରାକ୍ଷୀ ତ ମଲେ । ଆଉ କେତେଜଣଙ୍କ ମଲାଗଲା ଅବସ୍ଥା ।

ଦୂତମାନେ ରାବଣଙ୍କୁ ଏ ଖବର ଦେଲେ । କହିଲେ, ମାଙ୍କଡ଼ଟା ମଲାଭଳି ପଡ଼ିଥିଲା । ସିଏ ଇମିତି କାଣ୍ଡ କରିବ ବୋଲି କିଏ ଜାଣିଥିଲା ? ରାବଣ ସବୁ ଶୁଣିଲା, ଜାଣିଲା । କ୍ରୋଧରେ କମ୍ପି ଉଠିଲା ସେ । ଦୁଇସହସ୍ର ଆଖି-ଭିତରୁ ଯିମିତି ନିଆଁ ବର୍ଷିଲା । କହିଲା, ତୁମମାନଙ୍କ ଜୀବନ ଧିକ୍ । ମାଙ୍କଡ଼ଟାକୁ ଧରିପାରିଲ ନାହିଁ । ରାକ୍ଷୀମାନଙ୍କ ହାତଗୋଡ଼, ନାକକାନ କାଟିଛି ! ଏ ସବୁ ରାମର ଭିଆଣ । ମାଙ୍କଡ଼ଟା ସେଇ ରାମର ଦୂତ । ତେଣୁ ରାମକୁ କିପରି ମାରିହେବ, ସେ ଯୋଜନା କରିବାକୁ ପଡ଼ିବ ! ରାଜୁତ, ମାନ୍ତ୍ରୀମାନଙ୍କୁ ଡକାଇଲା । ତୁମମାନଙ୍କ ଭିତରେ କିଏ ରାମକୁ ମାରିପାରିବ, ହାତ ଟେକବୋଲି କହିଲା । ଏକଥା ମଧ୍ୟ ଘୋଷଣା କଲା ଯେ ଯିଏ ରାମ-ମରା ମନ୍ତ୍ର ଜାଣିଥିବ, ଯିଏ ତାକୁ ମାରିପାରିବ, ତାକୁ ମୁଁ ମୋ ରାଜ୍ୟର ମନ୍ତ୍ରୀ କରିବି ।

ରାଜୁତମାନେ କହିଲେ, ରାମ ତ ସୁର ମଣିଷଟାଏ । ଇମିତି କେତେ ମଣିଷଙ୍କୁ ଆମେ ଦନିକ ଭିତରେ ମାରୁଛେ । ଜଣଙ୍କୁ ମାରିବା ତ ସହଜ । ଆମମାନଙ୍କ ଭିତରୁ ଜଣଙ୍କୁ ନିଅନ୍ତୁ !

ରାଜା କହିଲେ, ଯାହା ହେଉ ମୋର ଚିନ୍ତା ଗଲା ! ତୁମେମାନେ ଯଦି ମାରିପାରିବ, ମୁଁ ତା' ସହିତ ଯୁଦ୍ଧ କରିବି କାହିଁକି ? ରାଜା ଗଲେ ପହଡ଼କୁ । କିନ୍ତୁ ଆଖିକି ନିଦ ମାଡୁନି । ମନ ଭିତରେ ରାମମାରଣ ଅଭିଯାନ ଚିନ୍ତାର ଲହଡ଼ି । ସକାଳ ପାଇବା ମାତ୍ରେ ମନରେ ପୁଣି ଚିନ୍ତା କରିବାକୁ ପଡ଼ିଲା । ରାମକୁ ମାରିବା ତ ଦୂରର କଥା, ଆଗେ ରାମର ବାନର ଦୂତକୁ ମାରିବାକୁ ପଡ଼ିବ । କିନ୍ତୁ ବାନର ଗଲା କୁଆଡ଼େ ? ତାକୁ ଖୋଜ । ରାଜା ପ୍ରଥମେ ଭଣଜା କମ୍ବୁ ରାକ୍ଷସକୁ ଡକାଇଲେ । କହିଲେ, ରାମକୁ ମାରି ପାରିଲେ ତତେ ପାଟମଥା ଦେବି । ରାଜାଙ୍କ ମୁହଁରୁ ଏକଥା ଶୁଣି କମ୍ବୁର ମନ କୁଣ୍ଢେମୋଟ । ଲଣ୍ଡେମାଡ଼ି କହିଲା ରାମ ଓ ବାନର ଦୁହିଁଙ୍କୁ ମାରି କାଲି ସନ୍ଧି ପାହୁ ପାହୁ ତୁମଙ୍କ ସାମନାରେ ସେମାନଙ୍କ କଟାମୁଣ୍ଡ ଆଣି ଥୋଇବି ।

ରାବଣର ମନ ଖୁସି । କହିଲା, ପାଟମଥା କ'ଣ ଦେବ, ଏ କାମ ହେଲେ, ତତେ ମନ୍ତ୍ରୀ ପଦରେ ବସାଇବ ।

ମାୟାବୀ ଅସୁର କମ୍ବୁରାକ୍ଷ । ସଙ୍ଗେ ସଙ୍ଗେ ସେ ବ୍ରାହ୍ମଣ ରୂପ ଧରିଲା । କଚ୍ଛା କଉପୁନି ପିନ୍ଧି ବ୍ରହ୍ମଚାରୀ ସାଜିଲା । ସମୁଦ୍ର ଡେଇଁ ରାମ ବାସ କରୁଥିବା ପର୍ବତ ଉପରକୁ ଉଠିଲା । ରାମଙ୍କ ପାଖରେ ପହଞ୍ଚିଲା ସେ । ବ୍ରହ୍ମଚାରୀ ବ୍ରାହ୍ମଣଙ୍କୁ ଦେଖି ଶ୍ରୀରାମ ତାଙ୍କୁ ପ୍ରଣିପାତ କଲେ । ସାଦର ସମ୍ବର୍ଦ୍ଧନା ଜଣାଇଲେ । କୁଶାସନ ଦେଲେ ବସିବା ପାଇଁ । କରପତ୍ର ଯୋଡ଼ି କହିଲେ, ହେ ମହର୍ଷି ଆପଣ କେଉଁ ଦେଶରୁ ଆସିଲେ ? ଅସୁର କହିଲା, ମୋ ଆଶ୍ରମ କାଶୀରେ । ମୁଁ ବାଳ ବ୍ରହ୍ମଚାରୀ । ତୀର୍ଥାଟନ କରୁଛି । ଗଙ୍ଗା ଗୟା ଆଦି ବିଭିନ୍ନ ତୀର୍ଥସ୍ଥାନ ପରିଭ୍ରମଣ କରିବା ପରେ ଏଠି ପହଞ୍ଚିଛି । ତୁମେ ତ ରାଜକୁମାର ଭଳି ଜଣାପଡ଼ୁଛ । ସୌମ୍ୟକାନ୍ତ ସୁନ୍ଦର ଅବୟବ । ଏହି ଘୋର ଅରଣ୍ୟ ଭିତରେ ବୁଲୁଛ କାହିଁକି ? ରାଜକୁମାର ହୋଇ ତୁମର ଏ ଦୀନହୀନ ବେଶଭୂଷା କାହିଁକି ?

ଶ୍ରୀରାମ କହିଲେ, ମୋ' ଘର ଅଯୋଧ୍ୟା । ମୁଁ ଦଶରଥ ନନ୍ଦନ ଶ୍ରୀରାମଚନ୍ଦ୍ର । ମୁଁ ଅସୁର, ରାକ୍ଷସଙ୍କୁ ଦେଖିବା ମାତ୍ରେ ବଧ କରେ । କାରଣ ସେମାନେ ମୁନିଋଷିଙ୍କ କାର୍ଯ୍ୟରେ ବାଧା ଦେଉଛନ୍ତି । ତା'ଛଡ଼ା ସାଧାରଣ ଲୋକଙ୍କ ପ୍ରତି ଅତ୍ୟାଚାର କରୁଛନ୍ତି । ନାନା ଉପଦ୍ରବ କରୁଛନ୍ତି ।

କମ୍ବୁରାକ୍ଷ ମନେ ମନେ ଭାବିଲା, ମୁଁ ସିନା ରାମ ବୋଇଲେ ଜଣେ ସାଧାରଣ ମଣିଷ ବୋଲି ଭାବିଥିଲି, ଦେଖୁଛି, ଇଏ, ମୁଁ କ'ଣ ଡମାଠୁ ହଜାର ହଜାର 'ଅସୁରଙ୍କ ବଳ ମିଶିଲେ' ଯେତେ, ତା'ଠୁ ବଳିଯିବାର ଇଏ । କମ୍ବୁରାକ୍ଷ ଯେ ବ୍ରାହ୍ମଣ ରୂପ ଧରିଛି, ବ୍ରାହ୍ମଣ ଭଳି କଥା କହିବାକୁ ପଡ଼ିବ ଭାବି କହିଲା, ବାପ ତୁମେ ଯାହା କହୁଛ, ତାହା କରିବା ଉଚିତ । ଅସୁରମାନଙ୍କ ରାଜା ରାବଣ । ତାକୁ ଯଦି ମାରିପାରିବ, ତାହାହେଲେ ତୁମର ଯଶକୀର୍ତ୍ତି ବଢ଼ିବ । ଶ୍ରୀରାମ କହିଲେ, ଆପଣ ଆଶୀର୍ବାଦ କଲେ, ମୁଁ ରାବଣକୁ ନିଶ୍ଚୟ ମାରିବ ।

ବ୍ରାହ୍ମଣବେଶୀ ଅସୁର କମ୍ବୁଗ୍ରୀବ କହିଲା, ମୋ' ପାଖରେ ଇମିତି ବିଭୂତି ଅଛି, ଯାହାକୁ କପାଳରେ ଲେପନ କଲେ, ସେ ତ୍ରିପୁରବିଜୟୀ ହୋଇ ପାରିବ । ରାବଣ ତ ଛାର !

ରଘୁବୀର ରାମଚନ୍ଦ୍ର ହାତ ବଢ଼ାଇ କମ୍ବୁଠୁ ମାୟା ବିଭୂତି ଗ୍ରହଣ କଲେ । ଶ୍ରୀରାମ ମୋହଗ୍ରସ୍ତ ହୋଇ ପଡ଼ିଲେ । ପ୍ରାୟ ଅଚେତ ଅବସ୍ଥା । ଦେହ ଟଳଟଳ । ମାୟାବୀ କମ୍ବୁଗ୍ରୀବ ଏ ସୁଯୋଗରେ ଶ୍ରୀରାମଙ୍କୁ ଲଙ୍କାକୁ ଟେକି ନେଇଗଲା । ରାଜାଙ୍କ ଆଗରେ ତାଙ୍କୁ ଉପସ୍ଥିତ କରାଇଲା । କହିଲା, ଇଏ ହେଉଛି ସେଇ ରଘୁବୀର ଶ୍ରୀରାମ । କହିଥିଲ, ଆଣିବ ବୋଲି । ତା' ମୁଣ୍ଡଟାକୁ କାଟି ଆଣିବ କ'ଣ । ସଶରୀର ନେଇ ଆସିଛି । ରାଜା ଦେଖୁ ଦେଖୁ ରାଉତ ମାହୁନ୍ତଙ୍କୁ କହିଲା, ୟାଁ'କୁ ନେଇ ମୁଣ୍ଡ କାଟିପକାଅ । ସଙ୍ଗେ ସଙ୍ଗେ ହଜାର ହଜାର ଅସୁର ଆସି ଜୁଟିଗଲେ ।

ଇଆଡ଼େ ସ୍ୱର୍ଗରେ ଦେବତାମାନଙ୍କ ଭିତରେ ହୁଲେଣି ପଡ଼ିଗଲା । ସ୍ୱୟଂ ବିଷ୍ଣୁଙ୍କ ଅବତାର ଶ୍ରୀରାମ । ରାବଣ ତାଙ୍କୁ ଧରି ନେଇ ମୁଣ୍ଡଗଣ୍ଡି ଅଲଗା କରିବା ଉପରେ । ବ୍ରହ୍ମା ସଙ୍ଗେ ସଙ୍ଗେ ମା' ସାରଦାଙ୍କୁ ଡାକି କହିଲେ, ତୁମେ ଯଥାଶୀଘ୍ର ଯାଇ ଲଙ୍କା ରାଜାଙ୍କ କଣ୍ଠରେ ବିଜେ କର । ରାବଣ ସମେତ ଲଙ୍କାର ସବୁ ଅସୁରଙ୍କୁ ମା' ସାରଦା ମୋହଗ୍ରସ୍ତ କରି ପକାଇଲେ । ଯେଉଁମାନେ ରାମଙ୍କୁ ମାର୍ ମାର୍ କହୁଥିଲେ, ସେମାନେ ଓଲଟା କଥା କହିଲେ । ରାବଣର ମଧ୍ୟ ମତ ବଦଳିଗଲା । ସ୍ଥିର ହେଲା, ଏଭଳି ସୁନ୍ଦର ଯୁବକଙ୍କୁ ପ୍ରାଣରେ ନ ମାରି କେତେଦିନ ବନ୍ଦୀଶାଳାରେ ରଖାଯିବ । ତାହାହିଁ ହେଲା । ଶ୍ରୀରାମଙ୍କୁ ବନ୍ଦୀ କରାଗଲା । ହଜାର ହଜାର ଅସୁର ତାଙ୍କୁ ଘୂରିପଟି ଜଗି ରହିଲେ ।

ଠିକ୍ ବେଳକୁ ରାମଦୂତ ହନୁମାନ୍ ହାଜର । ଫଳମୂଳ ଖାଇବା ବାହାନାରେ ସେ ରାମଙ୍କ ବନ୍ଦୀଘରେ ପହଞ୍ଚିଲା । ପ୍ରଥମେ ସେ ଯେଉଁ ପର୍ବତରୁ ଶ୍ରୀରାମ ଆସିଥିଲେ, ସେ ପର୍ବତରେ ବହୁତ ଖୋଜିଲା । ନ ପାଇ ହତାଶ ହେବା ପରେ ସେ ଦେବତାଙ୍କଠାରୁ ଖବର ପାଇଥିଲା ଯେ ଲଙ୍କାରେ ଶ୍ରୀରାମ ଏବେ ବନ୍ଦୀଦଶା ଭୋଗୁଛନ୍ତି । ସେ ମଧ୍ୟ ବ୍ରାହ୍ମଣ

ରୂପ ଧରିଲା । ଭିକାମୁଣି ଧରି ବାଲଙ୍କାର ଘର ଘର ଯାଇ "ଭିକ୍ଷାଂଦେହି, ଭିକ୍ଷାଂ ଦେହି" କହି କହି ବୁଲିଲା ହନୁମାନ । ଶ୍ରୀରାମଙ୍କୁ ବନ୍ଦୀଘରେ ରଖାଯାଇଛି ବୋଲି ଅସୁର ଅସୁରଣୀ କୁହାକୁହି ହେଉଥିବା ସେ ଶୁଣିବାକୁ ପାଇଲା । ବ୍ରାହ୍ମଣରୂପୀ ହନୁମାନ ପଚାରିଲା, ଶ୍ରୀରାମ ନାମକ ମଣିଷଟାକୁ ଏଯାଏଁ ନ ମାରି ରଖିଛ କାହିଁକି, ମୁଁ ଜାଣେ ଲୋକଟା ଅତି ଦୁଷ୍ଟ ! ଲୋକେ କହିଲେ, ମାରିବା ଲାଗି ପ୍ରଥମେ ରାଜାଙ୍କ ଆଦେଶ ହୋଇଥିଲା । କିନ୍ତୁ ରାଜା ପରେ ସ୍ଥିର କଲେ, ତାକୁ ନ ମାରି ବନ୍ଦୀକରି ରଖିବା । ତାକୁ ଏବେ ଗଡ଼ ଭିତରେ ବନ୍ଦୀକରି ରଖାଯାଇଛି । ତା'ର ଦୂତ ହନୁମାନଙ୍କୁ ଖୋଜା ଚାଲିଛି । କାରଣ ସେ ରାଣୀମାନଙ୍କ ନାକ କାନ କାଟି ପକାଇଛି । ସେଇଟା ଧରା ପଡ଼ିଲେ, ରାମ ଆଜି ତାକୁ ଏକାଠି ମରାଯିବ ।

ହନୁମାନ ସବୁ ଶୁଣିଲା । ଭିକ୍ଷା ମାଗିବା ବାହାନାରେ ସେ ରାଣୀ-ହଂସପୁରରେ ପ୍ରବେଶ କଲା । ଶ୍ରୀରାମଙ୍କୁ ଠାବ କରିବା ତା'ର ପ୍ରଧାନ ଲକ୍ଷ୍ୟ । ଧୀରେ ଧୀରେ ସେ ବନ୍ଦୀଘରେ ଶ୍ରୀରାମଙ୍କୁ ଭେଟିଲା । ଶ୍ରୀରାମଙ୍କୁ ହଜାର ହଜାର ଅସୁର ଜଗି ରହିଥିବା ଦେଖିଲା । ମନେ ମନେ ସେ ହସିଲା । ବ୍ରହ୍ମରୂପୀ ବ୍ରାହ୍ମଣ ହନୁମାନଙ୍କୁ ଦେଖି ଜଗୁଆଳି ଅସୁରମାନେ ତାଙ୍କୁ ଜୁହାର କଲେ । ବନ୍ଦୀଘରେ ବ୍ରହ୍ମରୂପୀ ! ଆଶ୍ଚର୍ଯ୍ୟ ହେଲେ ସମସ୍ତେ । ସେ ସଙ୍ଗେ ସଙ୍ଗେ ଶ୍ରୀରାମଙ୍କ ପାଖକୁ ଯାଇ ପ୍ରଭୁଙ୍କ କପାଳରେ ଲାଗିଥିବା ମାୟା ବିଭୂତି ପୋଛି ପକାଇଲା । ସେ ବିଭୂତି ଯୋଗୁଁ ସେ ନିଜକୁ ଭୁଲି ଯାଇଥିଲେ । ବିଭୂତି ପୋଛାଯିବା ପରେ ଶ୍ରୀରାମ ଦେଖିଲେ, ପର୍ବତରୁ ଆସି ସେ ଏବେ ଏକ ବନ୍ଦୀଶାଳାରେ । ସେ ସଙ୍ଗେ ସଙ୍ଗେ ଧ୍ୟାନରେ ବସିଲେ । ଗୃହୁଁ ଗୃହୁଁ କୋଦଣ୍ଡ ଆସି ତାଙ୍କ ହାତରେ ପହଞ୍ଚିଲା । ଧନୁକୁ ଟଂକାରି ସେ ଏକାଥରକେ ଲକ୍ଷ ଲକ୍ଷ ଶର ଛାଡ଼ିଲେ । ଏକା-ବେଳକେ ଜଗିଥିବା ଅସୁରମାନେ ଯମପୁରକୁ ଗଲେ । ପବନ କୁମାର ବୀର ହନୁମାନ ଆଉ ଯେତେ ବଞ୍ଚିଥିଲେ, ସମସ୍ତଙ୍କୁ ଏକ ଫୁତ୍କାରରେ ଉଡ଼ାଇ ଦେଲେ । କିଏ କୁଆଡ଼େ କବାଡ଼ ହୋଇ ପଡ଼ିଲେ ।

ହନୁମାନ ପ୍ରଭୁ ଶ୍ରୀରାମଙ୍କୁ ବିନମ୍ର ଭାବରେ କହିଲା, ଘୋର ଦୈତ୍ୟର ମାୟାରେ ପଡ଼ି ବନ୍ଦୀଦଶା ଭୋଗିଲେ ! ହେଉ ଯାହା ହେବାର ହେଲାଣି,

ଚାଲନ୍ତୁ ଏଣିକି । ଏତିକି କହି ସେ ଶ୍ରୀରାମଙ୍କୁ ପିଠିରେ ବସାଇ ଆକାଶରେ ଉଡ଼ି ଉଡ଼ି ଚାଲିଲା । ସହସ୍ରଶିର ରାବଣ ପାଖରେ ଏ ଖବର ପହଞ୍ଚିଲା । ବଞ୍ଚିଥିବା ଅସୁରମାନେ କହିଲେ, ଯେଉଁ ମାଙ୍କଡ଼ଟା ଆସି ରାଣୀମାନଙ୍କ ନାକ କାନ କାଟିଥିଲା, ସେଇ ମାଙ୍କଡ଼ଟା ବ୍ରାହ୍ମଣ ବେଶରେ ଆସି ଶ୍ରୀରାମଙ୍କୁ ଉଠାଇ, ଉଡ଼ାଇ ନେଇ ଯାଉଛି । ଶୁଣିବା ମାତ୍ରେ ରାବଣ କ୍ରୋଧାନ୍ଧ ହୋଇ ତା'ର ଲକ୍ଷ ଲକ୍ଷ ସୈନ୍ୟଙ୍କୁ ନେଇ ବାଟ ଓଗାଳିବା ଲାଗି ଉଦ୍ୟମ କଲା । ଶ୍ରୀରାମ ହନୁମାନ ପିଠି ଉପରେ ବସି ଯୁଦ୍ଧ କଲେ । ତାଙ୍କ ଶରରେ ଯେତେକ ଅସୁର ଆଉ ଥିଲେ, ସମସ୍ତେ ମଲେ । ରାବଣ ପଛଘୁଞ୍ଚା ଦେଇ ଡରିକରି ପଳାଇଲା, ନଚେତ୍ ସେଇଠି ତା'ର ପଞ୍ଚତ୍ୱପ୍ରାପ୍ତି ଘଟିଥାଆନ୍ତା । ଖାଲି "ରାମକୁ ରାମ ମାର" କହି ସେ ତା' ଉଆସ ଭିତରକୁ ଲେଉଟିଲା । ଆଉ ବାହାରିଲା ନାହିଁ ।

# ହେ ସ୍ୱର୍ଗ ବିଦାୟ

ଡଃ ହେମନ୍ତ କୁମାର ଦାସ

ଶ୍ରୀଲଙ୍କା ନଗରର ଉପକଣ୍ଠରେ ସନ୍ଧ୍ୟା ନଇଁଥିଲା । ପଶ୍ଚିମ ଆକାଶର ବର୍ଣ୍ଣିଳ ମହୋତ୍ସବ ମଧ୍ୟରେ ସମ୍ବୃତ କିରଣ ମରୀଚିମାଳୀ ଅସ୍ତ ଯାଉଥିଲେ କ୍ଳାନ୍ତ ଏବଂ ଅବସନ୍ନ ଏକ ଯୋଦ୍ଧା ଭଳି ।

ପୂର୍ବ ଆକାଶରେ ଦ୍ୱାଦଶୀର ଚନ୍ଦ୍ର ଦାୟିତ୍ୱ ଗ୍ରହଣ କରିବା ନିମନ୍ତେ ଆସି ଉପସ୍ଥିତ ହୋଇ ଗଲେଣି । କାହିଁ କେତେଦୂର ସାତସମୁଦ୍ର ତେର ନଈ ପାରି ଅଯୋଧ୍ୟାର ଆକାଶରେ ମଧ୍ୟ ଆଜି ଏମିତି ଚନ୍ଦ୍ର ଉଠିଥିବ ।

ଯୁଦ୍ଧ କ୍ଷେତ୍ରରୁ ପ୍ରତ୍ୟାବୃତ୍ତ ହୋଇ ନିଜର କ୍ଳାନ୍ତ ଦେହକୁ କୁଶ ଶଯ୍ୟାରେ ଲେଟାଇ ଦେଇ ରାମଚନ୍ଦ୍ର ଅଯୋଧ୍ୟାର କଥା ହିଁ ଭାବୁଥିଲେ । ଦୁନିଆ ଆଖିରେ ସେ ସାର୍ବଭୌମ ନରପତି-ତ୍ରିଲୋକ ବିଜୟୀ ଲଙ୍କାପତି ରାବଣର ଉନ୍ମତ୍ତ, ଶିରକୁ ଭୂଇଁରେ ଲୋଟାଇ ସେ ନିଜ ପତ୍ନୀଙ୍କୁ ଉଦ୍ଧାର କରିବା ଦିନଠୁଁ ସାରା ସଂସାର ତାଙ୍କର ଜୟଗାନରେ ମୁଖର, ଅଥଚ ସେ ନିଜେ ଜାଣନ୍ତି, ଏଥିପାଇଁ ତାଙ୍କୁ କି ମୂଲ୍ୟ ଦେବାକୁ ପଡ଼ିଛି !

ବହୁ ତପସ୍ୟା ଫଳରେ କୁଆଡ଼େ ରାଜକୁଳରେ ଜନ୍ମ ନେବାର ସୌଭାଗ୍ୟ ମିଳେ । ପୁଣି ସୂର୍ଯ୍ୟପ୍ରଭବ-ବଂଶଜ ରଘୁକୁଳରେ ଜନ୍ମନେବା ପାଇଁ କେତେ ଜନ୍ମର ପୁଣ୍ୟଫଳ ଯେ ଲୋଡ଼ା ପଡ଼ିଥିବ, ଏକଥା ଭାବିହୁଏ ନାହିଁ । ଅଥଚ ତାଙ୍କର ଭାଗ୍ୟବିଧାତା କିଶୋର ବୟସରୁ ତାଙ୍କୁ ନେଇ

ଯେଉଁ ଖେଳ ଖେଳିବାକୁ ଆରମ୍ଭ କରିଛନ୍ତି, ଏଥିରେ ନିଜକୁ ସେ କିଭଳି ଭାଗ୍ୟବାନ ମନେ କରିବେ ?

ଧୂଳିଖେଳର ବୟସ କଟିନଥିଲା, ବିଶ୍ୱାମିତ୍ର ମହର୍ଷି ଆସି ଅସୁର ବିନାଶ ନିମନ୍ତେ ନେଇଗଲେ । ସଂଘର୍ଷମୟ ପଥରେ ସେଇ ଯେ ଯାତ୍ରା ଆରମ୍ଭ ହେଲା, ତା' ଆଜି ପର୍ଯ୍ୟନ୍ତ ଶେଷ ହୋଇନାହିଁ । ସୀତା ଲାଭ ନିମନ୍ତେ ସଂଘର୍ଷ । ବିନା କାରଣରେ ପରଶୁରାମଙ୍କ ସହିତ ସଂଘର୍ଷ । ପ୍ରତି ନିୟତ ସଂଘର୍ଷ । ଅଯୋଧ୍ୟାରେ ତ ସଂଘର୍ଷର ଚରମ ରୂପ ତାଙ୍କୁ ଦେଖିବାକୁ ପଡ଼ିଲା ।

ଯେଉଁ ପିତା ତାଙ୍କୁ ନିଜ ପ୍ରାଣଠାରୁ ଅଧିକ କରି ଦେଖୁଥିଲେ, ଶେଷରେ ସେ ହିଁ ହେଲେ ତାଙ୍କ ମୃତ୍ୟୁର ନିମିତ୍ତ ଭାଗୀ । ସେ ଯଦି ବନ ଗମନ ନିମନ୍ତେ ଏମିତି ଏକ ତରବରିଆ ନିଷ୍ପତ୍ତି ଗ୍ରହଣ ନକରି ମାତା କୈକେୟୀଙ୍କ ପ୍ରସ୍ତାବର ବିରୋଧ କରିଥାଆନ୍ତେ, ତେବେ ଦୁନିଆ ହୁଏତ ତାଙ୍କୁ ନିନ୍ଦା କରିଥାଆନ୍ତା, ମାତ୍ର ସେ ପିତୃହନ୍ତା ହୋଇ ନଥାନ୍ତେ ତ । ଅନ୍ତତଃ ଯକ୍ଷେ ବେଦନା ସହଣୀୟ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ, ଦଶରଥ ନିଶ୍ଚୟ ଅକାଳରେ ଝରିପଡ଼ି ନଥାନ୍ତେ ।

ପିତୃ ସତ୍ୟ ପାଳନ ନିମନ୍ତେ ତାଙ୍କର ସତ୍ୟନିଷ୍ଠତା ପାଇଁ ଆଜି ସାରା ସଂସାର ତାଙ୍କୁ ଧନ୍ୟ ଧନ୍ୟ କରୁଛି । ମାତ୍ର ସେ ନିଜେ ତ ଜାଣନ୍ତି, ପିତା ତାଙ୍କରି ପାଇଁ ହିଁ ମୃତ୍ୟୁବରଣ କରିଛନ୍ତି । ଏ ଦୁଃଖ ସେ ବଞ୍ଚିଥିବା ପର୍ଯ୍ୟନ୍ତ ଭୁଲିପାରିବେ କି ?

ଅରଣ୍ୟବାସର ସେଇ ସଂଘର୍ଷମୟ ଦିନଗୁଡ଼ିକ ସମ୍ପର୍କରେ ଯେତେ କମ୍ ଚିନ୍ତା କରିଯାଏ, ସେତେ ଭଲ । କାହିଁ ସମୁଦ୍ର ମଝିରେ ଲଙ୍କା ଦ୍ୱୀପ—କାହିଁ ପଞ୍ଚବଟୀ କୁଟୀରରେ ସୀତା । ଭାଗ୍ୟର ନିଷ୍ଠୁରତାରୁ ସୁନନ୍ଦମା ଅପହୃତା ହେଲେ । ଚାଲିଲା ସଂଘର୍ଷ ଚିରକାଳ ।

ନିର୍ଦ୍ଦୋଷ ବାଳିର ମୃତ୍ୟୁକାଳୀନ ଅଭିଯୋଗ କ'ଣ ମିଛ ଥିଲା ନା ତାକୁ କେବେ ଭୁଲିହେବ ! ପିତୃହରା ତାରା ଆଉ ପିତୃହରା ଅଙ୍ଗଦର ସେଇ ଘୃଣାପୂର୍ଣ୍ଣ ଦୃଷ୍ଟି ସତେ ଯେମିତି ଆଜିପର୍ଯ୍ୟନ୍ତ ତାଙ୍କୁ ଗୋଡ଼ାଉଛି ।

ବାହାରେ ଯାହା କହିଲେ ମଧ୍ୟ ସେ ନିଜ ପାଖରେ ଅସ୍ୱୀକାର କରିବେ କେମିତି ଯେ, ନିଜର ସ୍ୱାର୍ଥ ନିମନ୍ତେ ହିଁ ସେ ନିର୍ଦ୍ଦୋଷ ବାଳିକୁ ହତ୍ୟା କରିଛନ୍ତି । ରାବଣକୁ କାଖରେ ଧରି ସନ୍ଧ୍ୟା ତର୍ପଣ କରିଥିବା କମ୍ବା ନିଜ ପୁଅ ଅଙ୍ଗଦକୁ ଖେଳଣା ରୂପରେ ସେଇ ଦଶଶିରକୁ ଅର୍ପଣ କରିଥିବା... ବାଳି ଇଚ୍ଛା କରିଥିଲେ, ଆଖି ପିଛୁଳାକେ ରାବଣକୁ ତାଙ୍କ ପାଦତଳେ ପକାଇ ଥାଆନ୍ତା । ମାତ୍ର ସେ ତ ଜାଣନ୍ତି; ସେଥିରେ ତାଙ୍କର ଯଶ ଆଉ କୀର୍ତ୍ତିର ପ୍ରଚାର ହୋଇ ନଥାନ୍ତା । ସେଇଥି ପାଇଁ ତ ଏ ରାଜନୀତି—ଶାସ୍ତ୍ର କହୁଛି ଯୁଦ୍ଧରେ କପଟାଚାର ବୋଲି କିଛି ନାହିଁ । ଯୋଦ୍ଧାଠାରୁ ଯାହା ଅପେକ୍ଷିତ, ତା'ପାଇଁ ତାହାହିଁ ହେଉଛି ସବୁଠାରୁ ବଡ଼ ସତ୍ୟ—ଏକମାତ୍ର କର୍ତ୍ତବ୍ୟ । ହୋଇପାରେ ତାହା ପାପ ଅବା ପୁଣ୍ୟ । ଦଶଗ୍ରୀବର ପାପର ଘଡ଼ା ପୂର୍ଣ୍ଣ ହୋଇଥିଲା । ତା'ର ପାପରେ ସୁବର୍ଣ୍ଣ ଲଙ୍କା ଶ୍ମଶାନ ହେଲା । ସେ କେବଳ ନିମିତ୍ତ ଭାଗୀ ହୋଇ ରହିଲେ ।

ସୀତାଙ୍କୁ ଗ୍ରହଣ କରିବା ନିମନ୍ତେ ଏଥର ତାଙ୍କ ମନରେ ଦ୍ୱିଧା ଦେଖା ଦେଲା କି ? ସେ କ'ଣ ତେବେ ସୀତାଙ୍କୁ ସନ୍ଦେହ କରୁଥିଲେ ? ସୀତା ଯେ ପ୍ରତ୍ୟୁଷର ଶିଶିରଭିଜା ଯୁଈ ଫୁଲ ଭଳି ଶୁଭ୍ର ଆଉ କଳଙ୍କହୀନ ଏ କଥା ତାଙ୍କ ଅପେକ୍ଷା ଅଧିକ କିଏ ଜାଣିଥିଲା ? ମାତ୍ର ଦଶରଥ-ପୁତ୍ର ରାମଙ୍କର ସତ୍ତା ତ ଦୁଇଭାଗରେ ବିଭକ୍ତ ହୋଇ ସାରିଥିଲା । ବ୍ୟକ୍ତି ରାମ ସୀତାଙ୍କର ସ୍ୱାମୀ—ତାଙ୍କର ନିରାପତ୍ତା ଦାୟିତ୍ୱର ଅଧିକାରୀ । ନିଜ ଜୀବନକୁ ବାଜି ଲଗାଇ ତାହା ସେ କରିବେ, କରୁଛନ୍ତି ମଧ୍ୟ । ମାତ୍ର ଅଯୋଧ୍ୟାପତି ରାମଚନ୍ଦ୍ର ପ୍ରଜାମାନଙ୍କର ପ୍ରତିଭୂ, ସେମାନଙ୍କର ରୁଚି ଅନୁସାରେ ତାଙ୍କୁ ଚଳିବାକୁ ପଡ଼ିବ । ରାକ୍ଷସ ଗୃହବାସର ଅପବାଦରେ ସୀତାଙ୍କ ପ୍ରତି ସେମାନେ ଯଦି ସାମାନ୍ୟ ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି, ତେବେ ସେ କ୍ଷେତ୍ରରେ ନିଜ ଚରିତ୍ରତାର ପ୍ରମାଣ ସୀତାଙ୍କୁ ନିଜେ ଦେବାକୁ ପଡ଼ିବ । ବ୍ୟକ୍ତି ରାମଙ୍କର ହୃଦୟ ଫାଟିପିବ ମାତ୍ର ପାଟି ଫିଟିବ ନାହିଁ । ରାଜା ରାମ ନୀରବ ରହିବାକୁ ବାଧ୍ୟ ।

ତେଣୁ ଅଗ୍ନି ପରୀକ୍ଷା । ସେ ଦିନ ସାରା ସଂସାର ଛି-ଛି କରି ଉଠିଥିଲା । ରାମଚନ୍ଦ୍ର ନିଜେ କୋଉ ସୀତାଙ୍କ ଆଡ଼କୁ ଅନାଇ ପାରିଥିଲେ ? ବ୍ୟକ୍ତିଗତ ନିନ୍ଦା ଆଉ ସମାଲୋଚନା ଭିତରେ ତାଙ୍କୁ ତଥାପି ଆତ୍ମସନ୍ତୋଷ

ମିଳିଥିଲା—ଏଥର ସୀତାଙ୍କ ଶୁଚିତା ସମ୍ପର୍କରେ କେହି ପଦେହେଲେ ଉଚ୍ଚାରଣ କରି ପାରିବେ ନାହିଁ ।

ତା'ପରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ । ଅଭିଷେକ ସମାରୋହ । ସ୍ୱପ୍ନଭଳି କଟି ଯାଇଥିଲା କେଇଟି ଦିନ । ସମ୍ବାଦ ତ ମଝିରେ ମଝିରେ ମିଳୁଥିଲା । ଲଙ୍କାର ସେଇ ସହସ୍ରଶିର ରାବଣ ବଳଦର୍ପରେ ସ୍ୱର୍ଗମର୍ତ୍ତ୍ୟ ପାତାଳରେ ହାହାକାର ସୃଷ୍ଟି କରିଛି । ସ୍ୱର୍ଗର ଦେବତାମାନେ ମଧ୍ୟ ତାର ଅତ୍ୟାଚାରରେ ଖାହି ଖାହି ଡାକ ଛାଡ଼ୁଛନ୍ତି । ପୃଥିବୀ ଦୁଃଖୀ ହୋଇ ଯାଇଛି ପୁନର୍ବାର ଏବଂ ଏଇ କ୍ଷତ ତାଙ୍କୁହିଁ ଆରୋଗ୍ୟ କରିବାକୁ ପଡ଼ିବ ।

ମୁକୁଟମଣ୍ଡିତ ରାଜଶିରର ଲଲାଟରେ ନିରବଚ୍ଛିନ୍ନ ଶାନ୍ତି କାହିଁ ? ପୁଣି ସେଇ ଯୁଦ୍ଧକ୍ଷେତ୍ରର ବିଭୀଷିକା । ଅସ୍ତ୍ରଶସ୍ତ୍ରର ଝଙ୍କାର । ଆହତର ଆର୍ତ୍ତନାଦ । ମୃତ୍ୟୁର ଯନ୍ତ୍ରଣା । ଶିବା ଶକୁନିର ଉଲ୍ଲାସ । ଆହା, ପୃଥିବୀ ପୃଷ୍ଠରୁ ଯୁଦ୍ଧର ବିଭୀଷିକାକୁ କେହି ନିଜ ହାତରେ ଲିଭାଇ ଦିଅନ୍ତା ନାହିଁ ? ରକ୍ତସ୍ରୋତରେ ଏ ସୁନ୍ଦର ସୃଷ୍ଟିକୁ ଭସାଇ କ'ଣ ମିଳେ ?

ମିଳେ କେବଳ ଅହଙ୍କାରର ପରିତୃପ୍ତି । ଯୁଦ୍ଧ ନିବୃତ୍ତି ରାମଚନ୍ଦ୍ର ଶଯ୍ୟାରେ ଶୋଇରହି ଚିନ୍ତା କରୁଥିଲେ । ଯେତେପ୍ରକାର କୌଶଳ ତାଙ୍କୁ ଜଣାଥିଲା, ତାହା ସେ ପ୍ରୟୋଗ କରି ସାରିଛନ୍ତି । ତଥାପି ଦୈତ୍ୟ ଦୁର୍ଜେୟ ରହିଛି ।

ହନୁମାନର ସାନ୍ତ୍ୱନା ତାଙ୍କୁ ସ୍ୱସ୍ତି ଦେଇପାରି ନାହିଁ । ନିଜ ଉପରୁ ତାଙ୍କର ଭରସା ତୁଟି ତୁଟି ଆସୁଛି । ଦଶଶିରକୁ ସଂହାର କରିବାରେ ପରେ ତାଙ୍କ ମନରେ ଯେଉଁ ଅହଙ୍କାର ସୃଷ୍ଟି ହୋଇଥିଲା, ତାହା ଏଥର ବାଷ୍ପଭଳି ମିଳାଇ ଯିବାକୁ ଆରମ୍ଭ କରିଛି । ଆତ୍ମଗ୍ଲାନିରେ ତାଙ୍କର ମୁଣ୍ଡ ନଇଁ ଯାଇଛି ।

ଭଗବାନ୍ ଜାଣନ୍ତି ଏ ଭଳି ଏକ ଯୁଦ୍ଧରେ ଅନାହୂତ ଜଡ଼ିତହୋଇ ପଡ଼ିବା ତାଙ୍କର କାମ୍ୟ ନଥିଲା । ଯୁଦ୍ଧ ବିଗ୍ରହରେ କଟିଯାଇଥିବା ତାଙ୍କର ପୂର୍ବାହ୍ଣର ଉତ୍ତର ପର୍ବକୁ ତେଣୁ ସେ ଯଥା ସମ୍ଭବ ନିରୁପଦ୍ରବ ନିର୍ଦ୍ୱନ୍ଦ୍ୱ ରୂପରେ କଟାଇବାକୁ ଚାହିଁଥିଲେ ।

ମାତ୍ର କାହିଁ ଶାନ୍ତି ? ଶାନ୍ତିର ପଛରେ ଗୋଡ଼ାଇଲେ ହୁଏତ ମରୀଚିକା ପଛରେ ଗୋଡ଼ାଇବା ଭଳି ଅସଫଳ ହିଁ ହେବାକୁ ପଡ଼େ । ସେଥିରେ ଶୋଷ ବଢ଼େ ପିନା ପାଣି ମିଳିବ କୁଆଡ଼ୁ ?

ଦେବତାମାନେ ହିଁ ତାଙ୍କର ଏ ଦୁର୍ଦ୍ଦଶା ପାଇଁ ଦାୟୀ । ଦୈତ୍ୟର ଉତ୍ପାତରେ ସେମାନେ ଅସ୍ଥିର ହୋଇ ପଡ଼ିଥିଲେ । ଏହାକୁ ସମ୍ଭାଳିବା ସେମାନଙ୍କର ଶକ୍ତିର ବହିର୍ଭୂତ ଥିଲା ।

କେମିତି ବା ସେ ସେମାନଙ୍କୁ ନାସ୍ତିକର ଖାଲି ହାତରେ ଫେରାଇ ଦେଇଥାଆନ୍ତେ ? ଯୁଗେ ଯୁଗେ ଦେବକୁଳ ଯେତେବେଳେ ଲାଞ୍ଛିତ ହୋଇଛି, ସେତେବେଳେ ଦେବତାମାନେ ରଘୁକୁଳର ଶରଣାପନ୍ନ ହୋଇଛନ୍ତି । ରଘୁବଂଶର ମହାନ ପରମ୍ପରାର ସେ ଜଣେ ଅନୁଗତ ଶିଷ୍ୟ । ସେହି ମହାନ୍ ପରମ୍ପରାର ଆବରଣ ଯେପର୍ଯ୍ୟନ୍ତ ତାଙ୍କୁ ଆଚ୍ଛାଦିତ କରି ରଖିଛି, ସେପର୍ଯ୍ୟନ୍ତ ସେ ଜୀବନ ବିନିମୟରେ ସୁଦ୍ଧା ତାହାର ମର୍ଯ୍ୟାଦା ରକ୍ଷା କରିବେ ।

ଯୁଦ୍ଧର ଶିକ୍ଷା ତାଙ୍କର ଶ୍ରେୟ ନୁହେଁ । ଉତ୍ତେଜନା ଏବଂ ଉନ୍ମାଦର ଘନଘଟା ମଧ୍ୟରେ ଅଶାନ୍ତ ଚିତ୍ତ ତାଙ୍କର ବୁଦାଏ ଶାନ୍ତିବାରି ନିମନ୍ତେ କେବଳ ତୃଷାର୍ତ୍ତ ହୋଇ ରହିଛି, ତାହା କିଏ ବୁଝିବ ? ଯେଉଁ ବିଧାତା କ୍ଷତ୍ରିୟର ଲଲାଟପଟରେ ଯୁଦ୍ଧ ହିଁ ଗ୍ରହର ରକ୍ତାକ୍ଷର ଭବିତବ୍ୟ ଲେଖିଦେଇ, ତା' ଚରଣରେ କୋଟି କୋଟି ନମସ୍କାର । ତାଙ୍କ ପାଇଁ ଜୀବନରୁ ମୁକ୍ତି ହିଁ ହେଉଛି ଯୁଦ୍ଧରୁ ମୁକ୍ତି ।

ଜନ୍ମ ଲଗ୍ନରୁ ତାଙ୍କୁ ଏମିତି ଶିକ୍ଷା ଦିଆଯାଇଛି । ଯୁଦ୍ଧପାଇଁ ତାଙ୍କର ଚିନ୍ତା ନାହିଁ । ଜୀବନ ତ ତାଙ୍କପାଇଁ ଆଉ ବିଳାସର କ୍ଷେତ୍ର ନୁହେଁ, ବରଂ ସଂଗ୍ରାମର ଏକ ପୌରୁଷବ୍ୟଞ୍ଜକ କ୍ଷେତ୍ର । ଅସ୍ତ୍ର ହାତରେ ଯୁଦ୍ଧକ୍ଷେତ୍ରରେ ମୃତ୍ୟୁ କୋଳରେ ଢଳିପଡ଼ିବା ଅପେକ୍ଷା କ୍ଷତ୍ରିୟର ଆଉ ବାଞ୍ଛିତ କ'ଣ ଥାଇପାରେ ?

ଚୌଦ ବର୍ଷର ବନବାସରେ ଜୀବନ ଆଉ ମୃତ୍ୟୁର ସଂଘାତ ସୂତ୍ରରେ ଦୋଳାୟମାନ ଅସହାୟ ନିଃସଙ୍ଗ ଅବସ୍ଥା ଅପେକ୍ଷା ବର୍ତ୍ତମାନ ତ

ତାଙ୍କର ସ୍ଥିତି ଅଧିକ ସୁଦୃଢ଼ । ଦୁଷ୍ଟ ଲଙ୍କେଶ୍ୱରକୁ ମାରିବା ନିମନ୍ତେ ଯୁଦ୍ଧ ଯାତ୍ରାରେ ବାହାରିବା ନିମନ୍ତେ ସେ ସର୍ବାଂଶରେ ପ୍ରସ୍ତୁତ ।

ତାଙ୍କୁ ଚିନ୍ତାରେ ପକାଇଛି ବୈଦେହୀଙ୍କର ଆକ୍ଷେପମୂଳକ ଅଭିଯୋଗ । ଅଭିଯୋଗ ନୁହେଁ ତ—ଏହା ବରଂ ପ୍ରୀତିକୃତ ଉଲ୍ଲଙ୍ଘ-ଅହଙ୍କାରର ଉଦ୍‌ଗୀରଣ । ସେଦିନ ତାଙ୍କର ନୟନ ଏବଂ କଣ୍ଠରୁ ଯୁଗପତ୍ ଯେଉଁ ସୁତୀକ୍ଷ୍ଣ ଶାୟକମାନ ଛୁଟି ଚାଲିଥିଲ, ରାମଚନ୍ଦ୍ରଙ୍କର ତହିଁରେ କି ଧରଣର ପ୍ରତିକ୍ରିୟା ହେବ, ଜାନକୀଙ୍କର ସେଥିପ୍ରତି ତିଳେହେଲେ ଦୃକ୍‌ପାତ ନଥିଲା ।

ଲଙ୍କା ଯାତ୍ରା କରିବା ପୂର୍ବରୁ ରାମଚନ୍ଦ୍ର ଜାନକୀଙ୍କଠାରୁ ବିଦାୟ ନେବା ନିମନ୍ତେ ରାଣୀହଂସ ପୁରକୁ ଯାଇଥିଲେ । ସୀତା ପୂର୍ବଭଳି ଏଥର ମଧ୍ୟ ରାମଙ୍କ ସହିତ ଲଙ୍କା ଯାତ୍ରା ନିମନ୍ତେ ଜିଦ୍ ଧରି ବସିଲେ ।

ରାମଚନ୍ଦ୍ର ପ୍ରଥମେ ଅନୁନୟ କଲେ । ତା'ପରେ ଭୟ ଦେଖାଇଲେ ଏବଂ ତହିଁରେ ଅକୃତକାର୍ଯ୍ୟ ହୋଇ ଧମକ ଦେବାକୁ ଆରମ୍ଭ କଲେ ।

କିଛିରେ କିଛି ହେଲା ନାହିଁ । ରାମଚନ୍ଦ୍ର ବାଧ୍ୟହୋଇ କହିଲେ— ନାରୀ ମାତ୍ରେ ହିଁ ଅପରିଣାମଦର୍ଶୀ ଏବଂ ଦୁର୍ବଳା । ଏତେଶୀଘ୍ର ବନବାସର ଦୁର୍ଭୋଗ ଭୁଲିଯିବା ନ ହେଲେ ସମ୍ଭବ ହୁଅନ୍ତା କିପରି ?

ସୀତା ଏକ ବିଚିତ୍ର ଦୃଷ୍ଟିରେ ରାମଙ୍କ ଆଡ଼େ ଅନାଇଲେ । ତାଙ୍କ ଆଖିରେ ଅପରିଚିତର ବିସ୍ମୟ ଫୁଟିଉଠିଲା । ଏ କିଏ ତାଙ୍କ ଆଗରେ ବସିଛନ୍ତି ? ଏ କ'ଣ ସେଇ ରଘୁକୁଳତିଳକ, ବନବାସର ଅସହଣୀୟ ଦୁଃଖ ଯାହାଙ୍କ ସାନ୍ନିଧ୍ୟରେ ପ୍ରୀତିସ୍ନିଗ୍ଧ ହୋଇ ଉଠିଥିଲା ? ଏ କ'ଣ ସେଇ ତାଙ୍କ ପାଦରେ କଣ୍ଟାଟିଏ ଫୁଟିଲେ ଯିଏ ହୃଦୟରେ ଶୂଳବିଦ୍ଧକୁ ବେଦନା ଅନୁଭବ କରୁଥିଲେ ? ଏ କ'ଣ ସେଇ ମର୍ଯ୍ୟାଦା ପୁରୁଷୋତ୍ତମ ପତ୍ନୀର ମର୍ଯ୍ୟାଦା ରକ୍ଷା କରିବା ନିମନ୍ତେ ଯିଏ ନିଜ ଜୀବନକୁ ବାଜି ଲଗାଇ ଦେଇଥିଲେ ?

ଉଚ୍ଛୁଳିତ ଆବେଗକୁ ଧୈର୍ଯ୍ୟର ରଜ୍ଜୁରେ ସମ୍ବରଣ କରି ଜନକ ନନ୍ଦିନୀ କହିବା ନିମନ୍ତେ ପାଟି ଖୋଲିଲେ । ତାଙ୍କର ସ୍ଫୁରିତ ଓଷ୍ଠାଧର

ସ୍ଫୀତ ନାସାପୁଟ ଏବଂ ଦ୍ରୁତବକ୍ଷ ସ୍ପନ୍ଦନରୁ ତାଙ୍କର ମାନସିକ ଅବସ୍ଥା ଜଣାପଡ଼ୁଥିଲା । ସୀତା କହିଲେ ରଘୁନନ୍ଦନ, ବନବାସରେ ମୋ ନିମନ୍ତେ ତମକୁ ବହୁତ ଦୁଃଖ ଭୋଗିବାକୁ ପଡ଼ିଛି । କିନ୍ତୁ ମୋର ଯନ୍ତ୍ରଣା ତ କିଛି କମ୍ ନୁହେଁ । ଏତେ ଦୁର୍ଭୋଗ ଭିତରେ ବି ମୋର ସବୁଠାରୁ ବଡ଼ ସାନ୍ତ୍ୱନା ଥିଲା, ଦୁଃଖର ସାଗରରେ ଆମେ ପାଖାପାଖି ପହଁରି ଚାଲିଛେ । ଅଯୋଧ୍ୟାର ରାଜସିଂହାସନରେ ତମ ବାମପାର୍ଶ୍ୱରେ ଏକ ସୁସଜ୍ଜିତା ପ୍ରତିମା ଭଳି ବସିବା ପାଇଁ ତ ମୁଁ ତମକୁ ବିବାହ କରି ନଥିଲି । ସ୍ୱାମୀର ଯଶକୀର୍ତ୍ତିର ଉତ୍ତରୋତ୍ତର ପ୍ରସାର ଦେଖିବା ବି ତ' ସ୍ତ୍ରୀର କାମ ।

ରାମ ଚକିତ ହେଲେ । ସୀତା ଏ କ'ଣ କହୁଛନ୍ତି ? ରାବଣ ଗୃହରେ ବନ୍ଦିନୀ ହୋଇ ସୀତା କେବେ ରାମଙ୍କର ଯଶକୀର୍ତ୍ତିର ପ୍ରସାର ନିମନ୍ତେ ଉଦ୍ୟମ କରୁଥିଲେ ? ଏ କ'ଣ ସତ୍ୟ ନା ପରିହାସ ?

ରାମଙ୍କର ମନ ଭିତରକୁ ଅନ୍ତର୍ଭେଦୀ ଦୃଷ୍ଟିରେ ଅନାଇ ସୀତା ପୁଣି କହିଲେ—ପରିହାସ ନୁହେଁ, ବିଶ୍ୱାସ । ରାବଣର ନିଧନରେ ସୀତାର ଭୂମିକା କଥା ତମର ଅଭିଜ୍ଞ ମନରେ କପରି ଧରାପଡ଼ିଲା ନାହିଁ । ତାହାହିଁ ତ ଆଶ୍ଚର୍ଯ୍ୟ !

ଆଶ୍ଚର୍ଯ୍ୟ ତ ନୁହେଁ, ପରମାଶ୍ଚର୍ଯ୍ୟ । ଅଶୋକ ବନରେ ରାକ୍ଷସୀ ପରିବୃତ୍ତା ସୀତାଙ୍କର ଜୀବନ ଯେତେବେଳେ ସାମାନ୍ୟ ସୂକ୍ଷ୍ମ ସୂତ୍ର ଖଣ୍ଡକରେ ଝୁଲି ରହିଥିଲା, ସେତେବେଳେ ସେ ପୁଣି ତ୍ରିପୁରବିଜୟୀ ରାବଣ ନିଧନରେ ସକ୍ରିୟ ଭୂମିକା ଗ୍ରହଣ କରିଛନ୍ତି ।

ସୀତା ପୁଣି କହିଲେ—ତମେ ପୁରୁଷ । ହାତରେ ଅସ୍ତ୍ର ଖଣ୍ଡେ ଧରି ଭାବ ବସ, ସୃଷ୍ଟିରେ ତମେ ହିଁ ହେଉଛ ଏକମାତ୍ର ଶୂରବୀର । ଶିରୀଷ କୋମଳ ନାରୀ ଅନ୍ତଃପୁରର ଶୋଭା ସିନା । ଯୁଦ୍ଧ କ୍ଷେତ୍ରରେ ତମର ଅହଙ୍କାର, ଅନ୍ୟକୁ ଅତିକ୍ରମ କରିଯିବା ପାଇଁ ତମର ପ୍ରାଣାନ୍ତ ଉଦ୍ୟମ, ଶକ୍ତିଶାଳୀ, କ୍ଷମତାଶାଳୀ ହେବା ପାଇଁ ତମ ଅଦମ୍ୟ ଆକାଙ୍କ୍ଷା, ଏହାର କୌଣସି ତୁଳନା ନାହିଁ । ପ୍ରଜ୍ଜ୍ୱଳିତ ଅଗ୍ନି ଭଳି ତମର ସେଇ ଲାଳସା, ପ୍ରମତ୍ତ ତେଜଭଳି ତମର କାମନା—ଥରେ ତା'ର ଖୋଳ ଭିତରୁ ବାହାରି ଆସି ଦୁନିଆକୁ ଦେଖ । ତାହା ହେଲେ ତମେ ସ୍ୱୟଂ ବୁଝିପାରିବ ଯେ,

ଯେଉଁ ନାରୀକୁ ତମେ ଦୁର୍ବଳା ବୋଲି ଏତେଦିନ ଭାବିଆସିଛ, ପ୍ରକୃତରେ ସେ କେଉଁ କମ୍ ଶକ୍ତି ଧରେ ନାହିଁ । ପୃଥିବୀର କେଉଁ ବସ୍ତୁର ନିଜସ୍ୱ ଶକ୍ତି ନାହିଁ ?

ରାମଚନ୍ଦ୍ର ଅଧୈର୍ଯ୍ୟ ହୋଇ ପଡ଼ିଥିଲେ । ସୀତାଙ୍କର ଏଭଳି ରୂପ ସହିତ ସେ ପୂର୍ବରୁ ପରିଚିତ ନଥିଲେ । ନାରୀର ବୁଦ୍ଧିବୃତ୍ତି ସମ୍ପର୍କରେ ତାଙ୍କର ଶ୍ରଦ୍ଧା ରହିଛି ସତ୍ୟ, ମାତ୍ର ସୀତା କେଉଁ ଯୁକ୍ତିରେ ନିଜକୁ ରାମଙ୍କର ସମକକ୍ଷ ବୋଲି ଦାବି କରିବେ ? ଏକଥା ଯିଏ ଶୁଣିବ···ଜଣେ ସମର୍ପିତ ସ୍ୱାମୀ ହେବାର ଅର୍ଥ ଏହା ତ ନୁହେଁ ଯେ ପତ୍ନୀର ଅହଙ୍କାରର ବୋଝ ତଳେ ଲୁଚିହୋଇ ରହିବା । ଅଗତ୍ୟା ସେ କହିଲେ —ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ତମେ କ'ଣ ସେଇ···

ଅକମ୍ପିତ ସ୍ଥିର କଣ୍ଠରେ ସୀତା ଉତ୍ତର ଦେଲେ ତମର ଅହଙ୍କାରୀ ଦେହ, ମନ ଆଉ ଆତ୍ମାର ନିର୍ମୋକ ତ୍ୟାଗକରି ଥରେ ମୋ' ଆଡ଼କୁ ଅନାଅ । ବୁଝିପାରିବ ମୁଁ ପ୍ରକୃତରେ କ'ଣ । ତମର ଅସ୍ତ୍ରଶସ୍ତ୍ର ରାବଣ ବଧର ନିମିତ୍ତ ଭାଗୀ ହୋଇ ପାରେ । ମାତ୍ର ଏଥିରେ ସୀତାର ଭୂମିକାକୁ ମଧ୍ୟ ହେୟ ଦୃଷ୍ଟିରେ ଦେଖାଯିବା ଉଚିତ୍ ନୁହେଁ । ରାମର କ୍ଷାତ୍ର ତେଜ ସହିତ ସୀତାର ଅଦମନୀୟ ଶକ୍ତିର ସମନ୍ୱୟରେ ହିଁ ରାବଣ ନିଧନ ।

କେବଳ ରାମଚନ୍ଦ୍ର କାହିଁକି, କୌଣସି ପୁରୁଷ ଏଭଳି ପ୍ରଳାପରେ ବିଶ୍ୱାସ କରନ୍ତା ନାହିଁ । ନାରୀ ସଖୀ, ଲଳିତକଳା ବିଧିରେ ଧର୍ମସଙ୍ଗିନୀ ହୋଇ ପାରେ, ମନ୍ତ୍ରୀ ହୋଇ ପାରେ—ଏତିକି ପର୍ଯ୍ୟନ୍ତ ସେ ନାରୀଙ୍କୁ ସ୍ୱୀକୃତି ଦେଇ ପାରନ୍ତି । ଶତ୍ରୁ ଦମନରେ, ରାଜ୍ୟ ଜୟରେ ଦିଗ୍‌ବିଜୟରେ ନାରୀର ଅବଦାନ ଶୂନ୍ୟ ସିନା । ନାରୀର ସ୍ରଷ୍ଟା ତ ତାକୁ ସେ ଦୃଷ୍ଟିରୁ ଅପାରଗ କରି ଗଢ଼ିଛନ୍ତି । ରାମଙ୍କୁ ଆକ୍ଷେପ କରି ଲାଭ କ'ଣ ?

ଦୀର୍ଘଦିନର ସଙ୍ଗୁପ୍ତ ବେଦନା ଏଇ ମୁହୂର୍ତ୍ତରେ ଯେମିତି ପ୍ରବଳ ବେଗରେ ବାହାରି ଆସୁଥିଲା । ସୀତା କହୁଥିଲେ—ତମେ ପୁରୁଷର ଏକଦେଶଦର୍ଶୀ ଦୃଷ୍ଟି ନେଇ କେମିତି ବୁଝିବ, ଏଇ ସୁନାପଞ୍ଜୁରି ଭିତରେ ବନ୍ଦିନୀ ସୀତା ପୃଥିବୀଟାକୁ ଦେଖି ଦେଖି କେମିତି ହାହୁତାଶରେ

ସମସ୍ତ କହୁଥାନ୍ତି—ସୀତା ସତେ ଯେମିତି ଅଳକାପୁରୀର ରାଜଜେମା ଅଥଚ ଦେଖ—ଏ ବିରାଟ ମେଘ ରାଇଜରେ ତା'ର ନିଜର ବୋଲି କେହି ନାହିଁ ।

ପ୍ରାଚୁର୍ଯ୍ୟ ଜୀବନ ପାଇଁ ଏକମାତ୍ର ସୁଖର ଉତ୍ସ ନୁହେଁ ରଘୁବୀର । ତମେ ତ ଏକଥା ନିଶ୍ଚୟ ସ୍ୱୀକାର କରିବ ଯେ, ଜୀବନର ସାର୍ଥକତା ସ୍ୱୀକୃତିରେ । ଟିକିଏ ସ୍ୱୀକୃତି ମଣିଷକୁ ଯେଉଁ ଆନନ୍ଦ ଦିଏ, କୁବେର-ପୁରୀର ଐଶ୍ୱର୍ଯ୍ୟ ତା' ପାଖରେ କେତେ ତୁଚ୍ଛ । ନାରୀବି ତ ମଣିଷ । ପୁରୁଷ ଶାସିତ ସମାଜରେ ମୁଣ୍ଡଟେକି ବାହାର ଦୁନିଆକୁ ଦେଖିବା, ତା' ପାଇଁ ଦୁଃସାହସ ହୋଇ ପାରେ । ମାତ୍ର ଅନ୍ୟାୟ ତ ନୁହେଁ ।

ରାମଚନ୍ଦ୍ର ବୁଝିଲେ, କାରଣ ଯାହାହେଉ ନା କାହିଁକି ବୈଦେହୀ ଆଜ ଉତ୍ତେଜିତ ହୋଇଛନ୍ତି । ନଚେତ୍ ତାଙ୍କ ଭଳି ଜଣେ ମିତ୍‌ବାକ୍ ନାରୀ ମୁହଁରୁ ଏ ଅପ୍ରାସଙ୍ଗିକ କଥା ବାହାରନ୍ତା ନାହିଁ । ତେଣୁ ସେ ଚୁପ୍‌ଚାପ୍ ଉଠି ଠିଆହେଲେ । ଏହା ବିଦାୟ ନେବାର ପୂର୍ବ ସଙ୍କେତ ।

ଭୂମିନନ୍ଦିନୀ ମଧ୍ୟ ଆସନ ତ୍ୟାଗ କଲେ । ରାମଚନ୍ଦ୍ରଙ୍କ ଆଡ଼େ ଅନାଇ କହିଲେ—ଏଇ ମୁହୂର୍ତ୍ତରେ ତମେ ମୋ କଥା ବିଶ୍ୱାସ କଲ-ନାହିଁ । ତମେ ମୋ'ତେ ଭାବିଲେ ମଧ୍ୟ ମୁଁ ତମ ସହିତ ବିଲଙ୍କା ଯାଉନାହିଁ । ମାତ୍ର ମୁଁ ଜାଣେ, ଯେପର୍ଯ୍ୟନ୍ତ ଜନକନନ୍ଦିନୀ ସୀତା ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ନ ହୋଇଛି, ସେ ପର୍ଯ୍ୟନ୍ତ ସହସ୍ର ଶିର ରାବଣର ମୃତ୍ୟୁ ନାହିଁ । ମୁଁ ତମର ନିମନ୍ତ୍ରଣକୁ ଅପେକ୍ଷା କରିବି । ତମେ ଏଥର ଆସିପାର ।

ରାମଚନ୍ଦ୍ର ବାହାରି ଆସିଥିଲେ । ଆଜ ସେସବୁ ତାଙ୍କର ଗୋଟିକ ପରେ ଗୋଟିଏ ମନେ ପଡ଼ିଯାଉଛି, ସହସ୍ରଶିର ରାବଣ ହାରି ବାରମ୍ବାର ପର୍ଯ୍ୟୁଦସ୍ତ ହେଲା ପରେ ।

ଦେବତାମାନଙ୍କ ନିକଟରେ ସେ ଇତିମଧ୍ୟରେ ନିଜର ଅସହାୟତା ପ୍ରକାଶ କରିସାରିଛନ୍ତି । ମନେ ପଡୁଛି ଭୂକନ୍ୟାଙ୍କର ଅଭିମାନଭରା ଖେଦୋକ୍ତି । ମନେରଖିବ ରଘୁବୀର, ରାଜରାଜେଶ୍ୱରୀ ହୋଇ ମଧ୍ୟ ଆଜ ସୀତା ଠାରୁ ଦରିଦ୍ର କେହି ନାହିଁ । ଖାଲି ସୀତା କାହିଁକି, ଆଜ ସମଗ୍ର

ନାରୀ ଜାତିଠାରୁ ଦରିଦ୍ର ହୋଇପଡ଼ିଛି । ଆଜ ଯିଏ ଦରିଦ୍ର ତା'ର ପୁଣି ଗୋଟାଏ ନିର୍ବାଚନ୍ତ୍ର କ'ଣ ? ଘରର ବାହାରର ସମସ୍ତ ଆଘାତ ଜାଣ ତାହାର ପ୍ରାପ୍ୟ । ଅତ୍ୟାଗୃହିତ ହେବା ହେଉଛି ତାହାର ଲଲାଟ ଲିଖନ । ଆଜ ଏ ଆଘାତ ତାକୁ କିଏ ଦେଇଛି ଜାଣନ୍ତି ? ତା'ର ପ୍ରିୟତମ ପୁରୁଷ !! ହାଃହ...

ସକଳ ଐଶ୍ୱର୍ଯ୍ୟ ମଧ୍ୟରେ ଥାଇ ସୀତା ଆଜି ସର୍ବହରା । ଦାରିଦ୍ର୍ୟର ବେଦନା ହେଉଛି ସୀତାଙ୍କ ପାଇଁ ବିଳାସ । ବଡ଼ ଆଶ୍ଚର୍ଯ୍ୟର କଥା, ଦେବତାମାନେ ଯୋଡ଼ହସ୍ତ ହୋଇ ତାଙ୍କୁ ଜାନକୀଙ୍କର ସାହାଯ୍ୟ ପ୍ରାର୍ଥନା ନିମନ୍ତେ ନିବେଦନ କରିଛନ୍ତି । ସୀତା ଯୁଦ୍ଧ କ୍ଷେତ୍ରକୁ ନ ଆସିଲେ କୁମ୍ଭାଣ୍ଡ ଅସୁରର ବିନାଶ ହେବନାହିଁ । ଦେବତାଙ୍କର କାର୍ଯ୍ୟସାଧନ ନିମନ୍ତେ ସ୍ୱୟଂ ଲକ୍ଷ୍ମୀଠାକୁରାଣୀ ସୀତା ରୂପରେ ଜନ୍ମ ନେଇଛନ୍ତି । ରାମ ସେ ନିଜେ ବିଷ୍ଣୁ-ଅଂଶୀ । ଏଥିକୁ ବିଷ୍ଣୁ ଆଜ ଲକ୍ଷ୍ମୀଙ୍କର ସମ୍ମିଳିତ ଶକ୍ତି ଦୈତ୍ୟବଧ ନିମନ୍ତେ ସକ୍ରିୟ ନହେଲେ ଦେବକୁଳ ଅନାଥ ହୋଇଯିବେ । ଯଥାଶୀଘ୍ର ହନୁମାନ ଗରୁଡ଼ଙ୍କୁ ପ୍ରେରଣକରି ଅଯୋଧ୍ୟାରୁ ସୀତାଙ୍କୁ ଯୁଦ୍ଧ କ୍ଷେତ୍ରକୁ ଅଣାଇ ଯୁଦ୍ଧର ପରିସମାପ୍ତି ଘଟାଯାଉ ।

ପୁଣି ସେଇ ସୀତା ! ଯୁଦ୍ଧଜୟ ନିମନ୍ତେ ତାଙ୍କରି ପାଖରେ ଶରଣ ଯାଚ୍ଞା କରିବାକୁ ହେବ ? ଯାହାଙ୍କ ପାଖରୁ ସେ ଗର୍ବରେ ମଥାଟେକି ଚାଲି ଆସିଛନ୍ତି, ଏବେ ପୁଣି ମୁଣ୍ଡ ନୁଆଇଁ ତାଙ୍କରି ପାଖରେ ସାହାଯ୍ୟଭିକ୍ଷା କରିବେ । ସେ ରାବଣବିଜୟୀ, ତାଡ଼କା ହନ୍ତାରକ, ଅହଲ୍ୟାରକ୍ଷକ, ପୁରୁଷ ଶ୍ରେଷ୍ଠ ରଘୁକୁଳ ତିଳକ-ରାମଚନ୍ଦ୍ର ସାହାଯ୍ୟ ଲୋଡ଼ିବେ ଜଣେ ନାରୀଠାରୁ ଅନ୍ୟର ଆଶ୍ରିତ ହେଉଛି, ଯାହାର ଧର୍ମ ।

'ତା' ଅପେକ୍ଷା ବରଂ ରାମଚନ୍ଦ୍ର ସନ୍ନ୍ୟାସ ନେବେ ଅରଣ୍ୟବାସୀ ହୋଇ, ଜୀବନର ବାକି ଦିନଗୁଡ଼ିକ କଟାଇଦେବେ । ବରଂ ଅଯୋଧ୍ୟାକୁ ଫେରିବେ ନାହିଁ । ସୀତାଙ୍କର ଓଷ୍ଠାଧାରର ବକ୍ର ଉପବ୍ୟଙ୍ଗକ ଧାରେ ହସ, ଦେଖିବା ଅପେକ୍ଷା ମୃତ୍ୟୁ ତାଙ୍କ ପକ୍ଷରେ ବରଂ ଶ୍ରେୟସ୍କର ।

ସୀତାଙ୍କର ବାକ୍ୟବାଣ ଯୋଜନ ଯୋଜନ ଦୂର ଅତିକ୍ରମ କରି ରାମଚନ୍ଦ୍ରଙ୍କ କାନରେ ଆଘାତ ହାଣୁଛି । ସୀତା କହିଥିଲେ, ବ୍ୟକ୍ତିଗତ

ସଙ୍କଟର ସନ୍ଧିକ୍ଷଣରେ ପ୍ରତ୍ୟେକଟି ପୁରୁଷ ହୋଇଉଛନ୍ତି ରାମଚନ୍ଦ୍ର ଅଥବା ମହିଷାସୁର; କେହି ପ୍ରେମିକର ଛଦ୍ମବେଶରେ ଅଗ୍ନିକୁଣ୍ଡରେ ଝାସ ଦେବାକୁ କହିବେ ପ୍ରିୟତମା ନାରୀକୁ । କେହି ଅବା ପ୍ରକାଶ୍ୟ ଦିବାଲୋକରେ ହରଣ କରିବାକୁ ଚାହିଁବେ । ନାରୀ ଯେମିତି କେବଳ ତାର ଅଧିକାରର ପଣ୍ୟ ସାମଗ୍ରୀ ପ୍ରିୟତମା ହୋଇ ରହିବାକୁ ହେଲେ ନାରୀକୁ ଅର୍ପଣ କରିବାକୁ ହେବ ନିଃସର୍ତ୍ତ ଦାସ୍ୟ । ତାହା ହେଲେହିଁ ଅଟୁଟ ରହିବ ନାରୀ ପୁରୁଷର ପ୍ରେମର ବନ୍ଧନ । ପ୍ରେମ ତାହାହେଲେ ଏତେ ନିଷ୍ଠୁର !

ସୀତା ଆତୁର କହୁଥିଲେ, ଜାଣ ରଘୁବୀର । ନାରୀ ପାଇଁ ଏ ସଂସାର ହିଁ ହୋଇଉଛି ଏକ ବନ୍ଦୀଗୃହ । କେବଳ ରକ୍ଷକର ପରିବର୍ତ୍ତନ ହୁଏ ଯାହା । କେତେବେଳେ ପିତା, କେତେବେଳେ ସ୍ୱାମୀ, କେତେବେଳେ ଅବା ପୁତ୍ର । ସଂସାରର ଏଇ ବନ୍ଦୀଶାଳାର ଜଞ୍ଜିରରେ ସ୍ନେହ, ପ୍ରେମ ଭଲପାଇବାର ଗୋଟାଏ ଆବରଣ ଥାଏ । ଆବରଣଟା ଖସିପଡ଼ିଲେ ସବୁ ଏକାକାର । ପୃଥିବୀର ଏଇ ନିୟମ । ସ୍ୱାହାର ଶକ୍ତି ବେଶି ତାର କଥାହିଁ ହୋଇଉଛି ଆଇନ୍ । ଲୋକ୍ ମଧ୍ୟ ତାହାର ।

ଏତେସବୁ ଘଟଣା ଘଟିଗଲା ପରେ ସେ ସୀତାଙ୍କୁ ଆସିବାକୁ ନିମନ୍ତ୍ରଣ ପଠାଇବେ ? ବଡ଼ ମୁହଁରେ ତାଙ୍କ ପାଖରେ ପ୍ରତିଜ୍ଞା କରିଆସିଛନ୍ତି, ହିଂସ୍ର ରାବଣକୁ ଏକା ହତ୍ୟା କରିବା ନିମନ୍ତେ । ତା'ର କ'ଣ ହେବ ? ସେ ବରଂ ନିମରୁ । ଦେବକାର୍ଯ୍ୟ ଅସମାପ୍ତ ରହୁ । ସେ ତପସ୍ୟା କରିବା ନିମନ୍ତେ ଅରଣ୍ୟବାସ କରିବେ ।

ଅଭିଯୋଗ ଭିତ୍ତି ଉପରେ ପରିବାରର ସୁଖ ଆଉ ସମୃଦ୍ଧି ଠିଆ ହୁଏନାହିଁ । ରାମ-ପରିବାର ବିରୁଦ୍ଧରେ ସୀତାଙ୍କର ଅଭିଯୋଗର ସୀମା ନାହିଁ । ସୀତା ଭୁଲିଯାଇଛନ୍ତି, ରାମ ତାଙ୍କପ୍ରତି କେତେ ଅନୁରକ୍ତ, ତାଙ୍କ ପାଇଁ ସେ ଉତ୍ତାଳ ସମୁଦ୍ରରେ ବନ୍ଧ ବାନ୍ଧିଛନ୍ତି । କେତେ ଦୁର୍ଲଂଘ୍ୟ ନଦୀ ଗିରିବନ ପର୍ବତ ଅତିକ୍ରମ କରିଛନ୍ତି । ବାନର ଭଲ୍ଲୁକମାନଙ୍କ ସହ ମିତ୍ରତା କରିଛନ୍ତି । ଏ ସବୁର କିଛି ମୂଲ୍ୟ ନାହିଁ ? କିମ୍ବା ସୀତାମାନେ କେବେହିଁ ଭଲ ପାଇବାର ମର୍ଯ୍ୟାଦା ବୁଝନ୍ତି ନାହିଁ !

ନିଷ୍ପତ୍ତି ଯାହା ନିଆଯାଏ, ତାହା ତ ପରିବାରର ମଙ୍ଗଳ କାମନାରେ ହିଁ ନିଆଯାଏ । ସେଥିରେ ନାରୀର ମତ କଏ ନେଉଛି

ନେଲେଡ଼େ ? ନାରୀ ବି ପରିବାରର ଏକ ଅଙ୍ଗ । ତା'ର ଅମଙ୍ଗଳ ହେଲେ ପୁରୁଷ ଯେ ଚନ୍ଦ୍ରିରେ ଜଡ଼ିତ ହୋଇପଡେ, ଏକଥା ସୀତା ବୁଝନ୍ତି ନାହିଁ କାହିଁକି ? ସବୁବେଳେ ନାରୀର ମୁହଁକୁ ଚାହିଁ ବସିଲେ ସଂସାର ଚଳେ ନାହିଁ । ଏହାକୁ ଯଦି ସୀତା ପୁରୁଷର ସ୍ୱେଚ୍ଛାଚାର ବୋଲି ମନେକରନ୍ତି, ନିଜର ଅପମାନ ବୋଲି ମନେ କରନ୍ତି, ତେବେ ରାମ ନାଚାର । ଉପାୟ ଶୂନ୍ୟ ।

ସୀତାଙ୍କର ଅହଂକାର ବି ଲଜାଜନକ ! ସାରା ସୃଷ୍ଟି ଦେଖିଲା, ଲଙ୍କାପତି ରାବଣର ନିଧନ ରାମଚନ୍ଦ୍ରଙ୍କ ତୀକ୍ଷ୍ଣ ଶାୟକରେ । ଏବେ ସୀତା ଦାବି କରୁଛନ୍ତି ଯେ, ରାବଣ ନିଧନରେ ତାଙ୍କର ଭୂମିକା ଅଗ୍ରଗଣ୍ୟ ! ଯୁଦ୍ଧ କ'ଣ ଶିଶୁର କ୍ରୀଡ଼ା କ୍ଷେତ୍ର ?

ଏତେକଥା ଜାଣିଲା ପରେ ବୁଦ୍ଧା ସୀତା ନିଜର ମତରେ ଅଟଳ । ମାତା କୈକେୟୀଙ୍କର ସ୍ୱାର୍ଥଜଡ଼ିତ ଅନମନୀୟତା ହିଁ ଏମିତି ରଘୁ-କୁଳର ସର୍ବନାଶକୁ ନିମନ୍ତ୍ରଣ କରି ଆଣିଥିଲା । ଦଶରଥ ପରିବାରର ସୁଖଶାନ୍ତିକୁ ଚିର ଦିନରେ ବିନଷ୍ଟ କରିଥିଲା । ସେତେବେଳେ ଯଦି ପିତା ସାମାନ୍ୟ ଦୃଢ଼ତା ଦେଖାଇ ଥାଆନ୍ତେ, ତାହାହେଲେ ତାଙ୍କୁ କ'ଣ ଏମିତି ଅକାଳରେ ଝରିପଡ଼ିବାକୁ ହୋଇଥାଆନ୍ତା, ନା ଚଉଦ ବର୍ଷର ବନବାସର ଦୁର୍ଭୋଗ ରାମଙ୍କୁ ଭୋଗିବାକୁ ପଡ଼ିଥାଆନ୍ତା ?

ସ୍ୱାର୍ଥପରତାର ଅନ୍ୟନାମ ହେଉଛି ନାରୀ । ଦଶରଥ ଯେଉଁ ଭୁଲ କରିଥିଲେ, ରାମଚନ୍ଦ୍ର ଆଉ ସେ ଭୁଲ କରିବେ ନାହିଁ । ସୀତା ତାଙ୍କ ମତରେ ଅଟଳ ଥାଆନ୍ତୁ । ରାମଙ୍କ ବିରୁଦ୍ଧରେ ତାଙ୍କର ଅଭିଯୋଗର ପରିମାଣ ବଢ଼ି ବଢ଼ି ଚାଲୁ । ରାମଙ୍କୁ ନିଜ ନିଷ୍ପତ୍ତିରେ ଅଟଳ ରହିବାକୁ ହିଁ ପଡ଼ିବ ।

ଦେବତାମାନଙ୍କ କାକୁତିମିନତିରେ କୌଣସି ଅର୍ଥ ତାଙ୍କ ପାଖରେ ନାହିଁ । ସେ ସୀତାଙ୍କ ନିକଟରେ ନତମସ୍ତକ ହୋଇ କ୍ଷମା ମାଗିବେ ନାହିଁ—ମାଗିପାରିବେ ନାହିଁ । କ୍ଷମା କ'ଣ ପାଇଁ ? କ୍ଷମା ମାଗିଲେ ତ ଅପରାଧ ସ୍ୱୀକାର କରିନେବାକୁ ହୁଏ । ସେଥିରେ କାହାର ଲଜ୍ଜା ।

କି ଅପରାଧ ସେ କରିଛନ୍ତି ? ସେ ତ କେବଳ ତାହାହିଁ କରିଛନ୍ତି, ଯୁଗଯୁଗ ଧରି ପୁରୁଷ ସମାଜ ଯାହା କରିଆସିଛି, ଏଥିରେ ଦୋଷ କେଉଁଠି ରହିଲା ?

ସୀତାଙ୍କର ସହଯୋଗ ପ୍ରାର୍ଥନା କରି ସେ ଯୁଗଯୁଗ ପୁରୁଷ ସମାଜର ମଥାରେ ଶାଶ୍ୱତ କଳଙ୍କର ଟୀକା ପିନ୍ଧାଇ ଦେଇ ପାରିବେ ନାହିଁ । କାଲି ଇତିହାସ ତାଙ୍କୁ କ'ଣ କହିବ ? ତ୍ରିଲୋକବିଜୟୀ ରାମ ରାବଣବଧ ନିମନ୍ତେ ସହାୟତା ନେଉଥିଲେ ଜଣେ ନାରୀପାଖରୁ ? ନାଃ-ତା ଅପେକ୍ଷା ତାଙ୍କର ମୃତ୍ୟୁ ହେଉ । ତାଙ୍କର ମାଂସ ଶିବାଶକୁନର ଆହାର ହେଉ । ନିହତ ହେଉ ତାଙ୍କର ବାନରସୈନ୍ୟ । ରାମନାମ କାଳିମାଯୁକ୍ତ ହେଉ । ନିଜ ପାଇଁ ସେ ଗୋଟିଏ ସମାଜକୁ କଳଙ୍କିତ କରିପାରିବେ ନାହିଁ । ମୁଣ୍ଡ ତାଙ୍କର କଟିଯିବ ପଛେ ନଇଁବ ନାହିଁ ।

ପୁଣି ସୀତାଙ୍କର ସେଇ ବିଦ୍ରୂପ ବାକ୍ୟ କାନରେ ପଡ଼ୁଛି । ଶାସ୍ତ୍ର ପୁରାଣ ମାତ୍ର ନିୟମ ସବୁ-ପୁଣି ପୁରୁଷର ସୃଷ୍ଟି । ସେଇ ଶାସ୍ତ୍ରରେ ପୁରୁଷ ଲେଖିଛି, ସ୍ୱାମୀ ହିଁ ହେଉଛି ନାରୀର ସହଚର, ଦେବତା, ବ୍ରତ ତୀର୍ଥ ପୂଜା ହୋମ ସବୁ । ଆନୁଗତ୍ୟ ଦାସ୍ୟ ଯେଉଁ ଦେଶର ନାରୀଠାରୁ ସଦାସର୍ବଦା କାମନା କରିଯାଇ ଆସିଛି, ସେଠାରେ ସେ ରାମଚନ୍ଦ୍ରଙ୍କୁ ବ୍ୟତିକ୍ରମ ବୋଲି ମନେ କରିବେ କିପରି ?

ପୁରୁଷ ସଦାସର୍ବଦା ଗୃହେହିଁ ଅଖଣ୍ଡ ପ୍ରେମ । କେତେ ଅଭିମାନ, ଅପମାନ ଆଉ ଯନ୍ତ୍ରଣା ଗୋପନ କରି ନାରୀ ଯେ ତାଙ୍କୁ ଭଲପାଇଛି, ତାହା ପୁରୁଷର ଜାଣିବା କଥା ନୁହେଁ । ଯୁଗଯୁଗାନ୍ତ ଧରି ଏହାହିଁ ତ ଚାଲିଛି ।

ଏକଥା ରାମଚନ୍ଦ୍ର ଜାଣନ୍ତି ନାହିଁ । କୌଣସି ପୁରୁଷ ଜାଣିବେ ନାହିଁ କେବେ ।

ସେ କେବଳ ନିଜ ମତରେ ଅଟଳ ରହି ଚୂଡ଼ାନ୍ତ ବିଦାୟ ନେବାର ସିଦ୍ଧାନ୍ତ ନେଇପାରନ୍ତି ।



# ସୁରେଖୀ ରାକ୍ଷସୀ ବୃତ୍ତାନ୍ତ

କେନାମଣି ନରେନ୍ଦ୍ର କୁମାର

ଶିବ ପାର୍ବତୀଙ୍କୁ କହୁଛନ୍ତି ଯେ ଶ୍ରୀରାମଙ୍କ ହସ୍ତରେ ତା' ପୁତ୍ର ନିହତ ହେଲାପରେ ସୁରେଖୀ ରାକ୍ଷସୀ ଏ ହତ୍ୟାର ପ୍ରତିଶୋଧ ନେବାପାଇଁ ଏକ ଅପ୍ସରୀ ରୂପ ଧରି ବନରେ କାନ୍ଦିବାକୁ ଲଗିଲା । ଶ୍ରୀରାମ ଶୋଇଥିଲେ । ଏ କ୍ରନ୍ଦନ ସ୍ୱରରେ ତାଙ୍କର ନିଦ୍ରାଭଙ୍ଗ ହେଲା । ସେ ହନୁମାନ୍‌ଙ୍କୁ କହିଲେ, 'ସ୍ତ୍ରୀ ଜଣେ ଏ ବନସ୍ତରେ କାନ୍ଦିବାର ଶୁଣାଯାଉଛି । ଯାଇକରି ସନ୍ଧାନ କରି ତ । ଯଦି ତୁମ ମନକୁ ପାଇବ ତୁମେ ତାକୁ ଗ୍ରହଣ କରିପାର ।' ହନୁମାନ୍ କହିଲେ, ମୁଁ ବନଚାରୀ ବାନର । ଏ ସୁନ୍ଦରୀର ଯୋଗ୍ୟ ଏକମାତ୍ର ଆପଣ । ଶ୍ରୀରାମ ହନୁମାନ୍‌ଙ୍କୁ ବୁଝାଇଦେଲେ ଯେ ସୀତାଙ୍କ ସହିତ ପ୍ରଥମ ଦେଖାରେ ସେ ଶପଥ କରି ସାରିଥିବା ହେତୁ ଅନ୍ୟ ସ୍ତ୍ରୀ ଗ୍ରହଣ କରିବା ତାଙ୍କ ପକ୍ଷେ ସମ୍ଭବ ହେବ ନାହିଁ । ହନୁମାନ୍ ଏକଥା ଶୁଣି ସ୍ତ୍ରୀ ଲୋକ ପାଖରେ ପହଞ୍ଚିଲା । ହନୁମାନ୍ ତାକୁ ପଚାରିଲା, 'ତୋର ରାଜ୍ୟ କାଏ ? ଏ ଘୋର ବନସ୍ତରେ ତୁ କାହିଁକି କାନ୍ଦୁଛୁ ?' ଅସୁରୀ କହିଲା, 'ବିପୁଳା ନାମକ ବନ ମୋର ବାସସ୍ଥାନ । ମୋ ଭାଇ ସୁରସେନ ମୋ ରାଜ୍ୟଲୋଭରେ ମୋ ପିତାମାତା ସମସ୍ତଙ୍କୁ ମାରିଦେଲା । ମୁଁ ଏକା ପଳାଇ ଆସି ମୋ ସଙ୍ଗାତ ଜାନକୀ ନାମକ ସ୍ତ୍ରୀକୁ ଅଯୋଧ୍ୟାରେ ଭେଟ କରିବାକୁ ବାଟ ଖୋଜୁଛି ।'

ହନୁମାନ କହିଲେ, 'ଜାନକୀଙ୍କ ସ୍ୱାମୀ ରାମଚନ୍ଦ୍ର ରାକ୍ଷସ ମାରିବାକୁ ଆସିଛନ୍ତି । ତୁମେ ଆଉ ଚିନ୍ତା କରନାହିଁ । ଆମ ସଙ୍ଗରେ ଅଯୋଧ୍ୟା ଯିବ ।' ରାକ୍ଷସୀ, ଶ୍ରୀରାମଚନ୍ଦ୍ର ସହିତ ତା'ର ଦେଖା କରାଇବା ପାଇଁ ଅନୁରୋଧ

କରନ୍ତେ ହନୁମାନ୍ ସେଠାରୁ ଆସି ଶ୍ରୀରାମଚନ୍ଦ୍ରଙ୍କ ପାଖରେ ପହଞ୍ଚିଲେ । ରାମଚନ୍ଦ୍ର ସବୁ ଶୁଣି ଏହା ଆସୁରିକ କାର୍ଯ୍ୟ ବୋଲି ସନ୍ଦେହ କଲେ ଏବଂ ସାବଧାନତାର ସହିତ ତାକୁ ସେଇ ପର୍ବତରେ ରଖିବାକୁ କହିଲେ । ହନୁମାନ୍ ଶ୍ରୀରାମଚନ୍ଦ୍ର ରହିଥିବା ପର୍ବତର ଗୁମ୍ଫା ବାଟେ ନଯାଇ ଅନ୍ୟ ବାଟରେ ରାକ୍ଷସୀକୁ ନେଇ ପର୍ବତ ଉପରେ ବସାଇଲେ ଏବଂ ଖାଇବାକୁ ଫଳମୂଳ ଦେଲେ ।

ଅସୁରୀ ଭାବିଲା ଏହି ଶ୍ରୀରାମଚନ୍ଦ୍ର ମୋ ପତି ଏବଂ ପୁତ୍ରଙ୍କୁ ମାରିଛନ୍ତି । ଏହାକୁ ମୁଁ କିପରି ଗିଳିବି । ପ୍ରଥମେ ହନୁମାନଙ୍କୁ ଗିଳିବା ଉଚିତ କରି ସେ ହନୁମାନ୍ଙ୍କୁ ପାଖକୁ ଡାକି ତା' ସହିତ ରତି କରିବାକୁ ଅନୁରୋଧ କଲା । ହନୁମାନ୍ କହିଲେ, 'ଜାନକୀଙ୍କର ସଙ୍ଗାତ ହୋଇ ତୁ ଏପରି କଥା କହୁଛୁ, ତୁ ନିଶ୍ଚୟ ଜଣେ ଅସୁରୀ ।' ରାକ୍ଷସୀ ଭାବିଲା ମୋହର ରୂପ ତ ହନୁମାନ ଜାଣି ସାରିଲେଣି । ତେଣୁ ସେ ପାଟି ମେଲାକରି ବଡ଼ ଆଁ କଲା ଏବଂ ହନୁମାନଙ୍କୁ ଗିଳି ପକାଇଲା ।

ଅସୁରୀ ଲଙ୍କାକୁ ପଳାଇଆସି ଲଙ୍କାର ରାଜାଙ୍କୁ କହିଲା, ମୋର ପୁଅକୁ ଶ୍ରୀରାମଚନ୍ଦ୍ର ମାରିଦେଲେ ଏବଂ ସବୁ ସୈନ୍ୟ ମଧ୍ୟ ମାରିଦେଲେ । ମୁଁ ଛଦ୍ମବେଶରେ ହନୁମାନଙ୍କୁ ଗର୍ଭରେ ପୂରାଇ ଆସିଛି । ଶ୍ରୀରାମ ଏକୁଟିଆ ପର୍ବତ ଉପରେ ରହିଛନ୍ତି । ପାରିଲେ ତାଙ୍କୁ ହତ୍ୟାକର । ରାଜା ଶୁଣି କହିଲା ଯେ ବାନ୍ତିକରି ବାନରକୁ ମୋତେ ଦେଖାଇ ଦିଅ । ତୁମକୁ ମୁଁ ମନ୍ତ୍ରୀପଣ ଦେବି । ଅସୁରୀ ବାନ୍ତି କରିଦେବାରୁ ହନୁମାନ୍ ଲାଳ ଜରଜର ହୋଇ ଭୂମିରେ ପଡ଼ିଲେ । ଏତେ ସୈନ୍ୟସାମନ୍ତ ଥାଇ ଶ୍ରୀରାମଙ୍କୁ ମାରିବା ସହଜ ବୋଲି ସମସ୍ତେ କହନ୍ତେ, ତ୍ରିଶିର ଅସୁର କହିଲା, ଶ୍ରୀରାମଙ୍କୁ ଶ୍ରେଷ୍ଠ ବୋଲି ମନେ କରିବା ନାହିଁ । ସେ ଲଙ୍କାପତି ରାବଣଙ୍କୁ ମାରିଛନ୍ତି । ବାଳିକୁ ମଧ୍ୟ ଗୋଟିଏ ଶରରେ ମାରିଛନ୍ତି । ଏହି ହନୁମାନ ମଧ୍ୟ ଅମର । ଏ କଥା ଶୁଣି ସମସ୍ତେ ଉପାୟ ଚିନ୍ତାକଲେ ।

# ଶେଷ ଅସ୍ତ୍ର

ଶ୍ରୀ ବସନ୍ତ କୁମାର ଦାସ

ବ୍ରାହ୍ମ ମୁହୂର୍ତ୍ତ । ଅନେକ ବେଳୁ ଶଯ୍ୟା ତ୍ୟାଗ କଲେଣି ଜାନକୀ । ଗତ ରାତ୍ରୀର ଅନ୍ଧକାର କ୍ରମଶଃ ଅପସର ଯାଉଛି । ଅଦୂର ତରୁ ଶାଖାରେ କେଉଁ ଏକ ନାଁ ନଜଣା ପକ୍ଷୀର କାକଳିରେ ନୂତନ ପ୍ରଭାତର ସ୍ୱାଗତ-ଗୀତିକା ।

ଏଇ ମାତ୍ର ସ୍ୱସ୍ୱ ଧାମକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ଦେବଗଣ । ଜାନକୀ ସେମାନଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ଲଙ୍କା ନରେଶ ସହସ୍ରଶିର ରାବଣର ନିଧନ ପାଇଁ ଯୁଦ୍ଧ କ୍ଷେତ୍ରରେ ଆଜ ସେ ଉପସ୍ଥିତ ରହିବେ ।

ଗଲା ଛ' ମାସ ଧରି ମାୟାବୀ ଦାନବ ବୀରଶ୍ରେଷ୍ଠ ସ୍ୱାମୀଙ୍କ ସହ ଯୁଦ୍ଧକରି ଏବେ ମଧ୍ୟ ଅପରାଜିତ ଏହା ବୈଦେହୀଙ୍କୁ କହୁଛି। ଯେ ସ୍ୱୀକୃତ ନ କରୁଛି, ଏପରି ନୁହେଁ । ଯୁଦ୍ଧରେ ସହସ୍ରଶିରର ଭାଇବନ୍ଧୁ କୁଟୁମ୍ବ ସମସ୍ତେ ସ୍ୱାମୀଙ୍କ ହାତରେ ନିହତ ହୋଇ ସାରିଲେଣି । ଲଙ୍କାଗଡ଼ ଏବେ ଜନଶୂନ୍ୟ । ପବନସୁତ ହନୁମାନ ମଧ୍ୟ ଲଙ୍କାଠାରୁ ଅନେକ ବୃହତ୍ ଏବଂ ସମୃଦ୍ଧ ଲଙ୍କାପୁରକୁ ନାରଖାର କରିଦେଲେଣି । ମାତ୍ର ସମସ୍ତ ରଣକୌଶଳ ମାୟାବୀ ଅସୁର ପଣ୍ଡ କରିଦେଇଛି । କୋଦଣ୍ଡଧାରୀଙ୍କ ସମସ୍ତ ଅସ୍ତ୍ରଶସ୍ତ୍ର ତାକୁ ନିପାତ କରିବାରେ ଏବେ ମଧ୍ୟ ସକ୍ଷମ ହୋଇପାରି ନାହିଁ ।

ରଘୁନାଥଙ୍କ ଏ ବ୍ୟର୍ଥତା ପାଇଁ ସେ ଯେ ଅନେକାଂଶରେ ଦାୟୀ ଏହାହିଁ ତାଙ୍କର ଚିନ୍ତାର କାରଣ । ତେଣୁ ଅଞ୍ଜନାସୁତ ଠାରୁ ସ୍ୱାମୀଙ୍କ ବାର୍ତ୍ତା ପାଇଲାମାତ୍ରେ ଦେବର ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ସେ ଅଯୋଧ୍ୟାରୁ ଧାଇଁ ଆସିଛନ୍ତି ଲଙ୍କା ରାବଣର ବିନାଶରେ ସହାୟତା କରିବାପାଇଁ ।

ବାଲଙ୍କାଗଡ଼ରେ ପହଞ୍ଚିବାର ପ୍ରଧାନ ରଜନୀରେ ସେ ପଣ୍ଡିତଙ୍କ ନିକଟରୁ ମାୟାବୀ ଅସୁର ସମ୍ପର୍କରେ ସମସ୍ତ ଅବଗତ ହୋଇଥିଲେ । ସ୍ୱାମୀଙ୍କଠାରୁ ଏ ବିଷୟରେ ଯେତିକ ଯେତିକ ଜାଣିବାକୁ ପାଇଲେ, ତାଙ୍କର କୋପାନଳ ସେତିକ ସେତିକ ପ୍ରଜ୍ୱଳିତ ହେବାକୁ ଲଗିଲା ।

କେଉଁ ଅବା ଏକ କାରଣ ପାଇଁ ପରମବୀର ସ୍ୱାମୀ ତାଙ୍କର ଏତେ କଷଣ ପାଇଲେଣି । ସେ ଦିନର ସେଇ ଅଳସ ମୁହୂର୍ତ୍ତର କଥା ଏବେବି ସ୍ପଷ୍ଟ ମନେ ଅଛି ଜାନକୀଙ୍କର । ସ୍ୱାମୀଙ୍କ ସହ ଲଙ୍କାରେ ବିତିଥିବା ଦିନଗୁଡ଼ିକ ସମ୍ପର୍କରେ ଲଘୁ ଆଳାପ କରୁ କରୁ ପ୍ରସଙ୍ଗକ୍ରମେ ଦଶଶିର ବିଷୟ ଆଲୋଚନା ପରିସର ମଧ୍ୟକୁ ଚାଲି ଆସିଥିଲା । ଆଲୋଚନାରୁ ମତଭେଦ କାରଣ ଥିଲା ବଂଶବାହୁର ନିଧନ ପାଇଁ କାହାର ଅବଦାନ ବେଶୀ । ତାଙ୍କର ନା ସ୍ୱାମୀଙ୍କର । ବିସ୍ମରବନ୍ତ ସ୍ୱାମୀ ସେ ମୁହୂର୍ତ୍ତରେ ବୋଧହୁଏ ତାଙ୍କ ନିକଟରେ ନଇଁନ ହେବାକୁ ଚାହିଁ ନଥିଲେ । ଆଜ ସେ ! ରାବଣ ମୃତ୍ୟୁ ନାଟକର ପ୍ରଧାନ ନାୟିକା ସେ । ଅଥଚ ବଂଶବାହୁର ମୃତ୍ୟୁରେ ତାଙ୍କର ଅବଦାନକୁ ସ୍ୱାମୀ ଅସ୍ୱୀକାର କରିବେ ସେଥିରେ ତାଙ୍କର ନାରୀ ସତ୍ତା ଆଘାତ ପାଇବ ନାହିଁ କାହିଁକି ! ବାଲଙ୍କା ନରେଶଙ୍କୁ ନିଧନ କରି ନିଜ କଥାର ସତ୍ୟତା ପ୍ରତିପାଦନ କରିବା ଲାଗି ସ୍ୱାମୀଙ୍କୁ ଆହ୍ୱାନ ଦେଇଥିଲେ ଜନକ ନନ୍ଦିନୀ । ଆଜ ଦାଶରଥି ସେ ଆହ୍ୱାନକୁ ଗ୍ରହଣ କରିଥିଲେ ।

ନିଜ ରଥର ବାହାରକୁ ଚାହିଁଲେ ବୈଦେହୀ । ବାଲଙ୍କାପୁରର ମେଘମୁକ୍ତ ପୂର୍ବାକାଶ ଦିନମଣିଙ୍କ ଆଗମନର ସୂଚନା ଦେଇ ପାଟଳିମା ଧାରଣ କଲାଣି । ଅଦୂର ରଣକ୍ଷେତ୍ରରୁ ଅସ୍ତ୍ରଶସ୍ତ୍ର ଝନ୍‌କାର ସହ ଅସୁରର ବିକଟାଳ ସ୍ୱର ଭାସି ଆସୁଛି ।

ସ୍ୱାମୀଙ୍କ ପାଖରେ ପହଞ୍ଚିବାର ପରଦିନ ଅତିପ୍ରତ୍ୟୁଷରୁ ପବନସୁତ ହନୁମାନଙ୍କୁ ବାଲଙ୍କେଶ ସହ ଯୁଦ୍ଧ କରିବା ପାଇଁ ପ୍ରେରଣ କରିଥିଲେ ବୈଦେହୀ । କିଛି ସମୟ ପରେ ଦେବର ଲକ୍ଷ୍ମଣ ହନୁମାନଙ୍କ ସାହାଯ୍ୟ କରିବା ପାଇଁ ଯୁଦ୍ଧକ୍ଷେତ୍ର ଉଦ୍ଦେଶ୍ୟରେ ଯାତ୍ରା କରିଥିଲେ । ପ୍ରାୟ ଦିନସାର ପ୍ରବଳ ସଂଗ୍ରାମ କରି ମଧ୍ୟ ଦୁଇ ଶ୍ରେଷ୍ଠ ଯୋଦ୍ଧା ଦଶଶିରଙ୍କୁ ପଦାନତ କରି

ଡାଗଥିଲେ । ଅବଶେଷରେ କ୍ଲାନ୍ତ ଲକ୍ଷ୍ମଣଙ୍କ ଠାରୁ ବାର୍ତ୍ତାପାଇ ସ୍ୱାମୀ ତାଙ୍କର ଯୁଦ୍ଧରେ ଯୋଗ ଦେଇଅଛନ୍ତି । ଏହା ମଧ୍ୟରେ ଆଠୁର ଦୁଇଦିନ ଅତିକ୍ରାନ୍ତ ହେଲଣି । ମାତ୍ର ଯୁଦ୍ଧ ପରିସମାପ୍ତିର କୌଣସି ଆଭାସ ମିଳୁନାହିଁ ।

ସେ ନିଜେ ରଣକ୍ଷେତ୍ରରେ ଉପସ୍ଥିତ ନହେଲେ ମାୟାବୀ ଶଳଙ୍କା ରାବଣର ନିଧନ ହେବନାହିଁ—ଏ କଥା କିନ୍ତୁ ସମସ୍ତ ଆଗରୁ ଦେବଗଣ ତାଙ୍କୁ ସୂଚାଇ ଦେଇ ଯାଇଅଛନ୍ତି । ସତ କହିଲେ, ଏ କଥା ସେତ ସ୍ୱାମୀଙ୍କ ସହିତ ସେଇ ମାନ ଅଭିମାନ ମୂହୂର୍ତ୍ତରୁ ଜାଣିଛନ୍ତି । କେବଳ ଯାହା ଉପଯୁକ୍ତ ସମୟର ଅପେକ୍ଷାରେ ଥିଲେ ସେ । ସେ ସମୟ ଯେ ଏବେ ଆଗତ ଏହା ଦେବଗଣଙ୍କ ଆଗମନରୁ ସ୍ପଷ୍ଟ ହୋଇଯାଇଛି ।

ଆଉ କାଳ ବିଳମ୍ବ କରିନଥିଲେ ଜନକନନ୍ଦିନୀ । ନିକଟସ୍ଥ ସାଗରରେ ସ୍ନାନ ସମାପନ କରି ମହାମାୟାଙ୍କୁ ସ୍ମରଣ କଲେ ସେ—"ମା ସର୍ବମଙ୍ଗଳା, ମା' ଅପର୍ଣ୍ଣା, ମା' ସିଂହବାହିନୀ, ମୋ ପ୍ରତି ପ୍ରସନ୍ନ ହୁଅ । ମତେ ଶକ୍ତିଦିଅ । ଆଜ ରଣକ୍ଷେତ୍ରରେ ଉପସ୍ଥିତ ହୋଇ ଅଧର୍ମ ବିନାଶରେ ମୁଁ ଯେପରି ସହାୟତା କରିପାରେ । ଦୁରାଚାରୀ ସହସ୍ରଶିର ଦାନବର ନିଧନ ହେଉ । ଜଗତର କଲ୍ୟାଣ ଏବଂ ସ୍ୱର୍ଗ ସୁରକ୍ଷା ଲାଗି ଆବିର୍ଭୂତା ହୁଅ ମା ।"

ସୀତାଙ୍କର ଆକୁଳ ପ୍ରାର୍ଥନା ବାରମ୍ବାରପୂରରେ ମହାମାୟା ଶ୍ରବଣ କରିବା ମାତ୍ରେ ତାଙ୍କୁ ଦର୍ଶନ ଦେଇ କହିଲେ "ଉଠ ମା, ତୋ ପ୍ରାର୍ଥନାରେ ମୁଁ ପ୍ରସନ୍ନ ହୋଇଛି । ଅତ୍ୟାଚାରୀ ଅସୁରର ଆଜ ହିଁ ହେବ ଅନ୍ତିମ ଦିବସ । ଏଇ ନେ ପୁଷ୍ପଧନୁ ଏବଂ ପଞ୍ଚଶର । ନିଜ ପାଖରେ ଲୁଚାଇ ରଖ ମା । ଏହି ଶକ୍ତିଶାଳୀ ଅସ୍ତ୍ରକୁ ଯଥା ସମୟରେ ପ୍ରୟୋଗ କରିବୁ । ଏହା ହିଁ ସହସ୍ରଶିରର ବିନାଶର କାରଣ ହେବ ।"

ଜନକ ନନ୍ଦିନୀ ବିନମ୍ର ପ୍ରଣାମ କରନ୍ତେ ଦେବୀ ଅନ୍ତର୍ହିତା ହୋଇଗଲେ ।

ଶିବିରକୁ ପ୍ରତ୍ୟାବର୍ତ୍ତନ କରି ନିଜକୁ ଅପୂର୍ବଭାବେ ସଜ୍ଜିତ କଲେ ବୈଦେହୀ । ଉତ୍ତମ ବସ୍ତ୍ର ପରିଧାନ ସହ ନାନା ଆଭୂଷଣରେ ଶୋଭିତା

ହେଲେ ସେ । ଶଷେସନଙ୍କୁ ରଥ ପ୍ରସ୍ତୁତ କରିବାକୁ ନିର୍ଦ୍ଦେଶ ଦେଇ, ମନେ ମନେ ପିତାଙ୍କୁ ସ୍ମରଣ କଲେ ଜାନକୀ ।

"ଆପଣଙ୍କ ବାର୍ତ୍ତା ପାଇବାମାତ୍ରେ ମାୟାବୀ ଦାନବର ନିଧନରେ ସହାୟତା କରିବା ନିମନ୍ତେ ବିଲଙ୍କାଗଡ଼ରେ ଉପସ୍ଥିତ ହୋଇଥିଲି । ଏବେ ମୋର ଯୁଦ୍ଧ କ୍ଷେତ୍ରକୁ ଯିବାର ସମୟ ଆସିଯାଇଛି । ଏ ଯାତ୍ରାର ପ୍ରେରଣା ଆପଣ ସ୍ୱାମୀ । ଯୁଦ୍ଧ କ୍ଷେତ୍ରରେ ଥିଲେ ମଧ୍ୟ ଆପଣ ସଦାସର୍ବଦା ମୋ ନିକଟରେ ବିଦ୍ୟମାନ । ମୋ ହୃଦୟରେ, ମୋ ଚିନ୍ତା ଏବଂ ଚେତନାରେ ସଦାଉଜ୍ଜ୍ୱଳ ଆପଣଙ୍କ ଉପସ୍ଥିତି ମୁଁ ଉପଲବ୍ଧି କରିପାରୁଛି । ମୋ ହୃଦୟରେ ଆପଣଙ୍କର ନିର୍ଦ୍ଦେଶ ନ ପହଞ୍ଚିଥିଲେ ମୁଁ କ'ଣ ଏ ଯାତ୍ରା ପାଇଁ ପ୍ରସ୍ତୁତ ହୋଇ ପାରିଥାନ୍ତି ।"

ଶିବିର ତ୍ୟାଗ ପୂର୍ବରୁ ପ୍ରଥମେ ମହାମାୟା ଏବଂ ପରେ ସ୍ୱାମୀଙ୍କ ଉଦ୍ଦେଶ୍ୟରେ ସଭକ୍ତି ପ୍ରଣାମ କଲେ ବୈଦେହୀ । ଅର୍କଦେବଙ୍କ ଶୀତଳ ପ୍ରଭାତୀ କିରଣ କ୍ରମଶଃ ପ୍ରଖର ହେବାକୁ ଲାଗିଲାଣି । ରଥାରୋହଣ କରି ଯୁଦ୍ଧ କ୍ଷେତ୍ରକୁ ପ୍ରସ୍ଥାନ କଲେ ସେ ।

ରଣକ୍ଷେତ୍ରରେ ପହଞ୍ଚିବା ମାତ୍ରେ ଜାନକୀ ପ୍ରଥମେ କିଛି ବୁଝି-ପାରିଲେ ନାହିଁ । ଏ କ'ଣ ଦେଖୁଛନ୍ତି ସେ । ଏକାକୀ ପବନସୁତ ହନୁମାନ ଦୁର୍ଦ୍ଧର୍ଷ ଦାନବ ସହ ରଣରେ ବ୍ୟାପୃତ ରହିଅଛନ୍ତି । ଅଥଚ ସୁର ବୀର ଶ୍ରେଷ୍ଠ ପତି ତାଙ୍କର ପ୍ରିୟ କୋଦଣ୍ଡ ତ୍ୟାଗ କରି ଯୁଦ୍ଧରୁ ନିବୃତ୍ତ ଅଛନ୍ତି । ମୁଖମଣ୍ଡଳରେ ତାଙ୍କର ଚରମ ବୀଭତ୍ସତାର ଭାବ ସ୍ପଷ୍ଟ ବାରିହୋଇ ପଡ଼ୁଛି । ଅଦୂରରେ ଦେବର ଲକ୍ଷ୍ମଣ ମଧ୍ୟ ଯୁଦ୍ଧ ତ୍ୟାଗ କରିଅଛନ୍ତି । ମନେ ହେଉଛି ସେ ମଧ୍ୟ ଯେମିତି ଅସହାୟ ।

ଶ୍ରୀରାମଙ୍କ ନିକଟତର ହୋଇ ବୈଦେହୀ କହିଲେ, "ଯୁଦ୍ଧର ଏ ଘଡ଼ିସନ୍ଧି ମୁହୂର୍ତ୍ତରେ ଅସ୍ତ୍ର ତ୍ୟାଗକଲେ କାହିଁକି ପ୍ରଭୁ ?"

ରଘୁନାଥ କ୍ଳାନ୍ତ ସ୍ୱରରେ ଉତ୍ତର ଦେଲେ "ମାୟାବୀ ଅସୁର ସହ ରଣରେ ଆମେ ବିଫଳ ହୋଇଛୁ ଜାନକୀ । ଯୁଦ୍ଧ ସିନା ବଳରେ ହୁଏ । ମାତ୍ର ମାୟାବୀ ସହସ୍ରଶିର ଛଳରେ ଆମକୁ ଏପର୍ଯ୍ୟନ୍ତ ବିଜୟର ଦ୍ୱାରରେ ପହଞ୍ଚାଇ ଦେଉନାହିଁ । ଆମର ହାବଡା, ବାବଲ, ବ୍ରହ୍ମଶକ୍ତି, ଅସିପତ୍ର

ଭଳି କ୍ଲେଶଶାଳୀ ଅସ୍ତ୍ରଶସ୍ତ୍ର ଦାନବକୁ ସ୍ପର୍ଶ କରିବା ମାତ୍ରେ ଚୂର୍ଣ୍ଣ ହୋଇ-ଯାଉଛି ବରଂ ଆକାମୀ ହୋଇ ପଡ଼ୁଛି । କେତେ ଅସ୍ତ୍ରକୁ ମାୟାବୀ ଗର୍ଭସାତ କରୁଛି ମଧ୍ୟ ।"

ବୈଦେହୀ ପ୍ରେରଣା ଦେଇ କହିଲେ—"ଆପଣ ଆଉ ବିଳମ୍ବ ନକରି ଅସ୍ତ୍ର ଧାରଣ କରନ୍ତୁ ସ୍ୱାମୀ । ଦାନବର ସମସ୍ତ ଶର ଆସିଲାଣି । ଆଜି ସୂର୍ଯ୍ୟାସ୍ତ ଦେଖିବାକୁ ସେ ଜୀବିତ ନଥିବ । ତା' ସଂହାର ପଥରେ ମୁଁ ସୁଣ୍ଣ୍ଣ୍ଣାଦ୍ଧି ପ୍ରଦାନ କରିବି ।

ଦେବୀ ସୀତାଙ୍କ ବାଣୀ ଉତ୍ସାହିତ ହୋଇ ରଘୁନାଥ ପୁନଶ୍ଚ କୋଦଣ୍ଡ ଧାରଣ କଲେ । ସୌମିତ୍ରୀ ମଧ୍ୟ ଅସୁର ବକ୍ଷସ୍ଥଳରେ ଘନ ଘନ ଶକ୍ତିଶାଳୀ ବାଣମାନ ପ୍ରୟୋଗ କରିବାକୁ ଲାଗିଲେ । ମାତ୍ର ପୁଣି ସେଇ ଅବସ୍ଥା । ଦୁଇ ଭାଇଙ୍କର ଯେତେଯେତେ ଅସ୍ତ୍ର ସହସ୍ରଶିର ନିକଟରେ ସବୁ ଶକ୍ତିହୀନ ହୋଇଗଲା ।

ଆଉ ବିଳମ୍ବ ନକରି କୋପିତା 'ଜାନକୀ ଏ ଯୁଦ୍ଧରେ ଶେଷ ଅସ୍ତ୍ର ପ୍ରୟୋଗ କରିବା ପାଇଁ ନିଜକୁ ପ୍ରସ୍ତୁତ କରିନେଲେ । ମନେ ମନେ ମହାମାୟା ଏବଂ ସ୍ୱାମୀଙ୍କଠାରୁ ଆଶୀର୍ବାଦ ଭିକ୍ଷାକରି ସେ ବିଳଙ୍କା ରାବଣକୁ ରଥଉପରୁ ଡାକ ଦେଲେ—'ଆରେ ମାୟାବୀ ଦୁରାଚାର, ଆଜି ମୋ' ହାତରେ ତୋ'ର ମରଣ ନିଶ୍ଚିତ ।'

ଜାନକୀଙ୍କ ଏ ଆହ୍ୱାନରେ ଗଗନକୁ ଛୁଇଁ କ୍ରୋଧାନ୍ୱିତ ସହସ୍ରଶିର ପ୍ରକମ୍ପିତ ହେବାକୁ ଲାଗିଲା । ଆଉ ଠିକ୍ ଏହି ସମୟରେ ଜନକନନ୍ଦିନୀ ନିଜର ନବଯୌବନ ବେଶ ପ୍ରକଟକରି ଦାନବକୁ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ପାଖରେ ଲୁଚାଇ ରଖିଥିବା କନ୍ଦର୍ପର ପୁଷ୍ପଧନୁରେ ପଞ୍ଚଶର ପ୍ରୟୋଗ କଲେ ।

ପଞ୍ଚଶର ସ୍ପର୍ଶମାତ୍ରକେ ମୋହଗ୍ରସ୍ତ ସହସ୍ରଶିର କାମାତୁର କଣ୍ଠରେ ଦେବୀ ସୀତାଙ୍କୁ ମାଗୁଣି କଲା । 'ରାମର ଘରଣୀ ହୋଇ ତୁ କି ସୁଖ ପାଉଛୁ ସୁନ୍ଦରୀ । ମୋର ଭାର୍ଯ୍ୟା ହୋଇଯା, ସମୃଦ୍ଧ ବିଳଙ୍କା ଗଡ଼ର ସମସ୍ତ ଐଶ୍ୱର୍ଯ୍ୟ ମୁଁ ତୋ ପାଦତଳେ ଅଜାଡ଼ିଦେବି ।

ସହସ୍ରଶିର ମୃତ୍ୟୁର ଘଣ୍ଟି ଶୁଣିପାରିଲେ ବୈଦେହୀ । ତା'ର ମତି ଭ୍ରମ ହେଲାଣି ଏବଂ ସେ କ୍ରମଶଃ ଦୁର୍ବଳ ହୋଇ ପଡ଼ୁଛି, ଏକଥା ଜନକ-ନନ୍ଦିନୀଙ୍କୁ ଆଉ ଅଛପା ରହିଲା ନାହିଁ ।

ସ୍ୱାମୀଙ୍କଠାରୁ ମନେ ମନେ କ୍ଷମାଭିକ୍ଷା କରି, ପୁନଶ୍ଚ ମାୟା ରଚନା କଲେ ଜାନକୀ । କଣ୍ଠସ୍ୱର ପରିବର୍ତ୍ତନ କରି କୋମଳଭାବେ ପ୍ରତ୍ୟୁତ୍ତର ଦେଇ କହିଲେ—'ଆରେ ସହସ୍ରଶିର, ମୋ' ସ୍ୱାମୀଙ୍କୁ ମାରିପାରିଲେ ଯିନା ମତେ ପାଇବୁ ।'

ସତୀଙ୍କର ମାୟା ବୁଝିବା ଭଳି ଅବସ୍ଥାରେ ନଥିଲା ଦାନବ । ଏ ମଧ୍ୟରେ ଯେ ବଳବୀର୍ଯ୍ୟ ଶୂନ୍ୟ ହୋଇ ପଡ଼ିଲାଣି, ଏହାମଧ୍ୟ ତା'ର ଖିଆଲ ନଥିଲା । ସୀତାଙ୍କୁ ପତ୍ନୀ ରୂପେ ପାଇବାର ଲାଳସାରେ ଅନ୍ଧହୋଇ ସେ ଶ୍ରୀରାମଙ୍କ ଉପରକୁ ଲମ୍ଫ ପ୍ରଦାନ କଲା ।

ରଘୁନାଥ ଏହି ମୁହୂର୍ତ୍ତକୁ ଅପେକ୍ଷା କରିଥିଲେ ଯେମିତି । କୋଦଣ୍ଡରେ କରୁରୀ ପଶୁପତି ଶର ପ୍ରୟୋଗକରି ଅସୁରର ଦୁଇଶହ ମସ୍ତକ ଏବଂ ଦକ୍ଷିଣ ଭୁଜ ତତ୍କ୍ଷଣାତ୍ ସେ ଛେଦନ କରି ପକାଇଲେ । ସୌମିତ୍ରୀ ମଧ୍ୟ ସହସ୍ରଶିରର ଅନ୍ୟ କେତେକ ବାହୁ ନିଜ ଅସ୍ତ୍ରଦ୍ୱାରା ଶରୀରରୁ ଅଲଗା କରିଦେଲେ । ପରେ ପରେ ଶ୍ରୀରାମ ଜ୍ୱାଳାବଳି ବାଣ ଦାନବ ଉଦ୍ଦେଶ୍ୟରେ ନିକ୍ଷେପ କଲେ । ଫଳରେ ଅସୁରର ପ୍ରଥମେ ପାଞ୍ଚଶତ ଏବଂ ପରେ ଅବଶିଷ୍ଟ ତିନିଶହ ମସ୍ତକ ସ୍କନ୍ଧଚ୍ୟୁତ ହୋଇ ଭୂମିରେ ପତିତ ହେଲା । ଏହି ଅବସରରେ ଲକ୍ଷ୍ମଣ ଲଙ୍କା ରାବଣର ଅନ୍ୟ ସମସ୍ତ ଭୁଜକୁ ନିର୍ମୂଳ କରି ତା'ର ଜୀବନ ପ୍ରଦୀପ୍ତର ପରିସମାପ୍ତି ଘଟାଇଲେ ।

ଅସୁରର ପତିତ ପ୍ରାପ୍ତ ନିଷ୍ପ୍ରାଣ ଶରୀର ଧୂଳିରେ ଲୋଟିଲେ ଶ୍ରୀରାମଙ୍କ ଉପରେ ଆକାଶରୁ ଘନ ଘନ ପୁଷ୍ପବୃଷ୍ଟି କଲେ ଦେବଗଣ । ସେମାନଙ୍କ ଜୟଜୟକାର ଧ୍ୱନିରେ ଗଗନ ପବନ ମୁଖରିତ ହେବାକୁ ଲାଗିଲା ।

ଅବଶେଷରେ ଦେବପ୍ରଦତ୍ତ ଏକ କୌଡ଼ି ମଇରେ ଜାନକୀଙ୍କ ସହ ଉପବେଶନ କରି ସମସ୍ତ ଲଙ୍କା ଭବନକୁ ମାଟିରେ ମିଶାଇ ସମାନ କରି ଦେଲେ ଦାଶରଥି ଏବଂ ଦାନବର ଶରୀରାଂଶ ସବୁକୁ ଏକତ୍ରିତ କରି ସାଗର ବକ୍ଷରେ ନିକ୍ଷେପ କଲେ ।

ସେତେବେଳକୁ ଅସ୍ତ ସୂର୍ଯ୍ୟର ଶେଷ ରଶ୍ମି ଲଙ୍କାର ପଶ୍ଚିମ ଦିଗନ୍ତରେ ବିଲୀନ ହୋଇ ଯାଉଥିଲା ।

# ଶକ୍ତି ପରୀକ୍ଷା

ଡଃ. ପ୍ରତିଭା ରାୟ

ଲଙ୍କାଧିପତି ଦଶାନନକୁ କିଏ ବଧକଲା ? ପ୍ରଭୁ ଶ୍ରୀରାମ ନାଁ ମହାସତୀ ସୀତା ! ଦାମ୍ପତ୍ୟ ମତାନ୍ତରରୁ ସହସ୍ରାନନର ପ୍ରସଙ୍ଗ ଉଠାଇଲେ ସତୀ ବୈଦେହୀ ।

ଦଶାନନ ରାବଣକୁ ବଧକରି ଶ୍ରୀରାମ ଲକ୍ଷ୍ମଣ ସୀତା ଅଯୋଧ୍ୟା ନଗରୀକୁ ଫେରିବା ପରେ ରାଜ୍ୟାଭିଷେକ ମହା ଆଡ଼ମ୍ବର ସହକାରେ ସମ୍ପନ୍ନ ହେଲା । ଅଯୋଧ୍ୟା କଟକ ବୁଲି ଦେଖି ଦେଖି ଶ୍ରୀରାମଚନ୍ଦ୍ର ହନୁମନ୍ତଙ୍କୁ ଅଶେଷ ପ୍ରଶଂସା କରି କହିଲେ—'ଏଇ ହନୁମାନଙ୍କ ପ୍ରସାଦରୁ ମୁଁ ବୈଦେହୀଙ୍କୁ ପାଇଲି । ଲଙ୍କାପୁରୀରେ ବୈଦେହୀଙ୍କୁ ହନୁମାନ ଠାବ କରିବାରୁ ମୁଁ ରାବଣ ବଧ କରିବାକୁ ସକ୍ଷମହେଲି ଓ ଜାନକୀ ଉଦ୍ଧାର କଲି ।' ଶ୍ରୀରାମଙ୍କ କଥା ଶୁଣି ନଗର ଲୋକ ହନୁମନ୍ତଙ୍କୁ ଧନ୍ୟ ଧନ୍ୟ କଲେ ଓ ଶ୍ରୀରାମଙ୍କ ବୀରତ୍ୱର ଜୟଗାନ କଲେ । ଶ୍ରୀରାମ ନିଜର ଜୟଗାନ ଶୁଣି ପ୍ରଫୁଲ୍ଲ ଦିଶନ୍ତେ ଶ୍ରୀରାମଙ୍କର ମନରେ ଖଳ ପ୍ରବେଶ କଲା । ଖଳ ପ୍ରବେଶ କରନ୍ତେ ଶ୍ରୀରାମ ନିଜର ରାବଣ ବଧ ଅନୁଭୂତିକୁ ବାରମ୍ବାର ବର୍ଣ୍ଣନା କରି ନିଜର ବୀରତ୍ୱ ପ୍ରତିପାଦନ କରିବାକୁ ଲାଗିଲେ ।

ମହାସତୀ ଜାନକୀ ଶ୍ରୀରାମଙ୍କର ଅଲୌକିକ ବୀରତ୍ୱର କଥା ଅବଗତ ହୋଇଥିଲେ ହେଁ, ନିଜ ମୁଖରେ ନିଜ କୃତିତ୍ୱର ଜୟଗାନ ଶୁଣି ସେ କ୍ଷୁର୍ଣ୍ଣ ହେଲେ । ଯିଏ କୃତକାର୍ଯ୍ୟ କୃତି ହିଁ ତା' କଥା କହେ । ନିଜେ ନିଜ କୃତିତ୍ୱର ବର୍ଣ୍ଣନା କଲେ, କୃତିର ମାନ କମିଯାଏ । ଏକଥା ରାମଙ୍କୁ

ଅଗୋଚର ନଥିଲେ ହେଁ, ଖଳ ପ୍ରରୋଚନାରେ ସେ ଦଶାନନ ବଧର ଗୌରବରେ ଆତ୍ମପ୍ରଶଂସା କରିବା ପାଇଁ ମଧ୍ୟ ଦ୍ୱିଧାବୋଧ କଲେ ନାହିଁ । ଶ୍ରୀରାମଙ୍କ ରମଣୀୟ ବ୍ୟକ୍ତିତ୍ୱ ସହ ଏପରି ଆଚରଣ ଖାପ ଖାଉ ନଥିବାରୁ ଦେବୀ ଜାନକୀ ଶ୍ରୀରାମଙ୍କ ଆତ୍ମପ୍ରଶଂସାକୁ ଗ୍ରହଣ କରିପାରୁ ନଥିଲେ ।

ଅଭିଷେକ ସମାରୋହର ଦୁନ୍ଦୁଭି ଶବ୍ଦରେ ମେଦିନୀ ଉଚ୍ଛ୍ୱଳ ପଡ଼ୁଛି । ବଶିଷ୍ଠ, ଜାବାଳି, ଯାଜ୍ଞବଲ୍କ୍ୟ, ବାମଦେବ ଅଙ୍ଗିରା, ଅଗସ୍ତି, ଅଷ୍ଟାବକ୍ର ଆଦି ଋଷିଗଣ ଉପସ୍ଥିତ ରହି ମନ୍ତ୍ରପାଠ କରୁଛନ୍ତି । ଭରତ ଶତ୍ରୁଘ୍ନ ଶ୍ରୀରାମଙ୍କ ଚାମର ଢାଳୁଛନ୍ତି । ପାତ୍ର ମନ୍ତ୍ରୀ ଉପସ୍ଥିତ ଅଛନ୍ତି । ଲକ୍ଷ୍ମଣ ଛତ୍ର ଧରିଛନ୍ତି । ଶ୍ରୀରାମଙ୍କ କଣ୍ଠରେ ରହି ଖଳ ପୁନର୍ବାର ଆତ୍ମପ୍ରଶଂସାରେ ପ୍ରଭୁଙ୍କୁ ମୋହିତ କଲା । ବଶିଷ୍ଠଙ୍କୁ ଚାହିଁ ରଘୁବୀର ହସି ହସି କହିଲେ—'ଦୁର୍ବାର ଯୁଦ୍ଧ କଲେ ଲଙ୍କାଧିପତି ରାବଣ । ସମୁଦ୍ରରେ ବନ୍ଧ ବାନ୍ଧି ଅନେକ କଷ୍ଟ ସହି ଯୁଦ୍ଧ କଲି । ଦଶାନନକୁ ଅବଶେଷରେ ବଧ କଲି ।'

ବୈଦେହୀ ସ୍ୱାମୀଙ୍କ ପ୍ରଶଂସାରେ ମୋହିତ ହୋଇଥାନ୍ତି । ମାତ୍ର ତାଙ୍କ ମନରେ ଖଳ ମଧ୍ୟ କାଳେ ଆସ୍ଥାନ ଜମାଇଛି । ବୈଦେହୀ ଶ୍ରୀରାମଙ୍କ ପ୍ରୌଢ଼ି ଶୁଣି ଉପହାସ କରି ହସି ଉଠିଲେ । କହିଲେ—"ତମେ କେଉଁଦିନ ଲଙ୍କାର ରାବଣକୁ ବଧ କଲ ? କାର୍ଯ୍ୟ ନକରି ସେକଥା କରିଛ ବୋଲି କପରି କହୁଛ ? ପ୍ରଭୁ ! ଏପରି ଆତ୍ମପ୍ରଶଂସା ତୁମକୁ ଶୋଭା ଦିଶୁନାହିଁ ।"

ଶ୍ରୀରାମ ଜାନକୀଙ୍କ ଉପହାସଭରି ବାକ୍ୟରେ ଆହତ ହୋଇ ବଶିଷ୍ଠଙ୍କୁ କହିଲେ—"ମୁଁ ଏତେ କଷ୍ଟରେ ଲଙ୍କାର ରାବଣକୁ ବଧ କଲି । ଅଥଚ ଜାନକୀ ସେକଥା ସ୍ୱୀକାର କରୁନାହାନ୍ତି । ଜାନକୀ ଅଶୋକବନରେ ବନ୍ଦିନୀ ଥିବାବେଳେ, କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ, ରାବଣ ସମସ୍ତେ ମୋର ଶ୍ରେ-ଘାତରେ ଧରାଶାୟୀ ହେଲେ । ସ୍ୱର୍ଣ୍ଣ ଲଙ୍କାକୁ ଧ୍ୱଂସକରି ଜାନକୀଙ୍କୁ ଉଦ୍ଧାର କରିବାପାଇଁ ମୁଁ କ'ଣ ବା କଷ୍ଟ ନ କରିଛି ଅଥଚ ଜାନକୀ ମତେ ପରିହାସ କରୁଛନ୍ତି ।"

ଶ୍ରୀରାମ ବଚନ ଶୁଣି ଜାନକୀ ହସି ହସି କହିଲେ—ମୁଁ ନ ମାରିଥିଲେ ଲଙ୍କାର ରାବଣକୁ କିଏ ବା ଜୟକରି ପାରିଥାନ୍ତା ? ହେ ରଘୁବୀର ! ମୋ ସହାୟତାରେ ତୁମେ ଲଙ୍କାର ଦଶାନନକୁ ବଧକରି ନିଜେ ଯଶସ୍ୱୀ

ବୋଲଉଛ । ଯଦି ତୁମର ଏପରି ଶକ୍ତି ଅଛି ତେବେ ବଲଙ୍କାର ରାବଣ ସହସ୍ରାନନକୁ ଏକା ଏକା ଯାଇ ବଧକର ।

ରାବଣ ଦଶାନନ ସିନା ଦେବତାମାନଙ୍କୁ ଭୟଭୀତ କରାଇ ରଖିଥିଲା, ସହସ୍ରାନନ ତ ଦେବତାମାନଙ୍କୁ ପାଦରେ ଖଟାଉଛି । ଦେବତାଙ୍କୁ ପାଦରେ ବାନ୍ଧି ସ୍ନାନ କରୁଛି । ଯମଦେବ ତା'ର ବାଡ଼ ଜଗନ୍ତି, କୁବେରଦେବ ମଇଳାଲୁଗା କାଚନ୍ତି, ସବୁ ଦେବତା ତା' ପାଦରେ ଖଟନ୍ତି । ତାକୁ ମାରି ଦେବତାଙ୍କୁ ମୁକ୍ତକର ଓ ଯଶସ୍ୱୀ ହୁଅ ।'' ସୀତାଙ୍କ ମୁଖରୁ ବଲଙ୍କାର ରାବଣ ସହସ୍ରଶିରା, ତା'ର ଭାଇ ଵିଂଶିରା, ମନ୍ତ୍ରୀ ସପ୍ତଶିରା, ପୁଅ ଶତଶିରାଙ୍କର ଅତ୍ୟାଚାର କାହାଣୀ ଶୁଣି ଓ ସୀତାଙ୍କର ତାଙ୍କ ଶକ୍ତି-ପରୀକ୍ଷା ପାଇଁ ଆହ୍ୱାନ ଶୁଣି ଶ୍ରୀରାମ ଘନଘନ କମ୍ପିବାକୁ ଲଗିଲେ । ସଙ୍ଗେ ସଙ୍ଗେ ସେ ରାଜ୍ୟ, ସଂସାର, ମାତା, ଭ୍ରାତା, ପତ୍ନୀ ଏବଂ ସେବକ ହନୁମାନଙ୍କୁ ଛାଡ଼ି ବଲଙ୍କା ଅଭିମୁଖେ ବାହାରିଗଲେ । ସଙ୍ଗରେ ସୈନ୍ୟସାମନ୍ତ ମଧ୍ୟ ନେଲେ ନାହିଁ । ଅଯୋଧ୍ୟାରେ ପୁନର୍ବାର ହାହାକାର ପଡ଼ିଲା । ସମସ୍ତେ ଭାବିଲେ ଜାନକୀ ଭିଆଣ ବାହାର କଲେ । ଏବେ ସମ୍ଭାଳନ୍ତୁ । ସହସ୍ରଶିରା ରାବଣକୁ ଏକା ଏକା ମାରିବା ରାମଙ୍କ ପକ୍ଷରେ ଯଦି ସମ୍ଭବ ନହୁଏ ତେବେ ପରିସ୍ଥିତି ଭୟାନକ ହେବ । ସେତେବେଳେ ଜାନକୀ ହିଁ କ୍ଷତଗ୍ରସ୍ତା ଓ ଦୁଃଖିତା ହେବେ । ଯଦି ଶ୍ରୀରାମ ବଲଙ୍କା ରାବଣ ହାତରେ···

ଅଯୋଧ୍ୟାରେ ଜନସାଧାରଣଙ୍କର କାନ୍ଦର ରୋଳ ନଥମୁଣ୍ଡ ପତ୍ନୀଙ୍କ ଉପହାସରେ ବ୍ୟଥିତ ରାମଚନ୍ଦ୍ର ଯାଇ ବଲଙ୍କା ପୁରୀରେ ପହଞ୍ଚିଲେ । ମାତ୍ର ରାବଣଠୁ ବଳି ବଲଙ୍କାପୁରୀର ସେନାବଳ, ତନ୍ତ୍ରବଳ, ଧନ, ସମ୍ପଦ ଓ ଅତ୍ୟାଚାର । ଶ୍ରୀରାମ ଆତ୍ମଗୋପନ କରି ରହିଲେ ।

ହନୁମନ୍ତ ବୀର ସୀତାଙ୍କଠାରୁ ରାମଙ୍କ ବଲଙ୍କା ଯାତ୍ରାର ସମ୍ବାଦ ପାଇ ବଲଙ୍କାରେ ପହଞ୍ଚିଲା । ନିକର ଭକ୍ତ ଅନୁଗତ ପରମ ସେବକ ହନୁମାନ୍ ସହ ମିଶି ଶ୍ରୀରାମଚନ୍ଦ୍ର ବଲଙ୍କାର ରାବଣ ସହସ୍ରାନନକୁ ବଧ କରିବାର ନାନା ରଣନୀତି ଅବଲମ୍ବନ କଲେ ପ୍ରଭୁ ରଘୁବୀର । ମାତ୍ର ବଲଙ୍କା ରାବଣ ଲଙ୍କାର ରାବଣଠୁ ସହସ୍ରଗୁଣ ଶକ୍ତିଶାଳୀ ଓ ମାୟାବୀ ଥିଲା । ପ୍ରତିଥର ରାବଣର ହିଁ ଜୟ ହେଲା, କିନ୍ତୁ ପ୍ରଭୁ ରାମଚନ୍ଦ୍ର ଓ ହନୁମାନ ମଧ୍ୟ ପ୍ରତିଥର

ତା'ର ମାୟାଜାଲରୁ ନିଜକୁ ରକ୍ଷା କରିବାକୁ ସକ୍ଷମ ହେଉଥିଲେ । ଅନିର୍ଦ୍ଦିଷ୍ଟ କାଳ ପାଇଁ ବିଲଙ୍କାପୁରରେ ଯୁଦ୍ଧ ଚାଲିଲା । ଏଣେ ଅଯୋଧ୍ୟା ଶ୍ରୀରାମ ବିହୁନେ ଶ୍ରୀହୀନ ଦିଶିଲା ।

ଦେବଗଣ, ରାମ ଏବଂ ବିଲଙ୍କା ରାବଣର ଘୋର ଯୁଦ୍ଧ ଦେଖି ତଟସ୍ଥ ହୋଇଗଲେ । ଅଥଚ ବିଲଙ୍କା ରାବଣର ମୃତ୍ୟୁ ଅସମ୍ଭବ ମନେ ହେଲା । ଶ୍ରୀରାମ ସ୍ଥିରକଲେ ବିଲଙ୍କା ରାବଣକୁ ମାରି ନ ପାରିଲେ ସେ ଆଉ ଜାନକୀଙ୍କୁ ମୁହଁ ଦେଖାଇବେ ନାହିଁ ଓ ଅଯୋଧ୍ୟା ଫେରିବେ ନାହିଁ ।

ଶ୍ରୀରାମଙ୍କର ପରାଜୟକୁ ଦେବଗଣ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହଁନ୍ତି । ଯଦି ଶ୍ରୀରାମଙ୍କ ଦ୍ୱାରା ସହସ୍ରଶିରା ବଧ ନହେବ, ତେବେ ଦେବ-ଦେବଗଣଙ୍କର ବିପତ୍ତି ଦୂର କରିବ କିଏ ? ଦେବଗଣ ଶ୍ରୀରାମଙ୍କ ପାଦ ତଳେ ନତଶିର ହୋଇ ଗୁହାରି କଲେ—'ହେ ରାବଣାରି ରଘୁବୀର, ତୁମେ ଦେବଗଣଙ୍କୁ ସହସ୍ରଶିର କବଳରୁ ରକ୍ଷାକର । ଆମେ ଜାଣି ପାରିଲୁଣି ଯେ ଦେବୀ ଜାନକୀ ହେଉଛନ୍ତି ଆପଣଙ୍କର ଶକ୍ତି । ଆପଣ ତାଙ୍କର ସତୀତ୍ୱ ପରୀକ୍ଷା କରିଛନ୍ତି—ମାତ୍ର ଶକ୍ତି ପରୀକ୍ଷା କରିନାହାନ୍ତି । ଶକ୍ତି ପରୀକ୍ଷାର ବେଳ ଏବେ ଉପସ୍ଥିତ । ଜାନକୀ ଏଠାକୁ ନ ଆସିଲେ ଆପଣ ଶକ୍ତିହୀନ ହୋଇ ବାରମ୍ବାର ସହସ୍ରଶିରା ପାଖରୁ ପରାଜୟ ଲଭୁଥିବେ । ତେଣୁ ଜାନକୀଙ୍କୁ ଏଠାକୁ ଆଣି ତାଙ୍କ ଶକ୍ତିରେ ଶକ୍ତିମୟ ହୋଇ ଦାନବ ବଧ କରନ୍ତୁ ଓ ଦେବଗଣଙ୍କୁ ରକ୍ଷା କରନ୍ତୁ ।' ଦେବଗଣଙ୍କଠାରୁ ଶକ୍ତି ରହସ୍ୟ ଶୁଣି ଶ୍ରୀରାମ ବିଚଳିତ ହେଲେ ଓ କହିଲେ—'ହେ ଦେବଗଣ ! ମୁଁ ଜାଣିଲି ଯେ ମୋର ବଡ଼ପଣ ଏଥର ଗଲା । ଜାନକୀଙ୍କ ଆଗରେ ମୁଁ ପ୍ରତିଜ୍ଞା କରି ଆସିଛି ଯେ ବିଲଙ୍କା ରାବଣକୁ ଏକା ବଧ କରିବି । ଏବେ କେଉଁ ମୁହଁରେ ଯାଇ ଜାନକୀ ବରଣ କରିବି ? ବରଂ ମୁଁ ବନବାସୀ ହୋଇ ରହିବି କିମ୍ବା ସମୁଦ୍ରରେ ଝାସ ଦେବି ।' ଦେବଗଣ ଶ୍ରୀରାମଙ୍କ ଉକ୍ତିରେ ଚକିତ ହୋଇ ଗଲେ ଏବଂ ଜାନକୀଙ୍କୁ ବିଲଙ୍କା ବରଣ କରିବାର ଉପାୟ ଚିନ୍ତାକଲେ । ସରସ୍ୱତୀଙ୍କ ମଧ୍ୟସ୍ଥତାରେ ଶ୍ରୀରାମଙ୍କ ସହ ପରାମର୍ଶ କରି ସ୍ଥିର ହେଲା, ହନୁମନ୍ତ ଜାନକୀଙ୍କୁ ଯାଇ ଶ୍ରୀରାମଙ୍କ ବାର୍ତ୍ତା ଦେବ । ବିଲଙ୍କାରେ ରାମଙ୍କର ଯୁଦ୍ଧ ଓ ପରାଜୟର ବାର୍ତ୍ତା ଶୁଣିଲେ ଜାନକୀ ବିଲଙ୍କା ଆସିବାକୁ ସମ୍ମତ

ହେବେ । ଜାନକୀ ଆସିଲେ ତାଙ୍କ ସଙ୍ଗେ ଲକ୍ଷ୍ମଣ କୁମାର ମଧ୍ୟ ଆସିବେ ରାମ ଲକ୍ଷ୍ମଣ ସୀତା ଏକତ୍ର ହେଲେ ଯାଇ ସହସ୍ରଶିରାର ନିଧନ ସମ୍ଭବ ହେବ ।

ଶ୍ରୀରାମଙ୍କର ଆଜ୍ଞାପାଇ ହନୁମନ୍ତ ଅଯୋଧ୍ୟା ନଗରରେ ପହଞ୍ଚିଲେ । ଲଙ୍କାର ସମସ୍ତ ସନ୍ଦେଶ ସତୀ ଜାନକୀଙ୍କୁ ଦେଲେ । ଶ୍ରୀରାମଙ୍କ ବିଷମ ସନ୍ଦେଶ ଶୁଣି ଶୁଣି ବଡ଼ ପ୍ରଭାତ ହୋଇଗଲା । ଦେବୀ ଜାନକୀ ସ୍ନାନ ସାରି ସୁବେଶ ହେଲେ । ଅଳଙ୍କାରମାନ ମଣ୍ଡିତ ହେଲେ, ଦିବ୍ୟ ବସନ ପରିଧାନ କଲେ—ଦିବ୍ୟ ରୂପଧର ଶାସ୍ତ୍ରମାନଙ୍କୁ ପ୍ରଣମିତ ହୋଇ ବିମାନ ଆରୋହଣ କଲେ । ଲକ୍ଷ୍ମଣ କୁମାରଙ୍କୁ ସଙ୍ଗତରେ ନେଇ ଲଙ୍କା ପୁରକୁ ବେଗେ ଉଡ଼ିଗଲେ ।

ଶ୍ରୀରାମଙ୍କ ସହ ସାକ୍ଷାତ ମାତ୍ରକେ ସୌମିତ୍ରୀ ବେଦକର ଯୋଡ଼ି କହିଲେ—'ତୁମ ବିହୁନେ ଅଯୋଧ୍ୟା ଅନ୍ଧକାରମୟ ଲାଗୁଛି । ତୁମକୁ ନ ଦେଖି ପ୍ରଜାଗଣ ଦେଖିବାକୁ ବଡ଼ ବ୍ୟାକୁଳ ହେଉଛନ୍ତି । ତୁମେ ଅଯୋଧ୍ୟାକୁ ଶୀଘ୍ର ଫେରିଚାଲ ।' ଶ୍ରୀରାମ ମ୍ଲାନମୁଖରେ କହିଲେ—'କଣ କରିବାରେ ସୌମିତ୍ରୀ ! ଦୈତ୍ୟ ସଙ୍ଗେ ମୋର ଘୋର ସମର ହେଲା । ପୁତ୍ର ନାତି ସହିତେ ମୁଁ ସମସ୍ତଙ୍କୁ ମାରିଲି । ଏକା ସେ ଦୈତ୍ୟକୁ ମୁଁ ମାରିପାରିଲି ନାହିଁ ।' ଶ୍ରୀରାମଙ୍କ କଥା ଶୁଣି ଜାନକୀ କହିଲେ—'ସେ ଦୈତ୍ୟ ଏପରି କି ଯୋଦ୍ଧା ଯେ ତୁମେ ତାକୁ ମାରିପାରିଲ ନାହିଁ ? ତୁମକୁ ପୁଣି ସେ ଏତେ କଷ୍ଟ ଦେଲା ? ଜଣାଯାଉଛି ଦୁଷ୍ଟର କାଳ ପୂରିଲାଣି । ତୁମ ହାତରେ କାଳି ସେ ନିଶ୍ଚିତ ମୃତ୍ୟୁ ଲଭିବ ।'

ସତୀଙ୍କୁ ଦର୍ଶନ କରି ଓ ତାଙ୍କଠାରୁ ଉତ୍ସାହବାଣୀ ଶୁଣି ଶ୍ରୀରାମ ପୁନର୍ବାର ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ମାତ୍ର ସହସ୍ରଶିରା ରାମଚନ୍ଦ୍ରଙ୍କଠାରୁ ଯୁଦ୍ଧର ଆହ୍ୱାନ ପାଇ ସଙ୍ଗେ ସଙ୍ଗେ ଯୁଦ୍ଧକ୍ଷେତ୍ରକୁ ଆସିଲା ନାହିଁ । ନିଜର ଜ୍ଞାତି କୁଟୁମ୍ବଙ୍କୁ ପ୍ରଥମେ ଯୁଦ୍ଧକ୍ଷେତ୍ରକୁ ପଠାଇଲା । ସେମାନଙ୍କର ମୃତ୍ୟୁପରେ ନିଜେ ଯୁଦ୍ଧକ୍ଷେତ୍ରକୁ ପ୍ରବେଶ କଲା । ମାତ୍ର ବୀରତ୍ୱ ଅପେକ୍ଷା ଅସୁରର ମାୟା ଶକ୍ତି ଯେ ବଳୟାନ ଏକଥା ଦେବଗଣଙ୍କୁ ଅଗୋଚର ରହିଲା ନାହିଁ । ମାୟାକୁ ମାୟାହିଁ ଖଣ୍ଡନ କରିପାରିବ । ତେଣୁ ଦେବଗଣ ସ୍ନାନସାରି ସତୀ

ଜାନକୀଙ୍କୁ ଅନୁରୋଧ କଲେ ଯୁଦ୍ଧଭୂମିରେ ପଦାର୍ପଣ କରିବା ପାଇଁ । ଦେବଗଣ ସ୍ତୁତିରେ ବିଚଳିତ ହୋଇ ଦେବୀ ଜାନକୀଙ୍କ ହୃଦୟରେ କରୁଣା ଉଦ୍ରେକ ହେଲା । ବିଲଙ୍କା ରାବଣର ଅତ୍ୟାଚାରରୁ ଦେବଗଣଙ୍କୁ ରକ୍ଷା କରିବା ପାଇଁ ଦେବୀ ଜାନକୀ ଉପାୟ ଚିନ୍ତିଲେ ।

ପ୍ରଭାତରୁ ସମୁଦ୍ର ସ୍ନାନସାରି ଦେବୀ ଜାନକୀ ସର୍ବମଙ୍ଗଳା ଅଧିଷ୍ଠାତ୍ରୀ ମହାମାୟାଙ୍କୁ ସ୍ମରଣ କଲେ । ଦେବୀ ଦୁର୍ଗାଙ୍କୁ ବହୁତ ସ୍ତୁତିକରି ସେ ସହସ୍ର ଶିରାକୁ ବଧ କରିବାର ଉପାୟ ମାଗିଲେ ।

ଜାନକୀଙ୍କ ସ୍ତୁତିରେ ଦେବୀଙ୍କର ଆସନ କମ୍ପିଲା । ଦେବୀ ସିଂହାସନରେ ବିଜେକରି ଜାନକୀଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ପୁଷ୍ପ ଧନୁ ପଞ୍ଚଶର ଦେବୀ ଜାନକୀଙ୍କ ହାତକୁ ବଢ଼ାଇଦେଲେ । ଦୁର୍ଗାଙ୍କୁ ନମସ୍କାର କରି ଜାନକୀ ପଞ୍ଚଶରକୁ ବସନ ଭିତରେ ଲୁଚାଇ ରଖିଲେ । ଚତୁରସେନକୁ ନେଇ ରଥରେ ବିଜେକରି ସଂଗ୍ରାମ ଭୂଇଁରେ ପ୍ରବେଶ କଲେ । ସେତେବେଳକୁ ଅସୁର ହନୁମାନ ଓ ଶ୍ରୀରାମଙ୍କ ସହ ଘୋର ସଂଗ୍ରାମ କରୁଛି । ଅସୁର ଶ୍ରୀରାମଙ୍କର ପାଞ୍ଚଲକ୍ଷ ଶରକୁ ଗିଳିଦେଲା । ଲକ୍ଷ୍ମଣ ଦଶଲକ୍ଷ ବାଣ ବିନ୍ଧିଲେ । ସବୁ ବାଣ ଦୈତ୍ୟ ଦେହରେ ବାଜି ଚୂର୍ଣ୍ଣ ହୋଇଗଲା ।

ଜାନକୀ ଦୈତ୍ୟର ମାୟା ଦେଖି ମହାପ୍ରକୋପ କଲେ । ଅସୁରୀ ମାୟାକୁ କବଳିତ କରି ରୂପର ମାୟା ବିସ୍ତାର କଲେ । ଅପୂର୍ବ ମୂର୍ତ୍ତି ଧରି ଦେବୀ—'ରେ-ରେ-ଅସୁର' ବୋଲି ଆହ୍ୱାନ ଦଅନ୍ତେ ଅସୁର ତାଙ୍କୁ ଗୁହାଁରି ଦେଲା । ଦେବୀ ନବଯୌବନ ଦେଖାଇଦେବା ମାତ୍ରେ ଅସୁର ମୋହଗ୍ରସ୍ତ ହୋଇଗଲା । ଦେବୀ ଏହି ଅବସରରେ ପଞ୍ଚ ପୁଷ୍ପଶର ବସନ ଭିତରୁ କାଢ଼ି ଅସୁର ଉପରକୁ ନିକ୍ଷେପ କଲେ । ଦୈତ୍ୟର ଶରୀରକୁ କନ୍ଦର୍ପ ଦହିଲା । ବେଳକୁବେଳ ସେ ଆତୁର ହେଲା । ଯୁଦ୍ଧର ଗୁରୁତ୍ୱ ଭୁଲି ଜାନକୀଙ୍କୁ ଗୁହାଁରି ଆତୁର ପ୍ରଶ୍ନ କଲା—'ହେ ସୁନ୍ଦରୀ ! ତୁ ମୋର ଭାର୍ଯ୍ୟା ହେବୁ କି ? ଶ୍ରୀରାମ ପାଖରେ ରହି ତୁ କି ସୁଖ ପାଇବୁ ? ବିଲଙ୍କାପୁରୀରେ ତୁ ଅପୂର୍ବ ସୁଖ ପାଇବୁ ।'

ଜାନକୀ କପଟ କରି କହିଲେ—'ତେବେ ଶ୍ରୀରାମଙ୍କୁ ବଧ କର । ତେବେ ଯିନା ମୁଁ ତୋର ଭାର୍ଯ୍ୟା ହେବି ।' କାମୁକ ଅସୁର ରାମଙ୍କୁ ଗୁହାଁରି

# ବିଲଙ୍କା ରାବଣ ବଧ

ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ

ପ୍ରଭୁ ରାମଚନ୍ଦ୍ର ରାବଣ ବଧ କରି ଏବଂ ସତୀ ସୀତାଙ୍କୁ ଉଦ୍ଧାର କରି ଅଯୋଧ୍ୟା ଫେରି ଆସିଲେ । ମକର ଶୁକ୍ଳ ଦ୍ୱାଦଶୀ ରବିବାର ଦିନ ତେର ଘଡ଼ି ସମୟରେ ରାଜ୍ୟାଭିଷେକ ହେବାର କଥା, ଗୁରୁ ବଶିଷ୍ଠ ଠିକଣା କରି ଦେଲେ । ସମସ୍ତେ ଆନନ୍ଦବିଭୋର ହେଲାବେଳେ ସ୍ୱର୍ଗରେ କାନ୍ଦବୋବାଳି ପଡ଼ିଗଲା । ଯମ କହିଲେ, କେତେଦିନ ଆଉ ମୁଁ ସହସ୍ରଶିର ରାବଣର ବାଡ଼ି ଚାଟି ଖଟିବି । ପରେ ପରେ ବ୍ରହ୍ମା, କୁବେର, ବୃହସ୍ପତି, ଅପ୍ସରାମାନେ ସମସ୍ତେ ନିଜ ନିଜ ଦୁର୍ଗତି ବଖାଣିଗଲେ । ଶ୍ରୀରାମଙ୍କ ଛଡ଼ା ଅନ୍ୟ ଗତି ନାହିଁ । ବିଧାତା କହିଲେ, ରାଜଗାଦିରେ ବସିଗଲା ପରେ ସେ ଆଉ ଏ ପଙ୍କରେ ପଶିବେ କାହିଁକି ? ଶେଷରେ ଖଳ ଓ ଦୁର୍ବଳକୁ ପଠାଗଲା ମତି ଭ୍ରମ କରିବା ପାଇଁ । ଖଳ ଜାନକୀଙ୍କ କଣ୍ଠରେ ଏବଂ ଦୁର୍ବଳ ଶ୍ରୀରାମଙ୍କ କଣ୍ଠରେ ବସିଗଲେ । ପ୍ରଭୁ ରାମଚନ୍ଦ୍ର ଯେ ସମସ୍ତ କୃତିତ୍ୱ ଅନ୍ୟଙ୍କୁ ଦେଇ ଦିଅନ୍ତି ସେ ଆପଣା ବଡ଼େଇ କରି କହିଲେ ମୁଁ ସବୁ କରିଛି । ସୀତା ଯେ ପତିଗତା-ପ୍ରାଣା ସେ ଶ୍ରୀରାମଙ୍କୁ ଶ୍ଳେଷକରି କହିଲେ, ରାବଣ ମାରିଲ ମୁଁ, କଷ୍ଟ ସହିଲ ମୁଁ, ତୁମେ କିଛି ନ କରି ବାହାଦୁରି ନେଉଛ କିପରି ? ସତରେ ଯଦି ଏତେ ପାରିବାର ତେବେ ବିଲଙ୍କା ରାବଣକୁ ମାରି ଦେଖାଇଦିଅ । ଦୁନିଆ ଜାଣିବ ତୁମେ ସତରେ ଗୋଟେ ବୀର । ଯାହାଙ୍କୁ କୌଣସି ଦୁଃଖ ବାଧେ ନାହିଁ ତାଙ୍କୁ କଥାଟା ବାଧିଗଲା—ଦୁର୍ବଳ କଣ୍ଠରେ ବସିଛି ଯେ ! ଅଭିଷେକ ସେଇଠି ବନ୍ଦ କରାଇ ରାମଚନ୍ଦ୍ର ଏକା ଏକା ଖାଲି ପାଦରେ

କହିଲ —'ତୋତେ ମାରି ମୁଁ ସୀତାକୁ ହରିବି । ଏଥର ମୃତ୍ୟୁକୁ ସ୍ମରଣ କର ।' ଏତିକ କହି ସେ କାମବାଣରେ ଜର୍ଜରିତ ଦୁର୍ବଳ, କମ୍ପିତ ଶରୀର ନେଇ ରାମଙ୍କ ଉପରକୁ ଡେଇଁ ପଡ଼ିଲା । ଏଇ ସୁଯୋଗରେ ରଘୁବୀର କୋଦଣ୍ଡ ଧରି ତାକୁ ହତ୍ୟା କଲେ । ଅସୁରମାରି କୋଦଣ୍ଡ ରୂପଧାରୀ ରାମ ଘନ ଘନ ନିଃଶ୍ୱାସ ଛାଡ଼ି ଦେବଗଣଙ୍କୁ ଡାକିଲେ—'ଲୁହା ମଇ ଆଣ । ଆଜ ବଳଙ୍କା ଭୁବନକୁ ଲୁହାମଇ ବୁଲାଇବ ।' ଦେବତାଗଣ ଲୁହା ମଇ ଆଣି ଦେଲେ । ଦୁଇଟି ବୃଷଭ ଦୁଇପଟେ ଯୋଚି ଲୁହା ମଇରେ ଜାନକୀଙ୍କୁ ଘେନି ବସି ବଳଙ୍କା ଭୁବନରେ ମଇ ବୁଲାଇଲେ । ଖାଲଖମା ସବୁ ସମତୁଲ କଲେ । ଦୈତ୍ୟର ଗଣ୍ଡିମୁଣ୍ଡ ନେଇ ସମୁଦ୍ରରେ ପକାଇଲେ ।

ଲଙ୍କାର ଦଶାନନ ଦେବୀ ବୈଦେହୀଙ୍କର ସତୀତ୍ୱ ପରୀକ୍ଷା କରାଇ ଥିଲା, ବଳଙ୍କାର ସହସ୍ରଶିରା ଦେବୀଙ୍କର ଶକ୍ତିପରୀକ୍ଷା କରାଇଲା । ଦେବଗଣ ପୁଷ୍ପବୃଷ୍ଟି କରୁ କରୁ କହିଲେ—'ରାମ ଏବଂ ସୀତାଙ୍କ ସମନ୍ୱିତ ଶକ୍ତି ହିଁ ସୃଷ୍ଟିକୁ ବିନାଶ ପଥରୁ ରକ୍ଷାକରେ, କାରଣ ସେମାନେ ଭିନ୍ନ ଶରୀର ଧରିଥିଲେ ମଧ୍ୟ ଏକାତ୍ମ ।

# ବିଲଙ୍କା ରାବଣ ବଧ

**ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ**

ପ୍ରଭୁ ରାମଚନ୍ଦ୍ର ରାବଣ ବଧ କରି ଏବଂ ସତୀ ସୀତାଙ୍କୁ ଉଦ୍ଧାର କରି ଅଯୋଧ୍ୟା ଫେରି ଆସିଲେ । ମକର ଶୁକ୍ଳ ଦ୍ୱାଦଶୀ ରବିବାର ଦିନ ତେର ଘଡ଼ି ସମୟରେ ରାଜ୍ୟାଭିଷେକ ହେବା କଥା, ଗୁରୁ ବଶିଷ୍ଠ ଠିକଣା କରି ଦେଲେ । ସମସ୍ତେ ଆନନ୍ଦବିଭୋର ହେଲାବେଳେ ସ୍ୱର୍ଗରେ କାନ୍ଦବୋବାଳି ପଡ଼ିଗଲା । ଯମ କହିଲେ, କେତେଦିନ ଆଜି ମୁଁ ସହସ୍ରଶିର ରାବଣର ବାଡ଼ି ଛାଟି ଖଟିବି । ପରେ ପରେ ବ୍ରହ୍ମା, କୁବେର, ବୃହସ୍ପତି, ଅପ୍ସରାମାନେ ସମସ୍ତେ ନିଜ ନିଜ ଦୁର୍ଗତି ବଖାଣିଗଲେ । ଶ୍ରୀରାମଙ୍କ ଛଡ଼ା ଅନ୍ୟ ଗତି ନାହିଁ । ବିଧାତା କହିଲେ, ରାଜଗାଦିରେ ବସିଗଲା ପରେ ସେ ଆଉ ଏ ପଙ୍କରେ ପଶିବେ କାହିଁକି ? ଶେଷରେ ଖଳ ଓ ଦୁର୍ବଳଙ୍କୁ ପଠାଗଲା ମତି ଭ୍ରମ କରିବା ପାଇଁ । ଖଳ ଜାନକୀଙ୍କ କଣ୍ଠରେ ଏବଂ ଦୁର୍ବଳ ଶ୍ରୀରାମଙ୍କ କଣ୍ଠରେ ବସିଗଲେ । ପ୍ରଭୁ ରାମଚନ୍ଦ୍ର ଯେ ସମସ୍ତ କୃତିତ୍ୱ ଅନ୍ୟଙ୍କୁ ଦେଇ ଦିଅନ୍ତି ସେ ଆପଣା ବଡ଼େଇ କରି କହିଲେ ମୁଁ ସବୁ କରିଛି । ସୀତା ଯେ ପତିଗତା-ପ୍ରାଣା ସେ ଶ୍ରୀରାମଙ୍କୁ ପ୍ରେଟକରି କହିଲେ, ରାବଣ ମାରିଲି ମୁଁ, କଷ୍ଟ ସହିଲି ମୁଁ, ତୁମେ କିନ୍ତୁ ମିଛକରି ବାହାଦୁରୀ ନେଉଛ କିପରି ? ସତରେ ଯଦି ଏତେ ପାରିବାର ତେବେ ବିଲଙ୍କା ରାବଣକୁ ମାରି ଦେଖାଇଦିଅ । ଦୁନିଆ ଜାଣିବ ତୁମେ ସତରେ ଗୋଟେ ବୀର । ଯାହାଙ୍କୁ କୌଣସି ଦୁଃଖ ବାଧେ ନାହିଁ ତାଙ୍କୁ କଥାଟା ବାଧିଗଲା—ଦୁର୍ବଳ କଣ୍ଠରେ ବସିଛି ଯେ ! ଅଭିଷେକ ସେଇଠି ବନ୍ଦ କରାଇ ରାମଚନ୍ଦ୍ର ଏକା ଏକା ଚାଲି ପାଦରେ

ବାହାରିଗଲେ । ହନୁ ମଧ୍ୟ ନାହିଁ—ସେ ସେତେବେଳେ ଯକ୍ଷ ଧାମରେ ବାହାରକୁ ଯାଇଛି ।

ଦେବତାଙ୍କ ଆନନ୍ଦ କହିଲେ ନସରେ । ବ୍ରହ୍ମା ପବନକୁ ପଠେଇ ଶ୍ରୀରାମଙ୍କୁ ଉଡ଼େଇ ନେଇ ବଳଙ୍କା ନିକଟ ପ୍ରଚଣ୍ଡ ପର୍ବତରେ ପହଞ୍ଚାଇ ଦେଲେ । ଶ୍ରୀରାମ ନଗରର ଶୋଭା ଦେଖି ଦୁଃଖ କଲେ; କାହିଁକି ଏ ଅସୁର ଦେବ ବୈରୀ ହେଲା । ସବୁ ଧ୍ୱଂସ ହୋଇଯିବ । ପାଦୁକା ମନ୍ତ୍ର ବଳରେ ଅସୁର ଦରବାରରେ ପହଞ୍ଚି ଯୁଦ୍ଧ ମାଗିଲେ । ଅସୁର ଉପହାସରେ ତାଙ୍କୁ ମାରିଦେଲା । ସେ ପବନରେ ଶ୍ରୀରାମ ସତୁରି ଯୋଜନ ଦୂରେ ବୁଢ଼ା ଗଣ୍ଡକୀ କୂଳରେ ପଡ଼ିଲେ । ସେଠା ପାଇ ତପସ୍ୟାରେ ବସିଗଲେ । ସ୍ୱର୍ଗରେ ହାହାକାର ପଡ଼ିଗଲା ।

ଏଣେ ହନୁ ଫେରିଆସି ସୀତାଙ୍କଠାରୁ ବୁଝିଲା, ପ୍ରଭୁ ବଳଙ୍କା ଗଲେଣି । ସେ ମଧ୍ୟ ସେଇକ୍ଷଣି ବାହାରି ପଡ଼ିଲା । ପବନ ସହାୟତାରେ ଆସି ପ୍ରଚଣ୍ଡ ପର୍ବତରେ ପହଞ୍ଚିଲା । କିନ୍ତୁ ରାମ ସେଠି ନାହାନ୍ତି । ଅସୁର ଗଡ଼କୁ ଆଜ୍ଞା ଚାଲିଗଲେ କି ବୋଲି ଭାବି ବାଉନ୍ନ ରୂପଧରି ଛିଦ୍ରରେ ଗଡ଼ ଭିତରେ ପଶିଲା । ରାଜାର କୋଠରୀରେ ମନ୍ତ୍ରୀ ସହ ପରାମର୍ଶ ଶୁଣିଲା । ଅସୁର କହିଲା, ଆରେ ରାମ ବୋଲି କଏ ଗୋଟେ ଆସିଥିଲା—ଗଲା କୁଆଡ଼େ ? ସେ କାହିଁକି ମୋର ବୈରୀ ହେଉଛି, ମୁଁ ତ ତା'ର କିଛି ଅନିଷ୍ଟ କରିନାହିଁ । ମନ୍ତ୍ରୀ ଚିତ୍ରଶିର କହିଲା, ମହାରାଜ ! ସେ ସ୍ୱୟଂ ବିଷ୍ଣୁ—ଚାଲନ୍ତୁ ତାଙ୍କ ଶରଣ ପଶି ସୁଖରେ ରହିବା । ହନୁ ନିଶ୍ଚିତ ହେଲା, ରାମ ଏଠାରେ ଆସି ଅଛନ୍ତି । କିନ୍ତୁ କେଉଁଠି ? ସାତଦିନ ଖୋଜିଲା ପରେ ମଧ୍ୟ ପାଇଲା ନାହିଁ । ଗଡ଼ର ସୁରକ୍ଷା ପାଇଁ ଗୋଟେ ବିଷ ପୋଖରୀ ଏବଂ ଆଉ ଗୋଟେ ପାଣି ପୋଖରୀର ବ୍ୟବସ୍ଥା ଥାଏ । ଗ୍ରାମଦେବତୀ ହନୁକୁ ଶତ୍ରୁ ବୋଲି ଜାଣି ତା' କଣ୍ଠରେ ବସି ତାକୁ ବିଷ ପୋଖରୀ ପାଣି ପିଆଇଦେଲା । ହନୁ ଆମ୍ବଗଛ ତଳେ ଆସି ମରିଗଲା । ମାଂସ ମିଳେଇଯାଇ ହାଡ଼ ଗଦା ରହିଗଲା । ରାମଙ୍କ ତପସ୍ୟାରେ ବ୍ରହ୍ମାଙ୍କ ଆସନ କମ୍ପିଲାରୁ ତାଙ୍କ ପାଖକୁ ପଠାଇବା ପାଇଁ ହନୁକୁ ଖୋଜାହେଲା । ହେଲେ ହନୁ କାହିଁ ? ବୃହସ୍ପତି ପାଞ୍ଜି ଦେଖି କହିଲେ, ଆମ୍ବଗଛ ମୂଳେ ମରି ପଡ଼ିଛି । ପବନ ରାଗି ରୁନ୍ଧି ହେବାରୁ ସୃଷ୍ଟି ନାଶ ହେବାକୁ ବସିଲା । ଇନ୍ଦ୍ର ଯାଇ ଅମୃତ ଢାଳି ଏବଂ

ଯମ ସଞ୍ଜୀବନୀ ମନ୍ତ୍ର ପଢ଼ି ହନୁକୁ ବଞ୍ଚାଇଲେ । ଉଠିପଡ଼ି ହନୁ ପଚାରିଲା, ତୁମେ ସମସ୍ତେ ଏଠି, ପ୍ରଭୁ ରାମଚନ୍ଦ୍ର କାହାନ୍ତି ? ଠିକଣା ନେଇ ସେଠାରେ ଯାଇ ପହଞ୍ଚିଲା । ବହୁତ ସମୟ ପରେ ରାମ ଆଖି ଖୋଲିଲେ । ହନୁ ଆଗରେ ଦୁଃଖ କହିଲେ । ହନୁ କହିଲା, ହତାଶ ହେବାର କଥା ନାହିଁ । ରାଜାଠାରୁ ମନ୍ତ୍ରୀ ବଳପ୍ରାର । ଅସୁରର ମନ୍ତ୍ରୀ ଉଠିଲାଣି । ତେଣୁ ଆପଣ ନିଶ୍ଚୟ ଅସୁରକୁ ମାରିଦେଇ ପାରିବେ । ନଗରବାସୀ କଲିକଲି ହୋଇ ପଳାଇ ଯାଉଥିବାର ଦେଖି ହନୁ ପଚାରି ବୁଝିଲା ଯେ ସହସ୍ରଶିର ରାବଣ ବର୍ଷକରେ ଥରେ ଖାଏ । ସେତେବେଳେ ଯେ ତା'ର ଦୁଇସହସ୍ର ହାତରେ ଅଣ୍ଡାଳି ଯାହା ପାଏ ପାଟିରେ ପୁରାଇଦିଏ । ଆଜି ସେଇଦିନ । ହନୁ ବିଚାର କଲା ଆଜି ତା' ପେଟରେ ପଶି ଅନ୍ତନାଡ଼ି ଛିଣ୍ଡାଇ ତାଂକୁ ମାରିଦେବ । ରାମଙ୍କ ବାରଣ ମାନିଲା ନାହିଁ । କଥା ପେଟ ଭିତରେ ଯାଇ ହାତମାରି ଦେଖିଲା ମେରୁକଳା ପରି ତା' ନାଡ଼ି । ମରି ଜୀର୍ଣ୍ଣ ହୋଇଯିବା ସୁନିଶ୍ଚିତ । ଉପାୟ ନପାଇ ରାମଙ୍କୁ ଭଜନ କଲା । ପେଟରୁ ରାମ ରାମ ଶୁଣି, ଏଇଟା କ'ଣ ଜାଣିବା ପାଇଁ ଅସୁର ହନୁକୁ ବାନ୍ତ କରିଦେଲା । ତା' ସହିତ ଅନ୍ୟ ଜୀବଜନ୍ତୁ ମଧ୍ୟ ବାହାରି ଆସିଲେ । ଦେବତାମାନେ ହନୁ ପ୍ରାର୍ଥନାରେ ତାଙ୍କୁ ବଞ୍ଚାଇ ଦେଲେ । ଅସୁର ଆସନ୍ତା ବର୍ଷ ପାଇଁ ଭୋକ ଉପାସରେ ରହିଲା । ହନୁ ପ୍ରଚଣ୍ଡ ପର୍ବତକୁ ଫେରି ଶ୍ରୀରାମଙ୍କୁ ସବୁ କଥା କହିଲା ।

ପରଦିନ ଦରବାରରେ ଅସୁର ତା'ର ମନ୍ତ୍ରୀ, ଭାଇ, ପୁଅ ଇତ୍ୟାଦିଙ୍କ ଆଗରେ ପ୍ରକାଶ କଲା ଯେ ରାମ ଏ ପର୍ଯ୍ୟନ୍ତ ବିଲଙ୍କାରେ ଅଛି । ତାକୁ ଯେକୌଣସି ପ୍ରକାରେ ମାରିଦେବାକୁ ହେବ ନହେଲେ ସେ ରାକ୍ଷସ କୁଳ ବିନାଶ କରିଦେବ । ଯୁଦ୍ଧ ଯାତ୍ରା ଆରମ୍ଭ ହେଲା । ସମସ୍ତଙ୍କ ଆଗରେ ମନ୍ତ୍ରୀ ସପ୍ତଶିର । ଆଜି ସେ ସେନାପତି । ହନୁ ଦୂରରୁ ଦେଖି ଆଗ ବାହାରିଗଲା—ପଛେ ପଛେ ରାମଚନ୍ଦ୍ର । ହନୁ କେତେବେଳେ ସପ୍ତଶିରକୁ ପଥର ତଳେ ପୋତି ଦେଲଣି ତ କେତେବେଳେ ସେ ହନୁକୁ କାଖତଳେ ଜାକି କାବୁ କରିଦେଲାଣି । ଶେଷରେ ରାମଚନ୍ଦ୍ର ସପ୍ତଶିରର ସାତମୁଣ୍ଡ କାଟିଦେଲେ, ସେ ମରିଗଲା । ସେ ଦିନର ଯୁଦ୍ଧ ଶେଷ ହେଲା ।

ମୃତ୍ୟୁ ଖବର ପାଇ ତା'ର ସ୍ତ୍ରୀ ସୁରେଖା ବିଳାପ କଲା । ସେତେବେଳକୁ ସେ ଦଶମାସ ଗର୍ଭବତୀ । ତା'ର ବିକଳ ସହିନପାରି ପୁଅ

ପେଟ ଭିତରୁ ଫାଟିକରି, ମା' ତୁ ମୋତେ ଜଳନ୍ଧ ଜନ୍ମକର ମୁଁ ରାମକୁ ମାରି ପ୍ରତିଶୋଧ ନେବି । ଜନ୍ମ ହେଉ ହେଉ ସେ ପର୍ବତ ଆକାର ଧାରଣ କଲା । ନାଭି ନାଡ଼କୁ ଅଣ୍ଟାରେ ଗୁଡ଼େଇ ଯୁଦ୍ଧକୁ ବାହାରି ପଡ଼ିଲା । ସେଥିପାଇଁ ତା'ର ନାମ ଦେଲେ ନାଭିଦୈତ୍ୟ । କୌଣସି ଉପକ୍ରମଣିକା ନକରି ସେ ରାମ ଏବଂ ହନୁ ସମେତ ପର୍ବତକୁ ଗିଳିଦେଲା । କିନ୍ତୁ ହନୁ ତା' କାନ ବାଟେ ବାହାରିଆସି ଦେଖିଲା ଶ୍ରୀରାମଚନ୍ଦ୍ର ପେଟ ଭିତରେ ରହିଗଲେ । ସେ ପୁଣି ଅସୁରର ନାକବାଟେ ପଶି କାନବାଟେ ଶ୍ରୀରାମଙ୍କୁ ଧରି ବାହାରି ଆସିଲା । ଅତି ବିରାଟ ହେଲେ ଅସୁରଟି । ନାକତଳେ କ'ଣ ଘଟି ଯାଉଛି ଜାଣିହେବ ନାହିଁ । ଦେବତାମାନେ ସବୁ ଅନର୍ଥର ମୂଳ ବୋଲି ନାଭି ସ୍ୱର୍ଗ ଆଡ଼କୁ ମାଡ଼ିଲା । ଶ୍ରୀରାମ ଶର ମାରି ତା' ବାଟ ବନ୍ଦ କରିଦେଲେ । ସ୍ୱେ ଦୁଇଟା କୁଆଡ଼ୁ ଆସିଲେ କିମ୍ବା ନାଭି ହନୁ ଏବଂ ଶ୍ରୀରାମଙ୍କୁ ଆକ୍ରମଣ କଲା । ଭୀଷଣ ଯୁଦ୍ଧ ହେଲା । କେତେବେଳେ ଅସୁର ପଟ ଭାରି ତ କେତେବେଳେ ଶ୍ରୀରାମଙ୍କର । ଶେଷକୁ ଶ୍ରୀରାମ ଆଉ ପାରିବେ ନାହିଁ ଭାବି ହତାଶ ହୋଇ ବସିଗଲେ । ସେତେବେଳେ ବ୍ରହ୍ମା ଆସି କହିଲେ, ବ୍ରହ୍ମଶର ମାରି ତା' ନାଭି କାଟି ଦିଅନ୍ତୁ । ପ୍ରକୃତରେ ତାହା କଲରୁ ଅସୁର ମରିଗଲା । ନାଭି ସିନା ମଲା କିନ୍ତୁ ବିପଦ ତ ସରିଲା ନାହିଁ । ପୁଅ ମରିବା କଥା ଜାଣି ସୁରେଖା ପଣ କଲା ଛଳେ ବଳେ କଉଶଳେ ଶ୍ରୀରାମଙ୍କୁ ମାରିବ । ଛଳ ହିଁ ଶ୍ରେଷ୍ଠ ଉପାୟ । ପୁରୁଷର ସବୁଠାରୁ ବଡ଼ ଦୁର୍ବଳତା ନାରୀ । ଯେଉଁ କାମ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସମୂହ ଚେଷ୍ଟାରେ ପାରିନାହାନ୍ତି, ତାହା ଜଣେ ସୁନ୍ଦରୀ ଅନାୟାସରେ କରିପାରିବାର ଉଦାହରଣ ଅଛି । ତେଣୁ ସେ ମାୟା ବଳରେ ଏକ ଅତି ସୁନ୍ଦରୀ ଯୁବତୀ ରୂପ ଧରି, ରାମ ଶୁଣିପାରିବା ସ୍ଥାନରେ ଯାଇ ବିଳାପ କଲା । ରୋଦନ ଶୁଣି ଶ୍ରୀରାମ ହନୁମାନକୁ ବୁଝିଆସିବା ପାଇଁ ପଠାଇଲେ । ହନୁ ବୁଝିଲା ଯେ ସେ 'ପୁଣ୍ୟ' ନାମ ରାଜ୍ୟର ରାଜା ଝିଅ । ଶତ୍ରୁ ହାତରେ ତା'ର ସମସ୍ତେ ନିହତ ହେବାରୁ ସେ ପ୍ରାଣଧରି ବନକୁ ଚାଲି ଆସିଛି । ସାହା ଭରସା ତ କେହି ନାହିଁ । ପିଲାଦିନର ସାଥୀ ଜନକ ନନ୍ଦିନୀ ସୀତା ପାଖରେ ଯଦି କେହି ପହଞ୍ଚାଇ ଦେଇପାରନ୍ତା, ତା'ହେଲେ ସେ ବଞ୍ଚି ଯାଆନ୍ତା । ସୀତା ମାତାଙ୍କ ବାଲ୍ୟସଖୀ ବୋଲି ଶୁଣି ହନୁ ପ୍ରଣାମ କରି-

ପକାଇ ପ୍ରବୋଧ ଦେଲା ଯେ ଶ୍ରୀରାମ ପହୁଞ୍ଚାଇଦେବେ । ପର୍ବତରେ ରଖାଇ ଫଳମୂଳ ଆଣିଦେଲା । ରାତି ହେବାମାତ୍ରେ ରାକ୍ଷସୀ ହନୁକୁ ଗିଳି ସହସ୍ରଶିର ରାକ୍ଷସକୁ ଯାଇ କହିଲା ମୁଁ ହନୁକୁ ପେଟରେ ପୂରାଇ ଦେଇଛି । ରାମ ଏବେ ଅସହାୟ । ତୁ ତାକୁ ମାରିଦେ । ଅସୁର କହିଲା ତୋ' କଥାରେ ସତ କେତେ ? ସୂତାରେଖା ବାନ୍ଧିକରି ହନୁକୁ ତଳେ ପକାଇ ଦେଲା । ଅସୁର ରାଜା କହିଲା ଏହାକୁ ଭିତରପୁରକୁ ନେଇ ସମସ୍ତେ କାଟି ଖାଇଦିଅ । ରାଜାର ସାତଶହ ପଚିଶ ରାଣୀ ବିଚିତ୍ର ଜୀବଟିକୁ ଦେଖିବାପାଇଁ ପନିକ କଟୁରୀ ଧରି ରୁଣ୍ଡ ହୋଇଗଲେ । ସେମାନେ ହନୁକୁ କାଟିବେ କଣ ଓଲଟି ହନୁ ସାଷ୍ଟାମ ହୋଇ ତାଙ୍କର ହତିଆରରେ ରାଣୀମାନଙ୍କ ନାକକାନ କାଟି ପକାଇଲା । ଖାଲି ସେତିକି ନୁହେଁ, ସାରା ସହର ଛାରଖାର କରି ଦେଇ ପ୍ରଚଣ୍ଡ ପର୍ବତକୁ ଚାଲିଗଲା ।

ରାଣୀମାନଙ୍କ ଦୁର୍ଦ୍ଦଶାରେ ଅସୁର ବାତୁଳ ହୋଇ ଘୋଷଣା କରିଦେଲା ଯେ ରାମକୁ ମାରିଦେବ ସେ ରାଜ୍ୟର ମନ୍ତ୍ରୀ ହେବ । ଭଣଜା କମ୍ବୁ ଦୈତ୍ୟ ଭରସା ଦେଲା ଯେ କପଟ ଉପାୟରେ କାଲି ନିଶ୍ଚୟ ରାମକୁ ମାରିଦେବ । ପରଦିନ ସକାଳେ ରାମଙ୍କ ପାଖରେ ପହଞ୍ଚି ନିଜକୁ କାଶିର ବ୍ରହ୍ମଚାରୀ ବୋଲି କହିଲା । ଶ୍ରୀରାମ ଆପଣା ପରିଚୟ ଏବଂ ଉଦ୍ଦେଶ୍ୟ ପ୍ରକାଶ କଲାରୁ କମ୍ବୁ ଉତ୍ସାହିତ ହେଲାପରି କହିଲା ତୁମେ ନିଶ୍ଚୟ ଏ ଅସୁରକୁ ମାରି । ମୁଁ କଲ୍ୟାଣ କରୁଛି କହି କପାଳରେ ବିଭୂତି ଲଗାଇ ଦେଲାରୁ ରାମଚନ୍ଦ୍ର ମୋହ ହୋଇ ରାକ୍ଷସ କଥାରେ ଚାଲିଲେ । ହନୁ ସେତେବେଳେ ପାଖରେ ନାହିଁ । ତେଣୁ କମ୍ବୁ ସହଜରେ ରାମଙ୍କୁ ନେଇ ବଳଙ୍କା ରାବଣ ସିଂହାସନ ତଳେ ଛିଡ଼ା କରେଇ ଦେଲା । କାଳ ବିଳମ୍ବ ନକରି ରାଜା ମୁଣ୍ଡକାଟ ଆଦେଶ ଦେଇଦେଲା । ସ୍ବର୍ଗର ଦେବତାମାନଙ୍କର ଛାଲେଣି ପଡ଼ିଲା । ତତ୍‌କ୍ଷଣାତ୍ ଦେବୀ ଶାରଳାଙ୍କୁ ସଭାସଦ୍‌ମାନଙ୍କ କଣ୍ଠରେ ବିରାଜମାନ ହେବାକୁ ପଠାଇଦେଲେ । ସେମାନେ ସମସ୍ତେ ଏକସ୍ବରରେ ଅନୁରୋଧ କଲେ ଏହାକୁ ନମାରି ବନ୍ଦୀ କରାଯାଉ । ଅସୁର ରାଜି ହୋଇଗଲା ।

ଦୈବବାଣୀରୁ ସବୁ କଥା ଜାଣି ହନୁ କୌଶଳକ୍ରମେ ଭିକ୍ଷୁକ ବେଶରେ ଗଡ଼ ଭିତରକୁ ଯାଇ ଶ୍ରୀରାମଙ୍କ ମୁଣ୍ଡରୁ ବିଭୂତି ପୋଛି ଦେଲା ।

ମୋହ ନାଶ ଦିବାରୁ ଦୁହେଁ ମିଶି ଅସୁର ପ୍ରହରୀମାନଙ୍କୁ ମାରି ପକାଇ ଗଲାବେଳେ ଚାରିଆଡ଼ୁ ଆକ୍ରମଣ ହେଲା । ହନୁ କପାଳରୁ ବ୍ରହ୍ମଅଗ୍ନି ଜାତ କରାଇ ସହର ସାରା ନିଆଁ ଲଗାଇ ଦେଲା । ଶ୍ରୀରାମ ପବନାସ୍ତ୍ର ମାରି ତାକୁ ପ୍ରବଳ କରି ଦେଲେ । ରାକ୍ଷସ ରାଜା ଅନ୍ୟ ଉପାୟ ନପାଇ ନିଜ ପରିବାର ବର୍ଗଙ୍କୁ ରଥରେ ବସାଇ ନେଇ ଶୂନ୍ୟରେ ସ୍ଥାପନ କଲା । ସୁବିଧା ପାଇ ହନୁ ଶ୍ରୀରାମଙ୍କୁ କାନ୍ଧରେ ବସାଇ ପ୍ରଚଣ୍ଡ ପର୍ବତକୁ ଚାଲି ଆସିଲା ।

ଔଷଧ ରାଗରେ ତାଟିଆ କାମୁଡ଼ିଲା ପରି ଅସୁର ସ୍ୱର୍ଗ ଆକ୍ରମଣ କଲା । ଇନ୍ଦ୍ର ଭୟଭୀତ ହୋଇ ମେଘକୁ ପଠାଇ ନିଆଁ ଲିଭାଇ ଦେଲାରୁ ଅସୁର ଶାନ୍ତ ପଡ଼ିଲା । ବିଶ୍ୱକର୍ମାଙ୍କୁ ପଠାଇ ରାତାରାତି ସମଗ୍ର ବିଲଙ୍କା ନଗରୀକୁ ଆଗଠାରୁ ଅଧିକ ସୁନ୍ଦର କରି ଗଢ଼ି ଦିଆଗଲା ।

ପରଦିନ ସାନଭାଇ ତ୍ରିଶିରା ସହ କମ୍ବୁ, ଶମ୍ବୁ, ଅମ୍ବୁ, ପ୍ରଳମ୍ବା ଆଦି ଦୈତ୍ୟମାନେ ଯୁଦ୍ଧକୁ ଗଲେ । ଅସୁରମାନେ ଏତେ ପ୍ରବଳ ହେଲେ ଯେ ଏକ ସମୟରେ ରାମଚନ୍ଦ୍ର ଆଶାଶୂନ୍ୟ ହୋଇ ବସିଗଲେ । ବ୍ରହ୍ମା ଆସି ଗୁହାରି କଲେ, ସାହସ ଦେଲେ ଏବଂ ଶତସେନ ସାରଥି ସହ ବିଜୟୀ ରଥ ଦେଲେ । ସେଥିରେ ଚଢ଼ି ଶ୍ରୀରାମ ଏଭଳି ଯୁଦ୍ଧ କଲେ ଯେ ଅସୁରର ସବୁ ସୈନ୍ୟ ମରିଗଲେ । ସେ ଏକୁଟିଆ ଫେରିଯାଇ ରାଜାକୁ ଜଣାଇଲା ଦେବତାମାନେ ରାମକୁ ସାହାଯ୍ୟ କରୁଛନ୍ତି । ସେ ପରମବ୍ରହ୍ମ । ଅସୁର ରାଜା ଚିଡ଼ିଯାଇ କହିଲା ତୁ ଯା ବିଭୀଷଣ ପରି ଶରଣ ପଶିବୁ । ମୁଁ ମଲେ ରାଜା ହେବୁ । ମୁଁ ବୀର । ବୀର ପରି ବୀରଗତି ପ୍ରାପ୍ତ ହେବି । ଏ ପାଖରେ ଭଲେଙ୍ଗ ହୋଇ ଭିତରେ ଭିତରେ ରାମଙ୍କୁ ସାହାଯ୍ୟ କରୁଥିବାରୁ ଅସୁର ରାଜା ଦେବତାମାନଙ୍କୁ ଆକ୍ରମଣ କଲା । ସେମାନେ ଯାହି ଯାହି ଡାକ ଆତ୍ମରକ୍ଷା କରିବାରେ ଲାଗିଲେ । ଶ୍ରୀରାମଚନ୍ଦ୍ର ସ୍ୱର୍ଗକୁ ଯାଇ ତାଙ୍କୁ ସାହାଯ୍ୟ କଲେ । ତାଙ୍କ ମନ୍ତ୍ରବାଣ ପ୍ରକୋପରେ ଦୈତ୍ୟ ବିଚଳିତ ହୋଇ ଫେରି ଆସିଲା ।

ସ୍ଥିର ଗୋଟିଏ ମନୁଷ୍ୟ । ତାକୁ ମାରିହେଉ ନାହିଁ ବୋଲି ବିଚଳିତ ହେବାରୁ ପୁଣି ଶତଶିରା ସାହସ ଦେଇ କହିଲା, କାଲି ହିଁ ସେ ରାମକୁ

ମାରଦେଇ ଆସିବ । ଦୈତ୍ୟରାଜ ଖୁସି ହୋଇ ତାକୁ ଟିକାଯୁକ୍ତ ଘୋଷଣା କଲା ଏବଂ ମାରଦେଇ ଆସିଲେ ରାଜା କରଦେବ ବୋଲି ପ୍ରତିଶ୍ରୁତି ଦେଲା । ଶତଶିର ଶମ୍ଭୁ, ନିଶମ୍ଭୁ, କଦମ୍ବା, ପ୍ରଲମ୍ବା ଆଦି ଦୈତ୍ୟମାନେ ଯୁଦ୍ଧକୁ ଯିବାକଥା । କିନ୍ତୁ ତା ଆଗରୁ ଶ୍ରୀରାମଚନ୍ଦ୍ର ଆକ୍ରମଣ କରି ଦେଲେ । ହନୁ କପାଳରୁ ବ୍ରହ୍ମଅସ୍ତ୍ର ଜାତ କରାଇ ସ୍ବରଆଡ଼େ ନିଆଁ ଲଗେଇ ଦେଲା । ଗୋଳମାଳିଆ ପରିସ୍ଥିତି ଭିତରେ ଯୁଦ୍ଧ ହେଲା । ଅସୁର ରାଜା ନିଜ ପରିବାରର ସମସ୍ତଙ୍କୁ ରଥରେ ବସାଇ ଶୂନ୍ୟରେ ନେଇ ରଖିଦେଲା । କିନ୍ତୁ ହନୁ ତାଙ୍କୁ ଟାଣି ଆଣି ନିଆଁରେ ପକାଇ ଦେଲା । ଶ୍ରୀରାମଙ୍କ ବାଣରେ ଶମ୍ଭୁ, ଅମ୍ଭୁ ରାକ୍ଷସମାନେ ମରିଗଲେ । ସେଦିନର ଯୁଦ୍ଧ ଶେଷ କରି ଶ୍ରୀରାମ ପ୍ରଚଣ୍ଡ ପର୍ବତକୁ ଫେରିଲେ । ଅସୁରମାନେ ପୋଡ଼ା ଘରଦ୍ୱାର ମରାମତିରେ ଲାଗିଲେ ।

ବିଲଙ୍କା ରାବଣ ତାର ମନ୍ତ୍ରୀଙ୍କ ସହିତ ପରାମର୍ଶ କରି ପୁଣି ଶତଶିରକୁ ପୁଣି ଯୁଦ୍ଧକୁ ପଠାଇବା ପାଇଁ ସ୍ଥିର କଲା । କିନ୍ତୁ ରାକ୍ଷସମାନେ ଆକ୍ରମଣ କରିବା ଆଗରୁ ଶ୍ରୀରାମ ବାହାରି ଆସି ଯୁଦ୍ଧ କଲେ । ଶେଷରେ ଶ୍ରୀରାମଙ୍କ ଶରରେ ଶତଶିରର ମୃତ୍ୟୁ ହେଲା । ତା' ପରଦିନ ଯୁଦ୍ଧରେ ବିଶିରର ହନୁ ହାତରେ ମୃତ୍ୟୁ ହେଲା । ହନୁମାନ ଉତ୍ସାହିତ ହୋଇ ରାକ୍ଷସର ଗଡ଼ ଭିତରେ ପଶି ନାରଖାର କରିବାକୁ ଆରମ୍ଭ କଲା । ଶ୍ରୀରାମ ତାହା ଜାଣିବା ମାତ୍ରେ ଗଡ଼ ଭିତରେ ରଥ ପୂରାଇ ଦେଲେ । ସହସ୍ରଶିର ସହିତ ଯୁଦ୍ଧ ହେଲା । ରାକ୍ଷସ ବାଣମାରି ଶ୍ରୀରାମଙ୍କ ରଥକୁ ଆବଦ୍ଧ କରି ଦେଲା । ଶ୍ରୀରାମ ତଳେ ପଡ଼ିଗଲେ । ହନୁ ଆସି ରଥମୁକ୍ତ କଲାରୁ ଶ୍ରୀରାମ ପ୍ରଚଣ୍ଡଗିରିକୁ ଚାଲିଗଲେ । ହନୁକୁ ଅନେକ ପ୍ରତିରୋଧ ସାମନା କରିବାକୁ ହେଲା । ଦେବତାମାନେ ସାହାଯ୍ୟ କରିବାକୁ ଆସି ଅସୁର ଠାରୁ ପରାଭବ ପାଇ ପଳେଇଗଲେ । ଶେଷରେ ହନୁ ଏପରି ଏକ ବଜ୍ରମୁଷ୍ଟି ମାରିଲା ଯେ ସହସ୍ରଶିର ରାକ୍ଷସ ରକ୍ତବାନ୍ତି କରି ନିଜ ଗଡ଼କୁ ପଳାଇ ଗଲା ।

କ୍ରମେ କ୍ରମେ ରାକ୍ଷସ ହତାଶ ହୋଇ ଶେଷରେ ଯାଇ ଗ୍ରାମଦେବୀଙ୍କ ପାଖରେ ପହଞ୍ଚିଲା । କିନ୍ତୁ ଗ୍ରାମଦେବୀ ପରମବ୍ରହ୍ମଙ୍କ ବିରୁଦ୍ଧରେ କିଛି କରି ପାରିବେ ନାହିଁ କହି ଶରଣ ପଶିବାକୁ ଉପଦେଶ ଦେଲେ । ସେଥିରେ

ସମସ୍ତଙ୍କର ମଙ୍ଗଳ । ରାମ ଫେରିଯିବେ ଏବଂ ଅସୁର ପୁଣି ସୁଖରେ ରାଜତ୍ୱ କରିବ । ତା'ର ଯଦି ସଙ୍କୋଚ ହେଉଛି ତେବେ ଗ୍ରାମଦେବତା ନିଜେ ଯାଇ ତାପାଇଁ ରାମଚନ୍ଦ୍ରଙ୍କ ପାଖରେ ମିନତି କରିବେ ବୋଲି କହିଲେ । ଅସୁର କିନ୍ତୁ ରାଜି ନ ହୋଇ ଫେରିଆସି ହୋମ, ବେଦ ପାଠ ଇତ୍ୟାଦି ଆରମ୍ଭ କଲା ।

ପ୍ରଭାତ ହେବାରୁ ଶ୍ରୀରାମ ସୈନ୍ୟ କଳନା କରିବା ପାଇଁ ହନୁକୁ ପଠାଇଲେ । ହନୁ କିନ୍ତୁ ସେଠାରେ ମାରାମାରି କରିବା ଆରମ୍ଭ କରିଦେଲା । ଗୋଳ ଶୁଣି ଶ୍ରୀରାମ ସାହାଯ୍ୟ କରିବାକୁ ଦଉଡ଼ିଲେ । ସେଠାରେ ସହସ୍ର-ଶିର ରାବଣ ନିଜେ ଆସି ଯୁଦ୍ଧ କଲା । ଶ୍ରୀରାମଙ୍କର କୌଣସି ବାଣ କାହିଁ କରୁ ନଥାଏ । କେତେବେଳେ ହନୁ ରାକ୍ଷସ ରାଜାକୁ ତ କେତେବେଳେ ସେ ହନୁକୁ କଷଣ ଦେଉଥାଏ । କିନ୍ତୁ ସମସ୍ତ ଯୁଦ୍ଧ ପରେ ଅସୁରର ସମସ୍ତ ସୈନ୍ୟସାମନ୍ତ ମରି ସେ ଏକୁଟିଆ ରହିଗଲା । ତେବେ ତାକୁ ପାରିବ କିଏ ? ତା'ର ଗୋଟିଏ ବାଧାରେ ହନୁ ମୋହିତ ହୋଇ ତଳେ ପଡ଼ିଗଲା । ଶ୍ରୀରାମ କିଛି କରି ନପାରି ଶୂନ୍ୟକୁ ରଥ ନେଇ ପଳାଇଗଲେ । ଅସୁରର ପିଛାକଲାରୁ ଦେବତାମାନେ ଆସି ତାର ପ୍ରତିରୋଧ କଲେ । କିନ୍ତୁ ସେମାନଙ୍କର ସମସ୍ତ ଅସ୍ତ୍ର ବ୍ୟର୍ଥ ହେଲା । ଘୋରତର ଲଗାତାର ଯୁଦ୍ଧ ପରେ ଦେବତାମାନେ ଘୁଞ୍ଚି ପଳେଇଲେ । ଶ୍ରୀରାମ ମଧ୍ୟ ପ୍ରଚଣ୍ଡ ପର୍ବତକୁ ପଳେଇଗଲେ । ହନୁ ସେମିତି ବଲଙ୍କାରେ ପଡ଼ିଥାଏ । ଶ୍ରୀରାମ ଇନ୍ଦ୍ରଙ୍କୁ ସ୍ମରଣ କଲାରୁ ସେ ଯାଇ ଅମୃତ ବର୍ଷଣ କଲେ—ହନୁ ଚେତା ପାଇ ପ୍ରଚଣ୍ଡ ପର୍ବତ ଫେରିଲା ।

ଶ୍ରୀରାମ ଚିନ୍ତା କରି ଦେଖିଲେ ଯେ ସେ ଆଜି ଅସୁରକୁ ମାରି ପାରିବେ ନାହିଁ । ଦେବତାମାନଙ୍କୁ ଡକାଇ କହିଲେ ତୁମମାନଙ୍କ ପାଇଁ ମୋର ଏ ଯୁଦ୍ଧ । କାଲିର ଯୁଦ୍ଧରୁ ପରିଷ୍କାର ହୋଇଗଲା ଯେ ମୁଁ ତାକୁ ମାରି ପାରିବ ନାହିଁ । ତେଣୁ ମୁଁ ପଛେ ବନବାସୀ ହୋଇ ଯାଉଛି ତୁମେମାନେ ସମସ୍ତେ ମିଶି ଯୁଦ୍ଧରେ ତାକୁ ମାର କିମ୍ବା ମର । ମହା ପ୍ରମାଦ ପଡ଼ିଲା । ବ୍ରହ୍ମା ଚିନ୍ତା କରି ଦେଖିଲେ, ଜାନକୀ ନ ମାରିଲେ ରାକ୍ଷସ ମରିବ ନାହିଁ । କିନ୍ତୁ ସେ କଥା ସେ ରାମଙ୍କୁ କହିଲେ ସେ ଗ୍ରହଣ ନକରି ପାରନ୍ତି । ସେ ତ କହିବାହିରେ ଏକୁଟିଆ ଷଲଙ୍କା ରାବଣକୁ ମାରି ଦେଖେଇବେ

ବୋଲି କହି ଆସିଛନ୍ତି । ସବୁ ମାୟା ଯେ ତାଙ୍କର ସୃଷ୍ଟି ସେ କଥା ସେ ଜାଣନ୍ତି । ତଥାପି ମାୟାକୁ ତ ସେଇ ସ୍ତରରେ ଗତି କରିବାକୁ ଆଦେଶ ଦେଇ ଶ୍ରୀରାମଙ୍କୁ କହିଲେ, ଜାନକୀ ନ ଆସିଲେ ଅସୁର ମରିବ ନାହିଁ । ସରସ୍ୱତୀଙ୍କ ପ୍ରଭାବରେ ଶ୍ରୀରାମ ହନୁକୁ ପଠାଇ ସୀତା ଏବଂ ଲକ୍ଷ୍ମଣଙ୍କୁ ନେଇ ଆସିବାକୁ ରାଜି ହୋଇଗଲେ । ସେମାନେ ଆସି ପହଞ୍ଚିଲେ ।

ବିଲଙ୍କାଗଡ଼ ଭିତରୁ କୌଣସି ଘୋର ଶବ୍ଦ ଶୁଣା ନଯିବାରୁ ଶ୍ରୀରାମ ହନୁକୁ ସମାଚାର ପାଇଁ ପଠାଇଲେ । କିନ୍ତୁ ହନୁ ସେଠାରେ ପହଞ୍ଚି ପହଞ୍ଚି ଭୀଷଣ ଯୁଦ୍ଧ ରଡ଼ି ଶୁଣି ଶ୍ରୀରାମ ଯିବାକୁ ବାହାରିଲେ । ଲକ୍ଷ୍ମଣ ବାରଣ କରି ନିଜେ ରଥ ନେଇ ଗଡ଼ ଭିତରକୁ ଗଲେ । ଶୂନ୍ୟରେ ଲକ୍ଷ୍ମଣ, ଭୂମିରେ ହନୁ ଦୁଇପଟୁ ରାକ୍ଷସକୁ ଆକ୍ରମଣ କରି ମଧ୍ୟ ତା'ର କିଛି କ୍ଷତି କରି ପାରିଲେ ନାହିଁ । ଦୁଇଦିନ ପରେ ଲକ୍ଷ୍ମଣ ତଳକୁ ଓହ୍ଲାଇ ରଥକୁ ଶ୍ରୀରାମଙ୍କ ପାଖକୁ ପଠାଇ ଦେଲେ । ସେ ନ ଆସିଲେ ରାକ୍ଷସ ମରିବ ନାହିଁ ।

ଶ୍ରୀରାମ ଆସିଲେ । କିନ୍ତୁ ପାଞ୍ଚଦିନ ପର୍ଯ୍ୟନ୍ତ ତିନିଆଡ଼ୁ ଆକ୍ରମଣ କରି ମଧ୍ୟ କିଛି ଫଳ ହେଲାନାହିଁ । ଦେବତାମାନେ ବ୍ୟସ୍ତ ହୋଇ ଜାନକୀଙ୍କୁ ପ୍ରାର୍ଥନା କଲେ ଅସୁରକୁ ବିନାଶ କରିବା ପାଇଁ । ଶେଷରେ ଜାନକୀ ସମ୍ମତ ହେଲେ । ପ୍ରଥମେ ଦେବୀ ମଙ୍ଗଳାଙ୍କୁ ସ୍ତୁତିରେ ପ୍ରସନ୍ନ କରାଇ ରାକ୍ଷସ ନିଧନ ବର ମାଗିଲେ । ତାଙ୍କର ନିଜର ତ କୌଣସି ବଳ ନାହିଁ । ଯାହା କରିବେ ମଙ୍ଗଳାଙ୍କ ବଳରେ । ମଙ୍ଗଳା ସନ୍ତୁଷ୍ଟ ହୋଇ ପୁଷ୍ପଧନୁ ଏବଂ ପଞ୍ଚଶର ଦେଲେ । ସେତିକି ସମ୍ବଳକରି ସେ ଯୁଦ୍ଧଭୂମିକୁ ବାହାରିଗଲେ । ସେଠାରେ ଦେଖିଲେ ଶ୍ରୀରାମ ଧନୁ ତ୍ୟାଗକରି ବସିଛନ୍ତି । ହନୁ ଏକୁଟିଆ ଯୁଦ୍ଧ କରୁଛି । ସୀତାଙ୍କ କଥାରେ ରାମ ଓ ଲକ୍ଷ୍ମଣ ପୁଣି ଧନୁ ଧରି ଅନେକ ଶର ସନ୍ଧାନ କଲେ । କିନ୍ତୁ କିଛି ଫଳ ହେଲାନାହିଁ । ଶେଷରେ ସୀତା ଅନିନ୍ଦ୍ୟ ସୁନ୍ଦରୀ ମୂର୍ତ୍ତି ଧାରଣକରି ଅସୁର ଆଗରେ ଉଭା ହୋଇଗଲେ । ଅସୁର ଉପରକୁ ଅନାଇବା ମାତ୍ରେ ଦେବୀ ତାଙ୍କ ଅପୂର୍ବ ନବଯୌବନ ପ୍ରଦର୍ଶନ କରିଦେଲେ । ଅସୁର ଚକିତ ହୋଇ ଅନେଇ ରହିଗଲା । ଏତିକିବେଳେ ଦେବୀ ପଞ୍ଚଶରକୁ କାନପର୍ଯ୍ୟନ୍ତ ଟାଣି ପୁଷ୍ପଧନୁରୁ ଏକ

ସଙ୍ଗରେ ଅସୁର ଉପରକୁ ନିକ୍ଷେପ କଲେ । କାମ ଜ୍ୱାଳାରେ ବିମୋହିତ ଅସୁରର ସମସ୍ତ ବଳ କୁଆଡ଼େ ମିଳେଇଗଲା । ନିଜକୁ ଅସହାୟ ମନେକରି, ତା'ର ସ୍ତ୍ରୀ ହୋଇ ରହିବାପାଇଁ ସେ ଅତି ଆତୁର ନିବେଦନ କଲା । ଶ୍ରୀରାମ ଥାଉଁ ଥାଉଁ ତାହା ସମ୍ଭବ ନୁହେଁ କହିଲାରୁ ଅସୁର କ୍ରୋଧରେ ରାମଙ୍କ ଆଡ଼କୁ ଝପଟିଗଲା । ପଞ୍ଚଶର ଆଘାତରେ ତା'ଠାରେ ଯେ ଆଉ କୌଣସି ଶକ୍ତି ଅବଶିଷ୍ଟ ନାହିଁ ସେକଥା ସେ ପାଶୋର ଯାଇଛି । ଏହି ସୁଯୋଗରେ ଶ୍ରୀରାମ ତା'ର ମୁଣ୍ଡମାନ କାଟି ପକାଇଲେ, ଲକ୍ଷ୍ମଣ ଓ ହନୁମାନ ବାହୁମାନ ଛେଦି ପକାଇଲେ । ଅସୁରର ମୃତଦେହ ପର୍ବତ ଆକାରରେ ପଡ଼ି ରହିଲା । ଦେବତାମାନେ ସ୍ୱସ୍ତିର ନିଶ୍ୱାସ ମାରି ପୁଷ୍ପ ବୃଷ୍ଟି କଲେ ।

ଏହାପରେ ଶ୍ରୀରାମ, ସୀତା, ଲକ୍ଷ୍ମଣ ଓ ହନୁମାନ ଅଯୋଧ୍ୟା ଲେଉଟିଲେ । ଅଭିଷେକ ପରେ ଶ୍ରୀରାମଚନ୍ଦ୍ର ମହାପ୍ରଭୁ ସିଂହାସନରେ ବିରାଜମାନ ହେଲେ ।

# ଶ୍ରୀରାମଚନ୍ଦ୍ରଙ୍କର ବିଲଙ୍କା ଅଭିଯାନ

ଶ୍ରୀ ରବିନାରାୟଣ ସେନାପତି

ବ୍ରହ୍ମାଙ୍କର ନିର୍ଦ୍ଦେଶରେ ଦେବକାର୍ଯ୍ୟ କରିବାକୁ ହେବ ।

ଆଦେଶ ପାଇ ଖଳ ଓ ଦୁର୍ବଳ ଦୁହେଁ ଯାଇଁ ଅଯୋଧ୍ୟା ନଗରୀରେ ପ୍ରବେଶ କଲେ ।

ଉତ୍ସବ-ମୁଖର ଅଯୋଧ୍ୟା ନଗରୀ । ବିଶାଳ ଜନସମାଗମ । ଶ୍ରୀରାମଚନ୍ଦ୍ରଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପରେ ରାଜ୍ୟାଭିଷେକ । ଦୁନ୍ଦୁଭି ନାଦରେ ନଗରୀ ପ୍ରକମ୍ପିତ । ବଶିଷ୍ଠ, ଯାଜ୍ଞବଲ୍କ୍ୟ, ଅଙ୍ଗିରା, ଅଗସ୍ତି ଓ ଅଷ୍ଟାବକ୍ର ଆଦି ସମସ୍ତ ଋଷି ଉପସ୍ଥିତ । ଭରତ ଓ ଶତ୍ରୁଘ୍ନ ଚାମର ଚାଳନା କରୁଥାନ୍ତି । ଲକ୍ଷ୍ମଣ ଛତ୍ରଧର ସମ୍ମୁଖଭାଗରେ ଦଣ୍ଡାୟମାନ । ବ୍ରହ୍ମର୍ଷି ବଶିଷ୍ଠ ବେଦବାକ୍ୟ ଉଚ୍ଚାରଣ କରୁଥାଆନ୍ତି । ପାତ୍ର, ମନ୍ତ୍ରୀମାନେ ଦରବାରରେ ସମାବିଷ୍ଟ ।

ଏପରି ସମୟରେ ଖଳ ବିଜେ କଲା ଜାନକୀଙ୍କ କଣ୍ଠରେ ଏବଂ ଦୁର୍ବଳ ପ୍ରବେଶ କଲା ଶ୍ରୀରାମଙ୍କ କଣ୍ଠରେ । ଗର୍ବୋନ୍ମୋଦିତ ହେଲା ଶ୍ରୀରାମଙ୍କ ମନ । ରଘୁବୀର ଋଷି ବଶିଷ୍ଠଙ୍କ ଆଡ଼କୁ ଦୃଷ୍ଟି ଦେଇ ହସିଲେ ଏବଂ କହିଲେ—

"ବହୁତ କଷ୍ଟରେ ମୁଁ ଅସୁରମାନଙ୍କୁ ନିପାତ କଲି । ସମୁଦ୍ରରେ ପଥର ପୋତି ବନ୍ଧ ବାନ୍ଧିଲି । ରାଜା ଦଶାନନ ସହିତ ଭୀଷଣ ଯୁଦ୍ଧ କରିବାକୁ ହେଲା । ବହୁତ କଷ୍ଟରେ ଲଙ୍କାପତିର ମୃତ୍ୟୁ ହେଲା ।" ଏହା ଶୁଣି ବୈଦେହୀ ଉପହାସ କରି କହିଲେ—

"ହେ ଦେବ, କାର୍ଯ୍ୟ ନକରି କାହିଁକି ଘୋଷଣା କରୁଛ ? କେଉଁଦିନରେ ଲଙ୍କାରେ ଅସୁର ନିପାତ କଲ ?"

ଏକଥା ଶୁଣି ଶ୍ରୀରାମ ଈଷତ୍ ହସି ମୌନ ରହିଲେ । ହନୁମାନଙ୍କୁ ବୃହିଁ ଆଜ୍ଞାଦେଲେ –

"ବାବୁ, ଶୀଘ୍ର ଚନ୍ଦନ କାଠ ଆଣ । ଅଭିଷେକ କାର୍ଯ୍ୟ କେମିତି ହେବ ?"

ଶ୍ରୀରାମଙ୍କ ଆଦେଶ ପାଇ ବୀର ହନୁମାନ ଅଯୋଧ୍ୟାରୁ ପ୍ରସ୍ଥାନ କଲେ । ଚନ୍ଦନ ପର୍ବତରେ ଯାଇ ପ୍ରବେଶ କଲେ । ସେଠାରେ ଚନ୍ଦନ ବୃକ୍ଷ ଅନ୍ୱେଷଣ କଲେ ।

ଏହିକି ସମୟରେ ଖଳ ଜାନକୀଙ୍କ ମନକୁ ଉଚ୍ଚାଟ କଲା । ଶ୍ରୀରାମ ଦୁଃଖର ସହିତ ମହର୍ଷି ବଶିଷ୍ଠଙ୍କୁ କହୁଥିଲେ—"ଅନେକ କଷ୍ଟରେ ମୁଁ ଲଙ୍କାପତି ରାବଣକୁ ବଧ କଲି ।"

ଜାନକୀଦେବୀ ହସି ପଚାରିଲେ—"କେଉଁଦିନ ପ୍ରଭୁ ଦଶାନନ ରାବଣକୁ ମାରିଲ ?"

ଶ୍ରୀରାମ କହିଲେ—"ସଖି, ତୁମେ କ'ଣ ଭୁଲିଗଲ ଅଶୋକବନରେ ବନ୍ଦୀ ଥିଲାବେଳର କଥା । ସୁବଳୟା ପର୍ବତରେ ଯାହାସବୁ ଘଟୁଥିଲା, ସେ ବିଷୟରେ ତୁମେ ଜାଣନାହିଁ । ଆମ ସହିତ ଲଙ୍କାପତି ରାବଣ କେତେ ଯେ ଯୁଦ୍ଧ କଲା, ମୋ ଶରଘାତରେ କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ, ରାବଣ ସହିତ ସମସ୍ତେ ଯୁଦ୍ଧରେ ଢଳି ପଡ଼ିଲେ । ରାବଣ ସହିତ ମୋର ଘୋର ଯୁଦ୍ଧହେଲା । ଯୁଦ୍ଧରେ ରାବଣର ପ୍ରାଣନାଶ ହେଲା । ତା' ସହିତ ସ୍ୱର୍ଣ୍ଣମୟ ଲଙ୍କା ନଗରୀ ମଧ୍ୟ ଧ୍ୱଂସ ହେଲା ।"

ଜାନକୀ ଏକଥା ଶୁଣି ପୁଣି କହିଲେ—"ହେ ଦେବ, ତୁମେ ଏଭଳି ଘୋଷଣା କରନାହିଁ । ମୁଁ ନ ମାରିଥିଲେ ଅସୁର କ'ଣ ମରିଥାନ୍ତା ? ହେ ରଘୁପତି, ତୁମେ କି ବା କଷ୍ଟ ପାଇଛ ? ରାବଣର ବଧପାଇଁ ମୁଁ ଘୋର କଷ୍ଟ ପାଇଛି । ଯଦି ତୁମେ ପ୍ରତିଜ୍ଞାକରି କହୁଛ, ତେବେ ଯାଇ ବଳଙ୍କାରେ ରାବଣକୁ ବଧ କର । ସେହି ଅସୁରର ଅଛି ସହସ୍ରଶିର । କେବଳ ମାତ୍ର ଦଶଶିର ହନାପକରି ତୁମେ ପ୍ରତିଜ୍ଞା ପୂରଣ କରିଛ । ବଳଙ୍କାରେ ଥିବା

ରାବଣର ପାଦରେ ଦେବତାମାନେ ବନ୍ଦୀ ହୋଇଛନ୍ତି । ଦେବତାମାନଙ୍କୁ ପାଦରେ ବାନ୍ଧି ସେ ସ୍ନାନ କରେ । ସ୍ୱୟଂ ଯମରାଜ ତା'ର ବାଡ଼ିରେ ଖଟୁଥାଏ । କୁବେର ନିଜେ ଲୁଗାପଟା ସଫା କରେ । ସମସ୍ତ ଦେବତା ତା'ର ପାଦତଳେ ଖଟୁଥାଆନ୍ତି । ସେହି ରାବଣକୁ ଯଦି ବଧ କର, ତେବେ ଦେବକାର୍ଯ୍ୟ କରିବା ନିମିତ୍ତ ତୁମର ପ୍ରତିଜ୍ଞା ପୂର୍ଣ୍ଣ ହେବ ।"

ଯେହେତୁ ଖଳ ଜାନକୀଦେବୀଙ୍କର ମନ ମୋହିଥିଲା, ତେଣୁ ସତୀ ସୀତା ଶ୍ରୀରାମଙ୍କ ପ୍ରତି ବହୁ ଆକ୍ଷେପ କରି କହି ଚାଲିଥିଲେ—

"ବଳାଙ୍କା ଦେଶରେ ଯେଉଁ ସହସ୍ରଶିର ରାବଣ ଅଛି, ତା'ର ମନ୍ତ୍ରୀ ହେଉଛି ସପ୍ତଶିର । ତା'ର ଭାଇ ହେଉଛି ତ୍ରିଶିର । ପୁଣି ତା'ର ପୁଅ ଶତଶିର ଖୁବ୍ ବଳିଷ୍ଠ । ହେ ରଘୁବୀର, ସେହି ସହସ୍ରଶିର ରାବଣକୁ ବଧ କଲେ ଦେବକାର୍ଯ୍ୟ ପାଇଁ ତୁମର ପ୍ରତିଜ୍ଞା ପୂରଣ ହେବ ।"

ଏକଥା ଶୁଣି ଶ୍ରୀରାମ ଘନଘନ ପ୍ରକମ୍ପିତ ହେବାକୁ ଲାଗିଲେ । ଧନୁରେ କୋଦଣ୍ଡ ଧରି ନିଜେ ଉଠିପଡ଼ିଲେ । ଏକଥା ଦେଖି ଅଯୋଧ୍ୟା-ବାସୀଙ୍କ ମଧ୍ୟରେ ହାଁ ହାଁ କାର ପଡ଼ିଗଲା । କିଏ କହିଲା, ରଘୁବୀର ବଳଙ୍କା ଯାତ୍ରା କରିବେ । କିଏ କହିଲା, ଏକଥା ଜନକନନ୍ଦିନୀ ସୀତାଙ୍କର କାର୍ଯ୍ୟ । ଯେହେତୁ ଖଳ ସମସ୍ତଙ୍କ ମନ ମୋହି ନେଇଥିଲା, ତେଣୁ ଅସଲ ସମସ୍ୟା କଥା କେହି ମୁହଁରେ ଧରୁ ନଥିଲେ ।

ସୈନ୍ୟସାମନ୍ତମାନେ ସ୍ତମ୍ଭୀଭୂତ ହୋଇଗଲେ । ଶ୍ରୀରାମଙ୍କ ମାତା ଅଯୋଧ୍ୟାର ଜନନୀ ନିର୍ବାକ୍ ହୋଇ ରହିଥିଲେ । ଶ୍ରୀରାମ କୋଦଣ୍ଡଚାପ ଧରି ଗୁରୁ ବଶିଷ୍ଠଙ୍କ ନିକଟକୁ ଯାଇ ପ୍ରଣାମ କଲେ ଏବଂ କହିଲେ—"ମୁଁ ବଳଙ୍କା ଭ୍ରମଣରେ ଯାଉଛି, ମୁନିବର !" ବଶିଷ୍ଠ କିଛି ନକହି ଚୁପ୍ ରହିଲେ ।

ଲକ୍ଷ୍ମଣ ହାତଯୋଡ଼ି ଶ୍ରୀରାମଙ୍କୁ କହିଲେ—"ତୁମେ ଏକା କାହିଁକି ଯିବ ? ମୁଁ ମଧ୍ୟ ସାଙ୍ଗରେ ଯିବି ।"

ଲକ୍ଷ୍ମଣଙ୍କୁ ଆଶ୍ୱାସନା ଦେଇ ଶ୍ରୀରାମ କହିଲେ—"ବାବୁ, ତୁମେ ଅଯୋଧ୍ୟାରେ ଥାଅ । ମୋ' ସାଙ୍ଗରେ ଯାଇ ଆଉ କେତେ କଷ୍ଟ ଭୋଗିବ ?"

ଭରତ ମଧ୍ୟ ବାହାରିଲେ ଶ୍ରୀରାମଙ୍କ ସାଙ୍ଗରେ । ତାଙ୍କୁ ଅଯୋଧ୍ୟାର ଦାୟିତ୍ୱ ସମ୍ଭାଳିବାକୁ କହି ଶ୍ରୀରାମ ମାତାମାନଙ୍କ ଚରଣ ସ୍ପର୍ଶ କଲେ । ଜାନକୀଙ୍କ ଅଙ୍ଗକୁ ଚାହିଁ ଶ୍ରୀରାମ କହିଲେ—"ହେ ସଖି, ମାତାମାନଙ୍କ ସେବାରେ ଲାଗିଥିବ । କାହାରି ସାଙ୍ଗରେ କଳି, ଦ୍ୱନ୍ଦ୍ୱ କରିବ ନାହିଁ ।"

ସର୍ବମଙ୍ଗଳାଙ୍କୁ ସ୍ମରଣ କରି ଶ୍ରୀରାମ ଯାତ୍ରା ଆରମ୍ଭ କଲେ । ଅଯୋଧ୍ୟାବାସୀ ମୌନ ଭାବରେ ଚାହିଁ ରହିଥିଲେ । ରଘୁମଣି ସିଂହଦ୍ୱାର ଅତିକ୍ରମ କଲେ । ସ୍ୱର୍ଗରେ ଦେବତାମାନେ ଶଙ୍ଖଧ୍ୱନି କଲେ । ଦେବରାଜ ଇନ୍ଦ୍ର ପୁଷ୍ପବୃଷ୍ଟି କଲେ । ବେଦବର ବ୍ରହ୍ମା ବେଦଧ୍ୱନି କଲେ । ବୃହସ୍ପତି ପାଞ୍ଜି ଅନୁକୂଳ କଲେ । ଦେବତାମାନେ ସ୍ତୁତିପାଠ କଲେ । ଆକାଶରୁ ଘନଘନ ଶବ୍ଦ ଶୁଭୁଥିଲା । ପୃଥିବୀର ଭାର ଉଶ୍ୱାସ ହେବ ବୋଲି ସ୍ୱର୍ଗରେ ଉଲ୍ଲାସର ଧ୍ୱନି । ପବନ ଦେବତାଙ୍କୁ ଚାହିଁ ବେଦବର ବ୍ରହ୍ମା ଆଦେଶ ଦେଲେ—"ତୁମେ ଶୀଘ୍ର ଦେବକାର୍ଯ୍ୟରେ ଯୋଗଦିଅ । ରଘୁମଣି ଲଙ୍କାରେ ପହଞ୍ଚିବା ପାଇଁ କେତେଦିନ ଲାଗିବ । ତୁମେ ତାଙ୍କୁ ଶୀଘ୍ର ପବନ ବେଗରେ ଉଡ଼ାଇ ନିଅ ।"

ବ୍ରହ୍ମାଙ୍କ ନିର୍ଦ୍ଦେଶ ପାଇ ସମୀର ଦେବତା ଶୀଘ୍ର ଚଳିଲେ । ଅଣଚାଶ ପବନ ଏକାଠି ବହିଲା । ଏଥିରେ ଶ୍ରୀରାମ ଆଶ୍ୱସ୍ତ ହେଲେ । ପବନ ଦେବତାଙ୍କ ସହାୟତାରେ ଶ୍ରୀରାମଚନ୍ଦ୍ର ଲଙ୍କାରେ ପହଞ୍ଚିଗଲେ । ପ୍ରଚଣ୍ଡ ନାମକ ଏକ ପର୍ବତରେ ପହଞ୍ଚିଲେ । ତାହାର ଆୟତନ ଦୁଇଲକ୍ଷ ଯୋଜନ । ସେହି ପର୍ବତରେ ବସି ଶ୍ରୀରାମ ଦକ୍ଷିଣ ଭାଗପ୍ରତି ଦୃଷ୍ଟି-ପାତ କଲେ । ନବତାଳ ପ୍ରାଚୀର ପରିବେଷ୍ଟିତ ସୁବର୍ଣ୍ଣ ନଗରୀ ଲଙ୍କାପୁର ଦୃଶ୍ୟମାନ ହେଲା, ଚତୁର୍ଦ୍ଦିଗ ସୁବର୍ଣ୍ଣମୟ । ଦୁଇଲକ୍ଷ ଯୋଜନ ଆୟତନ ବିଶିଷ୍ଟ ଲଙ୍କାପୁର । ଏହି ନଗରୀର ପ୍ରହରୀ ଭାବରେ ଶସ୍ତ୍ର ଧରି ରାକ୍ଷସମାନେ ବିଦ୍ୟମାନ । ଅସୁର ଏବଂ ଅସୁରୀମାନେ ପର୍ବତ ପରି ଦୃଶ୍ୟମାନ । ଏମାନଙ୍କୁ ମାରିଲେ ନିଜର ପ୍ରତିଜ୍ଞା ପୂରଣ ହେବ ବୋଲି ଶ୍ରୀରାମ ମନେ ମନେ ଭାବିଲେ । କ୍ରୋଧପରବଶ ହୋଇ କୋଦଣ୍ଡ ଧରିଲେ । ପାଦୁକାର ମନ୍ତ୍ର ସ୍ମରଣ କଲେ । ଉତ୍ତରପାର୍ଶ୍ୱ ସିଂହଦ୍ୱାର ନିକଟରେ ପହଞ୍ଚିଲେ । ଦେଖିଲେ, ଅସୁରମାନେ ଦ୍ୱାରପାଳ ଭାବରେ

ରହିଛନ୍ତି । ଧନୁରେ ଗୁଣ ଦେଇ ପାଞ୍ଚବାଣ ପ୍ରେରଣ କଲେ । ଦୁଇହଜାର ଦୈତ୍ୟ ଦ୍ୱାରରେ ବସିଥିଲେ । ଶ୍ରୀରାମଙ୍କ ବାଣରେ ସମସ୍ତେ ଦୁଇଖଣ୍ଡରେ ବିଭକ୍ତ ହୋଇଗଲେ । ଏହିଭଳି ଭାବରେ ଶ୍ରୀରାମ ଭିତରକୁ ପ୍ରବେଶ କଲେ ଏବଂ ପ୍ରାଚୀର ଉପରେ ବିରାଜକଲେ । ପ୍ରାଚୀର ଉପରେ ବସି ଶ୍ରୀରାମ ଯେଉଁ ଦୃଶ୍ୟ ଦେଖିଲେ, ତାହା ଏହିପରି ।

ଅସୁର ନିଜ ଆସ୍ଥାନ ଉପରେ ବସିଛି । ସର୍ବଦା 'ମହିମା' 'ମହିମା' ଶବ୍ଦରେ ସ୍ଥାନଟି ମୁଖରିତ । ଦେବଗଣ ଦାସ ଭାବରେ ସେବାରେ ନିଯୁକ୍ତ । ସପ୍ତରିଜ ବାଡ଼ତାଟି କାମରେ ନିଯୁକ୍ତ । ଏସବୁ ଦେଖି ଶ୍ରୀରାମ ଆଶ୍ଚର୍ଯ୍ୟ ହେଲେ । ଦେବତାମାନଙ୍କର କଷ୍ଟ ଦେଖି ସେ କମ୍ପି ଉଠିଲେ ।

ଘନଘନ ଧନୁଟଙ୍କାର ଶବ୍ଦ କଲେ । ଧନୁଟଙ୍କାର ଶବ୍ଦ ତିନିପୁରରେ ଶୁଭିଲା । ବିଲଙ୍କାପୁର ଥରହର ହେଲା । ଶ୍ରୀରାମ ରେ'ରେ'କାର ଶବ୍ଦ କରି ବିଲଙ୍କା ରାଜନକୁ ଆହ୍ୱାନ ଦେଲେ ଧନୁର୍ଦ୍ଧର ଯୁଦ୍ଧ କରିବା ପାଇଁ । ଦେବତାମାନଙ୍କୁ ପାଦରେ ବାନ୍ଧି ନିଜର ସାମର୍ଥ୍ୟ ପ୍ରଦର୍ଶନ ନ କରି ନିଜର ସାମର୍ଥ୍ୟ ପ୍ରମାଣ କରିବାକୁ ମୋ ସାଙ୍ଗରେ ଯୁଦ୍ଧକର—ଏହାଥିଲା ଶ୍ରୀରାମଙ୍କର ଆହ୍ୱାନ ବିଲଙ୍କା ରାଜନ ପ୍ରତି । ଶ୍ରୀରାମ କହି ଚାଲିଥିଲେ—

"ମୁଁ ହେଉଛି ଦଶରଥ ନନ୍ଦନ ଶ୍ରୀରାମ । ମୁଁ ପର୍ଶୁରାମଙ୍କର ଦର୍ପ ଗଞ୍ଜନ କଲି । ବାଳିକୁ ମାରି ସୁଗ୍ରୀବକୁ ରାଜ୍ୟଧର ଦେଲି । ରାବଣକୁ ମାରି ଲଙ୍କାପୁର ଧ୍ୱଂସ କଲି । ବର୍ତ୍ତମାନ ତୋତେ ବଧ କରିବାକୁ ମୁଁ ପ୍ରତିଜ୍ଞାବଦ୍ଧ । ତୋ'ର ସହସ୍ରଶିର ଛେଦନ କରି ମୁଁ କୀର୍ତ୍ତି ସ୍ଥାପନ କରିବି ।"

ଏକଥା ଶୁଣି ସଭାଜନେ ଆଶ୍ଚର୍ଯ୍ୟ ହେଲେ । ବିଲଙ୍କା ରାଜନ ନିଜର ସହସ୍ର ଚକ୍ଷୁରେ ଚାହିଁଲା । ମନ୍ତ୍ରୀକୁ କହିଲା—"କିଏ କ'ଣ କହୁଛି ?" ଲୋକେ କହିଲେ—"ସେ ଯୁଦ୍ଧ କରିବାକୁ ଆସିଛି ।"

ଏକଥା ଶୁଣି ଅସୁର ନିଜ ଆସନରେ ଥାଇ ହସିଲା ଏବଂ କହିଲା—କିଏ ପୁଣି ମୋ' ସାଙ୍ଗରେ ଯୁଦ୍ଧ କରିବ ? ଏତିକି କହି ସେ କରତାଳି ଦେଲା ଏବଂ କରତାଳି ଦ୍ୱାରା ନିଃସୃତ ପବନ ଶ୍ରୀରାମଙ୍କ ଅଙ୍ଗରେ ବାଜିଲା ।

ସେଇ ପବନର ବେଗ ଅଣଚାଶ ପବନର ଦ୍ୱିଗୁଣ । କୌଶଲ୍ୟା ନନ୍ଦନ ତାହା ସମ୍ଭାଳି ନ ପାରି ଆକାଶ ମାର୍ଗରେ ଉଡ଼ିବାକୁ ଲାଗିଲେ । କହୁଁ କହୁଁ ସତୁରି ଯୋଜନ ଦୂରକୁ ଉଠିଗଲେ । ବୁଢଗଣ୍ଡକୀ କୂଳରେ ଯାଇ ନିକ୍ଷିପ୍ତ ହେଲେ । ତା'ପରେ ଚେତନା ଫେରିପାଇ ଶ୍ରୀରାମ ଆଶ୍ଚର୍ଯ୍ୟ ହେଲେ । ଅତ୍ୟନ୍ତ କ୍ରୋଧରେ କୋଦଣ୍ଡ ପକାଇ ଦେଲେ । କପାଳରେ ହାତ ଦେଇ ନିଜକୁ ଧିକ୍କାର କଲେ । ନିଜ ଜନ୍ମକୁ ହୀନ ମନେକଲେ । ସାମାନ୍ୟ ଅସୁରଠାରୁ କଷ୍ଟପାଇ ମନେ ମନେ ଦୁଃଖିତ ହେଲେ । ତା'ପରେ ସେ ଯୋଗାସନରେ ବସି ନିରାକାରଙ୍କୁ ଧ୍ୟାନ କଲେ । ଘୋର ତପସ୍ୟାରେ ମଗ୍ନ ହେଲେ ।

ପବନପୁତ୍ର ହନୁମାନ ଚନ୍ଦନକାଠ ଧରି ଅଯୋଧ୍ୟାରେ ପ୍ରବେଶ କରି ଜାନକୀଙ୍କ ଚରଣରେ ପ୍ରଣିପାତ କଲେ । ହାତଯୋଡ଼ି ହନୁମାନ ପ୍ରଶ୍ନ କଲେ—କେଉଁ ସ୍ଥାନରେ ରଘୁନାଥ ବିଜେ କରିଛନ୍ତି ?

ସତୀ ସୀତାଦେବୀ କହିଲେ—"ଶୁଣ ହନୁମାନ୍, ଶ୍ରୀରାମ ବିଲଙ୍କାରେ ବିଜେ କରିଛନ୍ତି । ସହସ୍ରଶିର ରାବଣକୁ ବଧ କରିବା ପାଇଁ ସେ ସେଠାକୁ ଯାଇଛନ୍ତି ।"



# ବିଲଙ୍କାପୁରରେ ହନୁମାନ

ଶ୍ରୀ ରବିନାରାୟଣ ମହାପାତ୍ର

ଲଙ୍କା ବିଜୟ ପରେ ଭଗବାନ ରାମଚନ୍ଦ୍ର ଭଗବତୀ ସୀତାଙ୍କ ସହିତ ଅଯୋଧ୍ୟା ଫେରି ଆସିଲେ । ଏହି ବାହୁଡ଼ା ବିଜୟ ଅବସରରେ ଅଯୋଧ୍ୟାର ଭାରପ୍ରାପ୍ତ ଶାସକ ଭରତ ମହାରାଜ ଭବ୍ୟ ସମାବେଶର ଆୟୋଜନ କରିଥାନ୍ତି,..ରାଜମାତା କୈକେୟୀ ବନବାସୀ ପୁତ୍ର ଏବଂ ପୁତ୍ରବଧୂଙ୍କ ସହିତ ମିଳିତ ହୋଇ ଆନନ୍ଦରେ ଫାଟିପଡ଼ୁ ଥାଆନ୍ତି ।

ରାଜମାତା ସୁମିତ୍ରା, ତାଙ୍କ ଆଦରର ପୁତ୍ର ଲକ୍ଷ୍ମଣଙ୍କୁ କୋଳ କରିବାରେ ବିଧୁର । ଅନ୍ତଃପୁରରେ ନାନା ରୂପ, ଉଦ୍‌ବେଗକୁ ଲୁଚିରଖି ତଥାପି ମ୍ଳାନ ହସୁଥାଏ ଅଭିମାନିନୀ ଊର୍ମିଳା । ଅଯୋଧ୍ୟାର ରାଜ-ପ୍ରାସାଦରେ ସେଦିନ ଆନନ୍ଦର ବନ୍ୟା । ଅଦୂରରେ ସରଯୂ ନଦୀର ମଧୁଗୁଞ୍ଜନ, ପରିବେଶକୁ ଆହୁରି ମାର୍ମିକ କରିଥାଏ । ବିଶାଳ ଜମ୍ବୁଦ୍ୱୀପର ନୂତନ ନାମକରଣ ହିସାବରେ ଅଯୋଧ୍ୟାପତି ଭଗବାନ ଶ୍ରୀରାମଚନ୍ଦ୍ର ଘୋଷଣା କଲେ 'ଭାରତ'—ନିଜର ଶ୍ରଦ୍ଧାସ୍ପଦ ଅନୁଜ ଭରତଙ୍କ ନାମାନୁସାରେ । ଏହି ପାରିବାରିକ ପୁନର୍ମିଳନ ଏବଂ ସାମ୍ରାଜ୍ୟ ସ୍ଥାପନର ମୁଖ୍ୟ ଭିତ୍ତିଭୂମି ଭକ୍ତ ହନୁମାନ ଗଲେ କୁଆଡ଼େ ? ସେ ଦରବାର କକ୍ଷର ଅଳନ୍ଦ ନିକଟରେ ଠିଆହୋଇ ନିର୍ବିକାର ନୟନରେ ଦେଖୁଥିଲେ ମାନବ ମନର ସ୍ନେହପ୍ରୀତି, ମମତାର ପ୍ରାଣୋଚ୍ଛଳ ବନ୍ୟା । ତାଙ୍କର ଗଣ୍ଡ ବିଦ୍ରାଇ ବହି ଯାଉଥିଲା ଆନନ୍ଦାଶ୍ରୁ । କରିତକର୍ମା ହନୁମାନ କିଷ୍କିନ୍ଧ୍ୟା ରାଜ୍ୟର ସାଧିକା ଅଞ୍ଜନା ଦେବୀଙ୍କ ଯୌବନକୁ ସାର୍ଥକ କରି ଏକମାତ୍ର

ନୟନ ସଞ୍ଚାଳ ଭାବରେ ସାର୍ଥକ କର୍ମଯୋଗୀ ସମର୍ପିତ କର୍ମ ସାଧନରେ ତାଙ୍କର ପଟାନ୍ତର ନାହିଁ । ଭଗବାନ ରାମଚନ୍ଦ୍ରଙ୍କର ଅନୁଗତ ଶିଷ୍ୟ ଭାବରେ ସେ ଠାକୁରାଣୀ ସୀତାଙ୍କର ଠାବ ଏବଂ ଉଦ୍ଧାର କାର୍ଯ୍ୟରେ ପ୍ରାଣପାତ ଉଦ୍ୟମ କରିଥିଲେ । ସେହି କର୍ମ ସାଧନାର ଫଳ ସେ ନୟନ-ମଙ୍ଗଳରେ ସନ୍ଦର୍ଶନ କରି ଆନନ୍ଦ ସାଗରରେ ବୁଡି ଯାଉଥିଲେ । ଏହାହିଁ କର୍ମଯୋଗୀର ଆନନ୍ଦ—ମନୁଷ୍ୟ ଜୀବନର ଅନ୍ତିମ ଲକ୍ଷ୍ୟ ।

ରାତ୍ରିର ଦ୍ୱିତୀୟ ପ୍ରହରରେ ସୁସଜ୍ଜିତ ଶୟନ କକ୍ଷରେ ଭଗବାନ ରାମଚନ୍ଦ୍ର ଏବଂ ଭଗବତୀ ସୀତା ମଧୁର ଆଲୋଚନାରେ ମଗ୍ନ । କର୍କଶ ବନବାସ ଜୀବନ ପରେ ଏହି ଫୁଲଟିଏ ଶଯ୍ୟା ସତେ ଯେପରି ସ୍ୱପ୍ନ । ଦୀର୍ଘ ମରୁଯାତ୍ରା ପରେ ମରୁଦ୍ୱୀପରେ ପହଞ୍ଚି ଖର୍ଜ୍ଜୁର ଗଛମୂଳରେ ଜ୍ୟୋତ୍ସ୍ନାପ୍ଳାବିତ ଆକାଶକୁ ଚାହିଁ ମରୁଯାତ୍ରୀର ଆଶ୍ୱସ୍ତି ଏବଂ ତୃପ୍ତି ପରିସ୍ଫୁଟ ହେଉଥିଲା ତପସ୍ୱୀ ରାଜା ଏବଂ ରାଣୀଙ୍କ ବଦନ କମଳରେ । ପ୍ରୌଢ଼ ଦମ୍ପତି ସିଂହାବଲୋକନ କରୁଥିଲେ ହୃତ ଯୌବନର ସେଇ ରୋମାଞ୍ଚମଧୁର ସଂଗ୍ରାମଶୀଳ ଜୀବନର ମହାନ ଗାଥା ।

ହଠାତ୍ ପ୍ରଗଳ୍ଭ ହୋଇ ଉଠିଲେ ଭଗବାନ । ସେ କହିଲେ "ବୁଝିଲ ଦେବୀ ! ରାଜାର ବହୁପତ୍ନୀ ସମ୍ବଳିତ ଜୀବନକୁ ପରିହାର କରି ତମ ଭଳି ଜଣେ ଅଜ୍ଞାତ କୁଳଶୀଳା ନାରୀକୁ ଶିବଧନୁ ଭଙ୍ଗକରି ମୁଁ ଗ୍ରହଣ କରିଛି ଏବଂ ଏକମାତ୍ର ପତ୍ନୀ ହିସାବରେ ମହାରାଣୀର ସମ୍ମାନ ଦେଇଛି । ତୁମର ମର୍ଯ୍ୟାଦା ଏବଂ ପୁନରୁଦ୍ଧାର ପାଇଁ ବାଳୀ ବଧ କରିଛି ଏବଂ ସ୍ୱର୍ଣ୍ଣଲଙ୍କାକୁ ବିଜୟ କରିଛି । ମହାପରାକ୍ରମଶାଳୀ ଶିବଭକ୍ତ ବିଦ୍ୱାନ୍ ପଣ୍ଡିତ ରାବଣକୁ ମୁଁ ହତ୍ୟା କରିଛି । ବସ୍ତୁବାଦୀ ସଭ୍ୟତା ଏବଂ ସଂସ୍କୃତିର ଧ୍ୱଂସକରି ମୁଁ ପୁନଃପ୍ରତିଷ୍ଠା କରିଛି ସେଇ ସରଳ ସୁନ୍ଦର କୃଷି ସଭ୍ୟତାର । ନା କଣ କହୁଛ ରାଣୀ ?"

ସୀତାଙ୍କ ଅଧରରେ ସ୍ମିତହାସ ଫୁଟି ଉଠିଲା । ସେ ବ୍ୟଙ୍ଗ ସ୍ୱରରେ କହିଲେ—"ସତରେ ? ତୁମେ ତେବେ ଜିତିଛ ? ଆଉ ମୁଁ ? ମୁଁ ନଥିଲେ ହୁଏତ ରାବଣର ନାଗପାଶରୁ ମୁକୁଳି ତୁମେ ବିଜୟୀ ହୋଇପାରି ନଥାନ୍ତ । ବାଧିଲା କି ମୋର ଏ ଉକ୍ତି ? ହଉ ଯାହା ରାବଣକୁ ଜିତିଛ

ତେବେ ଯାଇ ବିଭୀଷଣଙ୍କାର ସେଇ ବନ୍ଦୀ ସହସ୍ରଶିରକୁ ବିଜୟୀ କରି ଦେଖି !
ତେବେ ତୁମର ବୀରତ୍ୱକୁ ମୁଁ ସାଦରେ ଗ୍ରହଣ କରିବି ।"

ଭଗବାନ ରାମଚନ୍ଦ୍ର ଆହତ ପୌରୁଷରେ ଜର୍ଜ୍ଜରିତ ହୋଇ ପ୍ରତିଜ୍ଞା କଲେ—ପରଦିନ ପ୍ରତ୍ୟୁଷରେ ସେ ବିଲଙ୍କା ଅଭିଯାନ କରିବେ । ରାମାଭିଷେକର କାର୍ଯ୍ୟକ୍ରମ ପୁଣି ସ୍ୱପ୍ନ ମଣ୍ଡିତ ହେଲା । ଆଶ୍ଚର୍ଯ୍ୟ ହେଲେ ଅଯୋଧ୍ୟାର ନରନାରୀ, ରାଜ ପରିବାର ଏବଂ ସେବାପର ବୀର ହନୁମାନ । ପ୍ରଭୁଙ୍କର ପ୍ରତିଜ୍ଞା, ଅଟଳ । ସେ ସୈନ୍ୟଗ୍ରାଳନା କରି ଏକାକୀ ଯିବେ । ସାଙ୍ଗରେ ସୀତା କିମ୍ବା ଲକ୍ଷ୍ମଣ ଯିବେନାହିଁ । ବିଲଙ୍କା ନଗରପ୍ରାନ୍ତରେ ଭଗବାନ ରାମଚନ୍ଦ୍ରଙ୍କର ରଣଶିଙ୍ଗା ବାଜି ଉଠିଲା । ବିଲଙ୍କାର ଶାନ୍ତ ଏବଂ ଶୃଙ୍ଖଳିତ ଜୀବନରେ ହଠାତ୍ ଅଦିନ ଝଡ଼ । ଏ କଣ ?? ବିବାଦ କି ବିଦ୍ୱେଷ ନାହିଁ । କାହିଁକି ଲଙ୍କା ବିଜୟୀ ରାବଣାରିଙ୍କର ଏ ବିଲଙ୍କା ଅଭିଯାନ ? ନିର୍ବିକାର ଚିତ୍ତରେ ସହସ୍ରଶିର ବନ୍ଦୀ କଲା ଭଗବାନ ଶ୍ରୀରାମଙ୍କୁ ଏବଂ ନିଜର ଇଷ୍ଟଦେବୀଙ୍କୁ ବଳି ଦେବାପାଇଁ ମନସ୍ଥ କଲା ତାଙ୍କୁ । ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଏଁ ଅସହାୟ ପରିସ୍ଥିତି ମନସ୍ତାତ୍ତ୍ୱିକ ତରଙ୍ଗ ସୃଷ୍ଟି କରି ସୁଦୂରରେ ଅଯୋଧ୍ୟା ରାଜପୁରୀରେ ସ୍ପର୍ଶ କଲା ଭଗବତୀ ସୀତା-ଦେବୀଙ୍କୁ । ଶକ୍ତିହୀନ ରାମଚନ୍ଦ୍ରଙ୍କୁ ଉଦ୍ଧାର କରିବା ପାଇଁ ଶକ୍ତିମୟୀ ଦେବୀ ପରମଭକ୍ତ ହନୁମାନଙ୍କୁ ବିଲଙ୍କା ପ୍ରେରଣ କଲେ । ତତ୍କ୍ଷଣାତ୍ ବାୟୁ-ପଥରେ ବିଲଙ୍କାରେ ପହଞ୍ଚିଗଲେ ବୀର ହନୁମାନ । ପଥ ମଧ୍ୟରେ ସେ ଅଟକିଥିଲେ କ୍ଷଣେ ବିଭୀଷଣ ଶାସିତ ଲଙ୍କାଗଡ଼ଠାରେ ।

ପରମବନ୍ଧୁ ହନୁମାନଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇଲେ ରାଜା ବିଭୀଷଣ ଏବଂ ରାଣୀ ମନ୍ଦୋଦରୀ । ଅତିଥି ସତ୍କାର ପରେ ରାଜାରାଣୀ ପଚାରିଲେ ଆଗମନର ଉଦ୍ଦେଶ୍ୟ । ଏକାକୀ ଭଗବାନ ଶ୍ରୀରାମଚନ୍ଦ୍ର ପରମ ପରାକ୍ରମଶାଳୀ ସହସ୍ରଶିର ବନ୍ଧନରେ ବିଲଙ୍କା ଅଭିଯାନ ସନ୍ଦେଶ ପାଇ ସେମାନେ ବିଚଳିତ ହେଲେ । ସେ ଦଣ୍ଡବଳ ସହିତ ବିଲଙ୍କା ଅଭିଯାନ ପାଇଁ ପ୍ରସ୍ତୁତ ହୁଅନ୍ତେ ହନୁମାନ ତାଙ୍କୁ ବାରଣ କରି କହିଲେ, "ଅପେକ୍ଷା କରନ୍ତୁ; ମୁଁ ଭଗବାନଙ୍କୁ ଠାବକରି ତାଙ୍କ ବାର୍ତ୍ତା ଆପଣଙ୍କୁ ଦେଲେ ଆପଣ ଯିବେ ।" ବିଲଙ୍କା ନଗରର ସୀମାନ୍ତରେ ଅବସ୍ଥିତ ପ୍ରଚଣ୍ଡ ପର୍ବତରେ ଦଣ୍ଡାୟମାନ ହୋଇ ଦକ୍ଷିଣମୂର୍ତ୍ତି ହନୁମାନ୍ ବିଲଙ୍କା ନିରୀକ୍ଷଣ କଲେ ।

ବିଶାଳକାୟ ଅସୁର ଗହଳ ମଧ୍ୟରେ କେଉଁଠି ସେ ଠାବ କରିବେ କୋଦଣ୍ଡଧର ରାମଚନ୍ଦ୍ରଙ୍କୁ, କିଛି ବୁଦ୍ଧି ବାଟ ଦିଶିଲା ନାହିଁ ଆଞ୍ଜନେୟଙ୍କୁ । ରାତି ହେଲେ ସେ ବିଲଙ୍କା ପ୍ରବେଶ କରିବେ ନିଷ୍ପତ୍ତି କରି ରାମନାମ ସ୍ମରଣ କଲେ । ସନ୍ଧ୍ୟା ହେଲା । ତାରକାଚର୍ଚ୍ଚିତ ରଜନୀର ଆଦ୍ୟ ମୁହୂର୍ତ୍ତରେ ରୂପ ବଦଳାଇ ହନୁମାନ ଉତ୍ତରଗଡ଼ ଦ୍ୱାର ମଧ୍ୟ ଦେଇ ବିଲଙ୍କା ପ୍ରବେଶ କଲେ । କେଉଁଠି ମର୍କଟ କେଉଁଠି ଶ୍ୱାନ ତ କେଉଁଠି ଭ୍ରମର ବେଶଧରି ପବନକୁମର ଭଗବାନ ଶ୍ରୀରାମଙ୍କୁ ଖୋଜୁଥିଲେ । ଅଧରାତିରେ ସେ ମନ୍ତ୍ରୀ ନିଶିରଙ୍କ ପ୍ରାସାଦରେ ପହଞ୍ଚିଲେ । ଉତ୍କଟ ବିଳାସବ୍ୟସନର ସେଇ ପରିବେଶରେ ସେ ଶୁଣିଲେ ରାଜାଙ୍କ ଉକ୍ତି । ରାଜା ମନ୍ତ୍ରୀଙ୍କୁ ପଚାରୁଛନ୍ତି, "କିଏ ଏହି ରାମ ? କ'ଣ ତା'ର ବଂଶ ପରିଚୟ ? ହନେ ଆସି ଯାଇଛି ଯେ ଆଜି ଦେଖା ନାହିଁ । କ'ଣ ତା'ର ଆଗମନର ଉଦ୍ଦେଶ୍ୟ, ଜାଣି ତ ହେଲାନାହିଁ ?"

ମନ୍ତ୍ରୀ କହିଲେ, "ଭଗବାନ ରାମଚନ୍ଦ୍ର ରାବଣକୁ ବଧକରି ଲଙ୍କା ଜୟ କରିଛନ୍ତି ଏବଂ ବିଜିତ ଲଙ୍କାର ସ୍ୱର୍ଣ୍ଣ ସିଂହାସନରେ ରାବଣ ଅନୁଜ ବିଭୀଷଣଙ୍କୁ ଅଲଙ୍କୃତ କରିଛନ୍ତି । ଦଶରଥ ତନୟ ଶ୍ରୀରାମ ହେଉଛନ୍ତି ଭଗବାନଙ୍କର ଅବତାର । ସେ ଅସୁର ସଭ୍ୟତା ଧ୍ୱଂସ କରି ଦେବ ସଭ୍ୟତା ପ୍ରତିଷ୍ଠା କରିବେ । ସେଥିପାଇଁ ବୋଧହୁଏ ସେ ବିଲଙ୍କା ବିଜୟ ପାଇଁ ଆସିଛନ୍ତି । ତାଙ୍କର ଶରଣ ପଶିଲେ ବିଲଙ୍କା ସୁରକ୍ଷିତ ହେବ ।"

ମନ୍ତ୍ରୀଙ୍କର ଏ କାପୁରୁଷୋଚିତ ପରାମର୍ଶରେ ବିଚଳିତ ହେଲେ ଅସୁରରାଜା । ସେ ନିଜର ଜାଗତିକ ବୈଭବ ଉଲ୍ଲେଖ କରି ବିନାଯୁଦ୍ଧରେ ଆତ୍ମସମର୍ପଣ କରିବେ ନାହିଁ ବୋଲି ଘୋଷଣା କଲେ । ଏହାଶୁଣି ହନୁମାନ ବିଶାଳ ନଗରର ଚତୁର୍ଦ୍ଦିଗ ଖେଦି ବୁଲିଲେ । ଏହିପରି ଅବିଶ୍ରାନ୍ତ ଭାବରେ ତନଘନ ଧରି ଖୋଜିଲେ ମଧ୍ୟ ସେ ଶ୍ରୀରାମଙ୍କୁ ଠାବକରି ପାରିଲେ ନାହିଁ । କଣ୍ଠରେ ପ୍ରବଳ ତୃଷା, ଦକ୍ଷିଣଦ୍ୱାର ପାଖରେ ସରୋବର ଅଛି । କେହି ମିତ୍ର ଜଳପାନ କଲେ ତା'ର ତୃଷା ନିବାରିତ ହୁଏ, ମାତ୍ର ଶତ୍ରୁ ଜଳପାନ କଲେ ବିଷକ୍ରିୟାରେ ସେ ପ୍ରାଣ ହରାଏ । ଗ୍ରାମଦେବତୀ ଶତ୍ରୁ ମିତ୍ରର ଏ ବାଛବିଚାର କରି କର୍ମବିଧାନ କରିଥାନ୍ତି । ହନୁମାନ ସେହି

ଗ୍ରାମଦେବତାଙ୍କୁ ଭେଟିଲେ ଏବଂ ତୃଷାତୁର ହୋଇ ସରୋବରର ଜଳ ପାନ କଲେ । ବିଷ ଜ୍ୱାଳାରେ ସେ ଚ୍ୟୁତବୃକ୍ଷ ତଳେ ମହାନଦୀରେ ମଗ୍ନ ହେଲେ । ତାଙ୍କର ଅସ୍ଥି ଏବଂ ମାଂସ ଖଣ୍ଡ ଖଣ୍ଡ ହୋଇ ଝଡ଼ି ପଡ଼ିଲା । ହନୁମାନଙ୍କର ମୃତ୍ୟୁ ହେଲା । ତେଣେ ଭଗବାନ ଶ୍ରୀରାମ କଠୋର ତପରେ ଆସୀନ ସ୍ରଷ୍ଟା ପଦ୍ମଯୋନୀ ବ୍ରହ୍ମାଙ୍କ ଆସନ, ସେଇ ତପସ୍ୟା ତରଙ୍ଗରେ ଦୋହଲି ଗଲା । ତାଙ୍କୁ ଦେବଗୁରୁ ବୃହସ୍ପତି ବର୍ଣ୍ଣନା କରି କହିଲେ, ଭଗବାନ ରାମଚନ୍ଦ୍ର ଏକାକୀ ଅସହାୟ ଭାବରେ କଠୋର ତପମଗ୍ନ । ତାଙ୍କର ପରମଶିଷ୍ୟ ହନୁମାନଙ୍କର ସନ୍ଧାନ ମିଳୁନାହିଁ । ଭଗବାନ ବାୟୁ ଦେବତା ପର୍ବତ ଅନ୍ୱେଷଣ କରି ପୁତ୍ରକୁ ନପାଇ ଦେବସଭାରେ କ୍ରନ୍ଦନ କଲେ । ଦେବଗୁରୁ ବୃହସ୍ପତି ତାଙ୍କୁ ହନୁମାନଙ୍କ ମୃତ୍ୟୁ ସମ୍ବାଦ ଦେଲେ ।

ବିଷପାନରେ ପ୍ରାଣାଧିକ ପୁତ୍ରର ମରଣ ସମ୍ବାଦ ପାଇ ବିଚଳିତ ହୋଇ ଉଠିଲେ ପବନ ଦେବତା । ତାଙ୍କର କ୍ରନ୍ଦନ-ଧ୍ୱନିରେ ସୃଷ୍ଟି ଚନ୍ଦ୍ର ସ୍ଥାଣୁ ହୋଇଗଲା । ଦେବଗଣଙ୍କ ଆଶ୍ୱାସନାରେ ସେ ଆଶ୍ୱସ୍ତ ହେଲେ, ସକଳ ଦେବଗଣ ବଳଙ୍କାରେ ନଭସ୍ତରେ ପହଞ୍ଚିଗଲେ । ମୃତ ହନୁମାନ-ଙ୍କର ବିକ୍ଷିପ୍ତ ଅସ୍ଥି ସବୁ ଏକତ୍ର କରାଗଲା । ତହୁଁ ସୂନାଶିର ଧର୍ମରାଜ ଯମଦେବତା ଅମୃତ ବୃଷ୍ଟି କରି ସଞ୍ଜିବନୀ ମନ୍ତ୍ର ପାଠକଲେ, ବୀର ହନୁମାନଙ୍କର ଚେତନା ଫେରି ଆସିଲା । ସେ ଯେପରି ଗଭୀର ନିଦ୍ରାରୁ ଆଖି ମଳମଳ ଉଠି ବସିଲେ ।

ତତ୍‌କ୍ଷଣାତ ହନୁମାନ ସୁରବୃନ୍ଦଙ୍କୁ ଆଖିବୁଲେଇ ଖୋଜିଲେ ଭଗବାନ ଶ୍ରୀରାମଙ୍କୁ । କୁଆଡ଼େ ଗଲେ ଭକ୍ତର ଭଗବାନ ତପସ୍ୱୀ ରାଜା ଭଗବାନ । ସମସ୍ତେ ନିରୁତ୍ତର । ମାତ୍ର ବିଶ୍ୱସ୍ରଷ୍ଟା ବେଦପତି ବ୍ରହ୍ମା କହିଲେ ଯେ ଅସୁରଙ୍କ ପ୍ରଖର ନିଃଶ୍ୱାସରେ ପବନରେ ଉଡ଼ିଗଲେ ଭଗବାନ । ସେ ଏବେ ବୃଦ୍ଧା ଗଙ୍ଗାଙ୍କ କୂଳରେ ବସି କଠୋର ତପସ୍ୟାମଗ୍ନ ଅଛନ୍ତି । ପ୍ରଭୁଙ୍କ ଉଦ୍ଧାର କେବଳ ହନୁମାନଙ୍କ ଦ୍ୱାରା ସମ୍ଭବ ବୋଲି କହି ଦେବଗଣ ବୀର ହନୁମାନଙ୍କୁ ଆଶ୍ୱାସନା ଦେଲେ ଏବଂ ତାଙ୍କ ଶରୀରକୁ ବଜ୍ରଠାରୁ କଠିନ କରିଦେଲେ । ବଜ୍ରଠାରୁ କଠିନ ହୋଇଗଲା ହନୁମାନଙ୍କ ଶରୀର । ଦେବଗଣ ସ୍ୱର୍ଗଲୋକକୁ ଫେରିଗଲେ ।

ରକ୍ତବୀର୍ଯ୍ୟ ଅଚେତନ ହୋଇପଡ଼ିବା ଦେଖି ଗୃମର ବେମାଳ ଧାଇଁଲେ । ଏକା ଗୃମର ବେମାଳ ନୁହଁନ୍ତି । କାଳମାଳୀ ଧାଇଁଲା ଶୁମ୍ଭ ନିଶୁମ୍ଭଙ୍କ ପାଖକୁ । ମାତ୍ର ଶୁମ୍ଭ ନିଶୁମ୍ଭଙ୍କ ପାଖରେ ଏମାନେ ବା କେତେ ସମୟ ସମର କରିପାରିବେ ? ଖୁବ୍ ଅଳ୍ପ ସମୟ ମଧ୍ୟରେ ନିଶୁମ୍ଭ ସମସ୍ତଙ୍କୁ ପରାସ୍ତ କରି ଧାଇଁଲା ମହିଷାସୁର ନିକଟକୁ । ମହିଷାସୁର ମଧ୍ୟ ତା'ର ସୈନ୍ୟ ସେନାପତିଙ୍କ ଦୂରବସ୍ଥା ଦେଖି ଶୁମ୍ଭ ନିଶୁମ୍ଭଙ୍କ ନିକଟକୁ ଧାଇଁ ଆସିଲା । ହସ୍ତରେ ତା'ର ବିଶାଳ ଧନୁ । ଆଖି ପିଛୁଡ଼ାକେ ଶହ ଶହ ଶରମାରି ଶୁମ୍ଭ ନିଶୁମ୍ଭଙ୍କୁ ସେ ଶରଜାଲରେ ଛନ୍ଦି ପକାଇଲା ।

ଶୁମ୍ଭାସୁର ଠୋ' ଠୋ' ହୋଇ ହସି ଗୋଟିଏ ଶରରେ ତା'ର ସମସ୍ତ ଶରକୁ ନିବାରଣ କରି ବଜ୍ର ଶର ପେଷିଲା ମହିଷାକୁ । ମହିଷାର ଦେହ ବଜ୍ରଠାରୁ କଠିନ । ତେଣୁ ଶୁମ୍ଭର ବଜ୍ର ଶର ତା' ଦେହରେ ବାଜିଲା ଏକ ନିର୍ଘାତ ଶବ୍ଦକରି । ତା'ପରେ ଖସିପଡ଼ିଲା ଭୂମି ଉପରେ ।

ଉଭୟେ ବ୍ରହ୍ମାଙ୍କ ବଳରେ ବଳୀୟାନ । କିନ୍ତୁ ଜଣେ କନିଷ୍ଠ ଓ ଅପରଟି ବୟୋଜ୍ୟେଷ୍ଠ । ମହିଷାସୁର ତା'ର ମନ୍ତ୍ରୀ ଅନ୍ଧକଠାରୁ ଶୁମ୍ଭନିଶୁମ୍ଭ ବିଷୟରେ ସମସ୍ତ ଶୁଣିଛି । କିନ୍ତୁ ବିଶ୍ୱାସ କରିନାହିଁ ପୂର୍ବମାନାରେ । ସେ ଭାବୁଥାଏ, ଯଦି ମନ୍ତ୍ରୀ କଥା ସତ ହୁଏ ତେବେ କଳେବଳେ କୌଶଳେ ସେ ଦୁହିଁକୁ ବଶ କରିବ । ଯେତେହେଲେ ବୟସରେ ସେମାନେ କନିଷ୍ଠ । ସେମାନେ କ'ଣ ଜ୍ୟେଷ୍ଠର କଥାକୁ ଅବହେଳା କରିବେ ?

ଶୁମ୍ଭ ନିଶୁମ୍ଭଙ୍କ ସହିତ ଯୁଦ୍ଧ କରୁ କରୁ ମହିଷାସୁର ଏକ ମହିଷ ରୂପ ଧାରଣ କଲା । ଶିଙ୍ଗ ହଲାଇ ଲାଙ୍ଗୁଡ଼ ଟେକି ସେ ଯୁଦ୍ଧଭୂମିରେ ଡେଇଁବାକୁ ଲାଗିଲା । ତା' ଖୁରା ଘାତରେ ଧୂଳି ଉଡ଼ାଇ ଆଚ୍ଛାଦିତ କଲା ଆକାଶକୁ । ତା'ର ଏଭଳି କାଣ୍ଡରେ ବିସ୍ମିତ ହୋଇ ପଡ଼ିଲେ ଶୁମ୍ଭ ନିଶୁମ୍ଭ ।

ଶୁମ୍ଭ ଆଦେଶ ଦେଲା, ସାବଧାନ ! ନିଜ ଶକ୍ତି କେହି ଖର୍ଚ୍ଚ କର ନାହିଁ । ବୁଢ଼ାଟା ନାଚି ନାଚି କ୍ଲାନ୍ତ ହୋଇଗଲେ ଆମେ ଅବଶ୍ୟ ତାକୁ ଧରିପାରିବା । "

ବାନ୍ତ ନ କଲାଯାଏ ଅସୁର ଯାଏ କୁଆଡ଼େ । ତେବେ ହନୁମାନ ଖସିଗଲେ । ପ୍ରଭୁ ବନ୍ଦୀ ହୋଇଗଲେ । ହନୁମାନ ବହୁ କୌଶଳରେ ଭଗବାନ ଶ୍ରୀରାମଚନ୍ଦ୍ରଙ୍କୁ ଉଦ୍ଧାର କଲେ ।

ହନୁମାନ ଯଜ୍ଞସ୍ଥଳ ଅପବିତ୍ର କରିଦେଇ ପ୍ରଭୁଙ୍କୁ ମୁକୁଳେଇ ନେଲେ । ତହୁଁ ସେ ଦୁହେଁ ଅସୁରକୁ ଯୁଦ୍ଧଂଦେହି ଡାକରା ଦେଲେ । ପ୍ରଚଣ୍ଡ ଯୁଦ୍ଧରେ ଦୁହେଁ ପଛଘୁଞ୍ଚା ହେଲେ । ହନୁମାନ ନିରୁପାୟ । କ'ଣ ସେ କରିବେ ? ଗୃହଦିନ ଧରି ହେଲା ଉଭୟଙ୍କର ଯୁଦ୍ଧ । ଗଗନ-ପବନ ରେରେ କାର ଧ୍ୱନିରେ ମୁଖରିତ । ଶେଷକୁ ଭଗବାନ ଦୁଇଥର ପରାଜିତ । ଏଥିକୁ ଉପାୟ କ'ଣ । ଚିନ୍ତାକଲେ ପବନତନୟ ବୀର ହନୁମାନ, କିନ୍ତୁ ବୁଦ୍ଧି ବାଟ ଦିଶୁନାହିଁ । ଶ୍ରମକ୍ଳାନ୍ତ ଯୋଗୁଁ ଭଗବାନ ନିଦ୍ରାଗତ !

ଯୁଦ୍ଧକ୍ଷେତ୍ରରୁ ଫେରି ବିଲଙ୍କା ନୃପତି ଜନଶୂନ୍ୟ ରାଜଧାନୀକୁ ଦେଖିଲା । ପୁତ୍ର ନାତି ରାଉତ ମାହୁନ୍ତ ସମସ୍ତଙ୍କୁ ରଘୁନାଥ ମାରି ଦେଇଛନ୍ତି । ଏପରି ଚିନ୍ତା କରୁ କରୁ ଅସୁରରାଜା ଗଭୀର ଚିନ୍ତାରେ ଆଚ୍ଛନ୍ନ ହେଲା । ମାତ୍ର ପ୍ରଚଣ୍ଡ ପର୍ବତରେ ଭଗବାନ ଅସୁର ନିଧନ ଚିନ୍ତାରେ ନିଦ୍ରାତେଜି ଜାଗ୍ରତ ହେଲେ । ସେ ଆଗାମୀ ଯୁଦ୍ଧ ସମ୍ପର୍କରେ ହନୁମାନଙ୍କ ସହିତ ଚର୍ଚ୍ଚା କଲେ ।

ମନରେ ସ୍ମରଣ କରୁ କରୁ ଦେବଗଣ ଆସି ପହଞ୍ଚିଗଲେ । ସେମାନଙ୍କୁ ଦେଖି ରଘୁନାଥ କହିଲେ ଯେ, ସେମାନଙ୍କ ହିତ ଓ ସୁରକ୍ଷା ପାଇଁ ସେ କୁଣ୍ଠାବୋଧ କରୁଛନ୍ତି । ଗୋଟାଏ ଅସୁରକୁ ସିଏ ଯେ ପାରୁନାହାନ୍ତି । ତାଙ୍କ ହାତରେ ହୁଏତ ଅସୁର ମରିବ ନାହିଁ । ତେଣୁ ସର୍ବଦେବଗଣ ମିଳି ଯୁଦ୍ଧ କରନ୍ତୁ । ସେ ସନ୍ନ୍ୟାସୀ ହୋଇ ବଣକୁ ଚାଲିଯିବେ । ଅଯୋଧ୍ୟାପୁରକୁ ଫେରିଯିବାର ତ ପ୍ରଶ୍ନ ନାହିଁ । ସେଠାରେ ଜନକ-ନନ୍ଦିନୀଙ୍କର ବହୁ ଇଙ୍ଗିତ ଓ ପରିହାସର ଶିକାର ହେବାକୁ ପଡ଼ିବ ଯେ ।

ତହୁଁ ଦେବଗଣ ଉତ୍ତର ଦେଲେ । କେବଳ ଭଗବତୀ ସୀତା ନ ଆସିଲେ ଅସୁର ମରିବ ନାହିଁ । ଶକ୍ତି ବିନା ଶକ୍ତିମାନ ଭଗବାନ ନିରୁପାୟ । ତେଣୁ ହନୁମାନ ଅଯୋଧ୍ୟାରୁ ଭଗବତୀ ସୀତାଙ୍କୁ ନେଇ ଆସନ୍ତୁ ।

ମହିଷାସୁର ମୂଳ ଉଡ଼ାଇ କରି ସମସ୍ତ ଡେଇଁଲା ପରେ ପୁଣି ମହିଷ ଶରୀର ଧାରଣ କଲା । ସେହି ସମୟରେ ଶୁମ୍ଭ ନିଶୁମ୍ଭ ଓ ତା'ର ସୈନ୍ୟ ମାନେ ତାକୁ କାବୁ କରିଦେଲେ । ସେତେବେଳେ ସେ ବୁଝିଲା ମହାକାଳର କୁଟିଳ ଗତି କଣ ?

ମନକୁ ମନ ସେ କହିଲା, ଷଡି ସ୍ବର ହାରିବା ଜିତିବା ସମାନ । ହାରିବା ସମ୍ମତ ପାଳଣ କରିନେଲେ ଜିତିବା ଫଳ ମିଳିଥାଏ । ଯେତେ-ବେଳେ ଶୁମ୍ଭ ନିଶୁମ୍ଭ ତା' ପାଖରେ ଥିଲେ । ଥିଲେ ସେ'ଠାକୁ କୋଳେଇ ନେବା ବୁଦ୍ଧିମାନର କାର୍ଯ୍ୟ ।

ସେତେବେଳେ ମହାକାଳ ହସୁଥିଲା । କହୁଥିଲା କେତେକାଳ ତୁ କାହା ସମ୍ମତ ପାଳଣ୍ କରିପାରିବୁ ମୁଁ ଦେଖିବି । କିନ୍ତୁ ସେ ହସ—ତା'ର କଥା ମହିଷାସୁରକୁ ଶୁଭୁ ନଥିଲା । ସେ ଗ୍ରୀବାନତ କରି ଶୁମ୍ଭ ନିଶୁମ୍ଭଙ୍କ ନିକଟରେ ପରାଜୟ ସ୍ୱୀକାର କରୁଥିଲା ।



ଶତସେନ ବିମାନ ଚଳାଇ ଶୀଘ୍ର ଅଯୋଧ୍ୟା ଯାଇ ଭଗବତୀଙ୍କୁ ନେଇ ଆସନ୍ତୁ । ଭଗବାନ ଅସମ୍ମତ ହେଲେ, ମାତାଙ୍କ ସତ୍ତ୍ୱତ କଥା କହାକହିରୁ ସେ ଏଠାକୁ ଆସିଛନ୍ତି ସଂଗ୍ରାମ କରିବାକୁ, ତାଙ୍କୁ ନ ଆଣିଲେ ଯୁଦ୍ଧରେ ପରାଜିତ ହେବାକୁ ପଡ଼ିବ !

ଏଣେ ଦେବଗଣ ସ୍ତୁତି କରୁଛନ୍ତି, ସୀତା ନ ଆସିଲେ ଅସୁର ସଂହାର ହୋଇ ପାରିବ ନାହିଁ । ବିରୂପାସ୍ୟ ହୋଇ ଆହତ ପୌରୁଷରେ ହନୁମାନଙ୍କୁ ଆଜ୍ଞା ଦେଲେ ଯେ ଲକ୍ଷ୍ମଣ ଓ ସୀତା ଉଭୟଙ୍କୁ ଅଯୋଧ୍ୟାରୁ ନେଇଯିବା ପାଇଁ । ହନୁମାନ ଅଯୋଧ୍ୟା ଯାତ୍ରାକଲେ, ବାଟରେ ସେ କିଷ୍କିନ୍ଧାରେ ଓହ୍ଲାଇ ରାଜା ସୁଗ୍ରୀବଙ୍କୁ ଭେଟିଲେ, ଦ୍ୱିତୀୟ ଦିନରେ ସରଯୂ ନଦୀ କୂଳରେ ପହଞ୍ଚି ସେ ବିଶ୍ରାମ କଲେ, ରାତି ପାହିବାରୁ ଅଯୋଧ୍ୟା ନଗରୀରେ ସେ ପ୍ରବେଶ କଲେ, ଭଗବତୀ ସୀତାଙ୍କୁ ଯାଇ ସେ ଭେଟିଲେ । ଭଗବାନ ଶ୍ରୀରାମ, ନରଲୋକ ସମସ୍ତଙ୍କୁ ନିହତ କରି ଦେଇଥିଲେ ମଧ୍ୟ ଲଙ୍କା ରାଜନ ତଥାପି ଅପରାଜେୟ । ତାଙ୍କୁ ଯୁଦ୍ଧରେ ପାରୁନାହାନ୍ତି ଭଗବାନ ।

ତେଣୁ ଭଗବତୀ ସୀତା ଏବଂ ଲକ୍ଷ୍ମଣଙ୍କୁ ଯୁଦ୍ଧ କ୍ଷେତ୍ରକୁ ତତ୍‌କ୍ଷଣାତ୍ ନେଇ ଯିବାକୁ ଭଗବାନ ଭକ୍ତ ହନୁମାନଙ୍କୁ ପଠାଇଛନ୍ତି । ମହାସତୀ ସୀତା ଏହା ଶୁଣି ସ୍ମିତହାସ୍ୟ କଲେ, ଭଗବତୀଙ୍କ ନିର୍ଦ୍ଦେଶରେ ହନୁମାନ ଲକ୍ଷ୍ମଣଙ୍କୁ ଡାକି ଆଣିବାକୁ ଯିବାବେଳେ କୌଶଲ୍ୟାଙ୍କୁ ସାକ୍ଷାତ କଲେ । ଦୀର୍ଘ ଚଉଦ ବର୍ଷର ବିଳପିତ ମାତୃତ୍ୱ ଏ ଦାରୁଣ ସମ୍ବାଦରେ ହାହାକାର କରିଉଠିଲା । କେବେ ପ୍ରାଣୋପମ ପୁତ୍ର ଫେରିବ ମାତୃ-କୋଳକୁ ?

ଇତି ମଧ୍ୟରେ ଲକ୍ଷ୍ମଣ ସେଠାରେ ପହଞ୍ଚିଗଲେ । ସବୁ ବିଷୟ ଶୁଣି ଲଙ୍କା ଯିବାକୁ ଭ୍ରାତୃଭକ୍ତ ଲକ୍ଷ୍ମଣ ତତ୍‌କ୍ଷଣାତ ପ୍ରସ୍ତୁତ ହୋଇଗଲେ, ହନୁମାନ ଲକ୍ଷ୍ମଣ ଓ ସୀତାଙ୍କୁ ଘେନି ଲଙ୍କା ଯିବା ବାଟରେ ରାଜା ସୁଗ୍ରୀବଙ୍କୁ ସାକ୍ଷାତ କଲେ, ଅତୀତର କେତେ ସ୍ମୃତି-ଠାକୁରାଣୀ ସୀତା ଏବଂ ଦେବର ଲକ୍ଷ୍ମଣଙ୍କ ମାନସପଟରେ ନାଚିଗଲା । ବାଟରେ ଶିବକୂଟ ପର୍ବତ ଅତିକ୍ରମ କରି ସେମାନେ ଆସିଛନ୍ତି ।

ଏହି ଚିତ୍ରକୂଟରୁ ରାବଣ ସୀତା ହରଣ କରି ଅଶୋକ ବନରେ ବନ୍ଦୀ କଲା । କିଷ୍କିନ୍ଧ୍ୟାରେ ରାଜା ସୁଗ୍ରୀବ ମହାଦେବଙ୍କ ତାଙ୍କ ସହିତ ସିଂହଦ୍ୱାରରୁ ଅର୍ଘ୍ୟଥାଳିରେ ବନ୍ଦାପନା କରି ଭଗବନ୍ତ ସୀତା ଏବଂ ଅନୁଜ ଲକ୍ଷ୍ମଣଙ୍କୁ ସ୍ୱାଗତ କଲେ ।

"ଜଗତର ଠାକୁରାଣୀ ହୋଇ ଅବତାର
ଅସୁର ମାରଣ ଭୂଇଁ ପାଳିବୁ ସଂସାର ।"

ବୋଲି ସୁଗ୍ରୀବ ଦମ୍ପତି ଜଗଜ୍ଜନନୀଙ୍କୁ ବନ୍ଦନା କଲେ ।

କିଷ୍କିନ୍ଧ୍ୟାରେ ତିନିଏ ରହି ସେମାନେ ବିଲଙ୍କା ଗଲେ । ତେବେ ଅଯୋଧ୍ୟାରୁ ଯାଇ ବିଲଙ୍କାରେ ପହଞ୍ଚିବାରେ ଛ'ମାସ ସମୟ ଲାଗିଲା । ମକର ମାସରେ ଆରମ୍ଭ ହୋଇଥିବା ଯାତ୍ରା ଆଷାଢ଼ ମାସରେ ସରିଲା । ରାମ-ସୀତାଙ୍କର ମିଳନ ହେଲା । ଉପୁରେ କଟକ ଭିତରୁ ଅସୁର ଆସୁନାହିଁ । କ'ଣ କରାଯିବ ? ତହୁଁ ହନୁମାନ ଉତ୍ତର ଦୁଆର ଗଡ଼ରେ ପ୍ରବେଶ କଲେ । ହନୁମାନର ହିଁଙ୍କାର ଅସୁରେ ସହିପାରିଲା ନାହିଁ । ଅସୁରଗଡ଼ ଅକାରଣରେ କାହିଁକି ଧ୍ୱଂସକଲୁ ବୋଲି କ୍ରୋଧରେ ଅସୁର ଚିତ୍କାର କଲା ।

ଅସୁର ଓ ହନୁମାନ ଦୁହେଁ ଯୁଦ୍ଧରେ ମାତିଗଲେ । କି ସାଙ୍ଘାତିକ ସେ ଯୁଦ୍ଧ । ଇତିମଧ୍ୟରେ ରଥ ଚଢ଼ି ଲକ୍ଷ୍ମଣ ସେଠାରେ ପହଞ୍ଚିଗଲେ । କିଛିକ୍ଷଣ ପାଇଁ ଅସୁର ଚେତା ହରାଇଲା । ଅସୁର ଜାଣିଲା ଯେ ସେ ଭଗବାନ୍ ଶ୍ରୀରାମଙ୍କ ଅନୁଜ ବୀର ଲକ୍ଷ୍ମଣ । ସେ ପଚାରିଲା ଯେ ବିନା କାରଣରେ ତା' ରାଜ୍ୟକୁ କାହିଁକି ଧ୍ୱଂସ କରାଗଲା ?

ଏହା କହି ସେ ରଥ ସହିତ ଲକ୍ଷ୍ମଣଙ୍କୁ କାବୁ କରିଦେଲା । ତହୁଁ ହନୁମାନ ଅସୁର ବାଧାରେ ହରାଇ ଥିବା ଚେତା ଫେରିପାଇ ପୁଣି ଆକ୍ରମଣ କଲେ । ତାଙ୍କର ଯୁଦ୍ଧ ଦେଖି ସ୍ୱର୍ଗପୁରର ଦେବଗଣ "ଧନ୍ୟ ଧନ୍ୟ ହନୁମାନ" ବୋଲି ଦୁଆ ଧରିଲେ । ତେଣେ ଲକ୍ଷ୍ମଣଙ୍କ ପ୍ରବଳ ଆକ୍ରମଣକୁ ପ୍ରତିହତ କରୁଥାଏ ଅସୁର, ଦୁଇଦିନ ଅତିକ୍ରମ ପ୍ରହର ଯୁଦ୍ଧ ହେଲା । କେହି ନ ବିଜୟୀ ହେଉ ନାହାନ୍ତି ଯୁଦ୍ଧରେ ।

ସୀତାଙ୍କୁ ଦେଖାଇବାକୁ କରିବାର ଭାର ଶତ୍ରୁଘ୍ନଙ୍କୁ ଦେଇ ରଘୁନାଥ ଯୁଦ୍ଧକ୍ଷେତ୍ରରେ ପହଞ୍ଚିଲେ । ରଘୁନାଥଙ୍କର ସକଳ ଅସ୍ତ୍ରଶସ୍ତ୍ର ଏବଂ ପ୍ରବଳ ଆକ୍ରମଣ ପ୍ରତିହତ ହୋଇଗଲା । ସେତେବେଳେ ଅସୁରଙ୍କର ଆକ୍ରମଣ ସବୁ ଯେ ପାଣି ଫାଟିଯାଉଛି । ସେହି ସାଂଘାତିକ ଲୋମହର୍ଷଣକାରୀ ଯୁଦ୍ଧର ପଟାନ୍ତର ନାହିଁ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ କମ୍ପୁଛି । ବାସୁକୀ ନୃମଙ୍ଗ ମଧ୍ୟ କମ୍ପି ଉଠୁଛନ୍ତି । ପାଞ୍ଚଦିନ ବ୍ୟାପୀ ଏ ଘୋର ସମରରେ କେହି ବିଜୟୀ ହୁଅନ୍ତି କି କେହି ପରାଜିତ ହୁଅନ୍ତି ।

ସଙ୍କଟାପନ୍ନ ପରିସ୍ଥିତିରେ ଦେବଗଣ ଆଉ ସମ୍ଭାଳି ପାରିଲେ ନାହିଁ । ସେମାନେ ସଙ୍କଟମୋଚନ ପାଇଁ ମହାମାୟା ସୀତାଙ୍କୁ ସ୍ତୁତି କଲେ । ଶରଣାଗତ ଦେବଗଣଙ୍କର ଆକୁଳ ମିନତି ଶୁଣି ସୁସଜ୍ଜିତା ଅଷ୍ଟ ଅଳଙ୍କାର ଭୂଷିତା ଅନୁପମା ସୁନ୍ଦରୀ ସୀତା ସମରାଭିଯାନ ପାଇଁ ପ୍ରସ୍ତୁତ ହେଲେ । ସେ ଝିଙ୍କଡ଼ବାସିନୀ ମହିଷମର୍ଦ୍ଦିନୀ ମଙ୍ଗଳାଙ୍କୁ ସ୍ତୁତି କଲେ । କାତ୍ୟାୟିନୀଙ୍କର ଶରଣାଗତ ହୋଇ ବିନା ଅସ୍ତ୍ରରେ ଦେବୀ ସୀତା ଜ୍ୟୋତିର୍ମୟୀଙ୍କ ଆଶୀର୍ବାଦରେ ରଣାଙ୍ଗନକୁ ଗଲେ । ହାତରେ ତାଙ୍କର ଦେବୀଦତ୍ତ ପୁଷ୍ପଧନୁ-ପଞ୍ଚଶର ।

ରଣକ୍ଷେତ୍ରରେ ଧନୁତେଜ ରାମ ବସିଛନ୍ତି, ଅସୁର ସହିତ ହନୁମାନ ସଂଗ୍ରାମ କରୁଛି, ଶ୍ରୀରାମ କହିଲେ ଯେ ତାଙ୍କର ସବୁ ଶର ଅସୁର ଗିଳି ପକାଉଛି । ସୀତା କହନ୍ତେ ଶ୍ରୀରାମ ମନ୍ତ୍ର ପଢ଼ି ପାଞ୍ଚଲକ୍ଷ ବାଣ ବର୍ଷିଲେ, ଅସୁର ଉପରେ ପଡ଼ି ସବୁ ଚୂରମାର ହୋଇଗଲା । ତାପରେ ଲକ୍ଷ୍ମଣଙ୍କର ଦଶଲକ୍ଷ ବାଣ ମଧ୍ୟ ଅସୁର ଜୀର୍ଣ୍ଣ କରିଦେଲା । ନରରୂପୀ ରାମ-ଲକ୍ଷ୍ମଣ, ନରରୂପୀ ପରଂବ୍ରହ୍ମ ବୋଲି ସତ୍ତ୍ୱ । ଏହାଦେଖି ଦେବୀ ସୀତା କୋପ ଜର୍ଜରିତା ହେଲେ । ସେ ଅପୂର୍ବ କାନ୍ତି ମଣ୍ଡିତା ହୋଇ ଅସୁରର ସମ୍ମୁଖୀନ ହେଲେ । ସେ ପୁଣି ଘୋର ଗର୍ଜନରେ ଅସୁରକୁ ଯୁଦ୍ଧଂଦେହି ଡାକରା ଦେଲେ । ବିବସନା, ଦେବୀ ସୀତା ନବ ଯଉବନ ପ୍ରଦର୍ଶନ କଲେ ଏବଂ ଅସୁର ଉପରେ ପୁଷ୍ପଧନୁ ପ୍ରହାର କଲେ । ପ୍ରବଳ ପ୍ରତାପୀ ଅସୁର ନବ ଯଉବନା ସୁନ୍ଦରୀଙ୍କୁ ଦେଖି କାମ ଜର୍ଜରିତ ହେଲା ।

ସେ ବିହ୍ୱଳ-ବିକଳ ହୋଇ ନବ ଯଉବନାକୁ କହିଲା—"ଶ୍ରୀରାମ ଘରଣୀ ହୋଇ କି ସୁଖ ପାଇବୁ । ମୋର ଭାର୍ଯ୍ୟା ହେଲେ ଏ ସ୍ୱର୍ଣ୍ଣପୁରୀ

ବଲଙ୍କାରେ ଆନନ୍ଦରେ ରହିବୁ ।” ଦେବୀ ସୀତା କହିଲେ—“ମୁହିଁ ବୀର୍ଯ୍ୟ ଶୁଳ୍କା । ତୁ ଶ୍ରୀରାମଙ୍କୁ ଏ ଯୁଦ୍ଧରେ ମାରିପାରିଲେ ମୁଁ ତୋ’ର ପତ୍ନୀ ଅକ୍ଳେଶରେ ହେବି ।” ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଏବଂ ଶ୍ରୀରାମଙ୍କ ନିକଟକୁ ଅସୁର ଧାଇଁଲା । ତାକୁ ମାରି ଜାନକୀଙ୍କୁ ହରିବି । ଏହି ବଜ୍ର ଚିତ୍କାର କଲା । ମାତ୍ର କାମାଶ୍ରିତରେ ସେ ବିଚଳିତ । ଭଗବାନ ଶ୍ରୀରାମ ପ୍ରଥମ ଦଫାରେ ତାହାର ତିନି ଶହ ମସ୍ତକ ଛେଦ କଲେ । ଭୁଜ ଛେଦ କଲେ ବୀର ଲକ୍ଷ୍ମଣ । ଅସୁର ମୃତ୍ୟୁବରଣ କଲା । ଭଗବାନ ଶ୍ରୀରାମଚନ୍ଦ୍ର ବଲଙ୍କା ବିଜୟ କଲେ ଏବଂ ସେଠାରେ ଲୁହା ମହୀ ବୁଲାଇଲେ । ଅଯୋଧ୍ୟାକୁ ସେ ଜାନକୀ ଓ ଅପର୍ଣ୍ଣାଙ୍କ ସହିତ ଫେରିଗଲେ ।

ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମ ଏବଂ ପ୍ରବଳ ପରାକ୍ରମୀ ଶେଷଦେବ ଲକ୍ଷ୍ମଣ ଦୁଇଭାଇ ପାରିଲେ ନାହିଁ ପ୍ରବଳ ପରାକ୍ରମୀ ବାହୁବଳକୁ । ପାରିଲେ ନାହିଁ ପବନ ସାଧକ ସିଦ୍ଧଯୋଗୀ ଭକ୍ତ ହନୁମାନ । କିନ୍ତୁ ଅନୁପମା ଯୁବତୀର କଟାକ୍ଷରେ ପରାଜିତ ହେଲା ପରମ ବଳଶାଳୀ ଅସୁର । ଶକ୍ତି ନାରୀ ଉପରେ ଯୁଗେ ଯୁଗେ ପୁରୁଷ ସିଂହକୁ ପରାଜିତ କରିଛି, ଏହା ହିଁ ଶକ୍ତିର ବୌଦ୍ଧ ବିଜୟ । ଏହା ହିଁ ଗଜାରୁଢ଼ ସିଂହୀର ଗର୍ଜନ, ଏହାହିଁ ବୁଦ୍ଧି, ଧନ ଏବଂ ସେବା ତୁଳନାରେ ଶକ୍ତିର ପରମ ବିଜୟ । ଶକ୍ତି ଅପରାଜିତ ।



# ବିପରୀତ ବୁଦ୍ଧି

ଇଂ: ଶ୍ରୀ ପ୍ରଭାକର ସ୍ୱାଇଁ

ଭୟ ଓ ଆଶଙ୍କାରେ ଇତସ୍ତତଃ ହୋଇ ଜଠିଛନ୍ତି ପୁରବାସୀ । ଅସୁର ଭୟରେ ସେମାନଙ୍କ ମଧ୍ୟରୁ କେତେକ ଯାଇ ଝାଡ଼ ବାଡ଼ ପର୍ବତରେ ଲୁଚୁଛନ୍ତି ତ ଆଜି କିଏ ପାହାଡ଼ ଖୋଲରେ ପଶୁଛନ୍ତି ।

ଦୂରରେ ପର୍ବତ ଉପରେ ଥାଇ ଏସବୁ ଲକ୍ଷ୍ୟ କରୁଛନ୍ତି ରଘୁବୀର ଶ୍ରୀରାମଚନ୍ଦ୍ର । ନିକଟରେ ତାଙ୍କର ଭକ୍ତ ହନୁମାନ । ନଗରବାସୀଙ୍କର ଦୁଃଖ ଓ ଦୁର୍ଦ୍ଦଶାରେ ବିଚଳିତ ହୋଇ ଶ୍ରୀରାମ ହନୁମାନକୁ ପଚାରିଲେ—"ହନୁମାନ ! କ'ଣ ହେଲା ପୁରଜନମାନଙ୍କର ? କାହିଁକି ସେମାନେ ନଗର ଛାଡ଼ି ଚାଲି ଯାଉଛନ୍ତି ? କିଛି କ'ଣ ଅଘଟଣ ଘଟିଲା କି ?

ହନୁମାନ ନିଜ ଆଖି ଆଗରେ ଦେଖିଥିଲା ପ୍ରଜାମାନଙ୍କର ଶୋଚନୀୟ ଅବସ୍ଥା । ସେ ତାଙ୍କ ଦୁଃଖରେ ଭାଙ୍ଗି ପଡ଼ି ପଚାରିଲା—"କାହିଁକି ନଗର ଛାଡ଼ି ପଳାଇଯାଉଛ ପ୍ରଜାକୁଳ ? କିଛି ବିପତ୍ତି ପଡ଼ିଚି କିଣ୍ଟୟ ।"

ପ୍ରଜାକୁଳ ସମସ୍ୱରରେ କହିଲେ—"ରାଜାଙ୍କର ଭୋଜନ ପାଳି ଆଜି । ଏଥର ପାଳି ଆମ ଉପରେ ପଡ଼ିଚି ।"

ଭୋଜନ ! କି ଭୋଜନ କରେ ରାଜ ନୃପତି ? ଶୋକାଶଙ୍କା ପ୍ରଜାମାନଙ୍କୁ, ଦୂରରେ ଥାଇ ପଚାରିଲେ ରଘୁପତି ।

ପ୍ରଜାମାନେ କହିଲେ—"ରାଜା ମାହେନ୍ଦ୍ର ବେଳାରେ ସିଂହାସନରେ ବସନ୍ତି । ଯୋଜନ ଯୋଜନ ବ୍ୟାପୀ ଯାହା ମିଳେ ତାଙ୍କ ହାତକୁ ବଢ଼ାଇ ନିଆଯାଏ । ସମସ୍ତ ଦ୍ରବ୍ୟ ଗର୍ଭରେ ପୂରାଇ ସେ ନିଜର କ୍ଷୁଧା ପ୍ରଶମିତ କରନ୍ତି । ଆଜ ଆମ ପୁରବାସୀଙ୍କ ପାଳି । ଆଉ ଟିକକୁ ଅବସ୍ଥା ଅସମ୍ଭାଳ । ତେଣୁ ବେଳହୁଁ ଆମେ ନଗର ଛାଡ଼ି ଚାଲି ଯାଉଛୁ ।"

ପୁରବାସୀଙ୍କଠାରୁ ଏସବୁ କଥା ଶୁଣି ହନୁମାନଙ୍କୁ ଚାହିଁ ଶ୍ରୀରାମ କହିଲେ—"କ'ଣ କରିବା ଆଜ ଏଇ ପ୍ରଜାମାନଙ୍କ ପାଇଁ ? ଆଜ ଆମେ ଆଉ ଏଠାରୁ ଫେରିପିବା ନାହିଁ । ଏଠୁ ଏପରି ଅବସ୍ଥାରେ ଫେରିଗଲେ ଆମେ ପ୍ରଜାମାନଙ୍କ ପାଇଁ ନିଜର କର୍ତ୍ତବ୍ୟ କରିଛୁ ବୋଲି କହିପାରିବା ନାହିଁ । ତେଣୁ ଆଜ ଆମେ ଏହି ପର୍ବତରେ ହିଁ ଅବସ୍ଥାନ କରିବା ।

ଭକ୍ତ ହନୁମାନ ଶ୍ରୀରାମଙ୍କ ପ୍ରସ୍ତାବରେ ସମ୍ମତ ହୋଇ କହିଲ—"ମହାଭାଗ, ଆପଣ ଏହି ପର୍ବତରେ ରହନ୍ତୁ । ମୁଁ ଆକାଶ ମାର୍ଗରେ ଉଡ଼ି ଉଡ଼ି ଲଙ୍କା ଅସୁର ପ୍ରବଳ କ୍ଷୁଧାରେ ପାଟି ମେଲାଇଥିବା ବେଳେ ତା' ପାଟିରେ ପଶିପିବି । ତା ଗର୍ଭରେ ରହି ତା'ର ଅନ୍ତନାଡ଼ି ଛିଣ୍ଡାଇଦେବି । ଏଥିରେ ଦୈତ୍ୟ ନିଶ୍ଚୟ ମୃତ୍ୟୁମୁଖରେ ପଡ଼ିବ ।"

କିନ୍ତୁ ସେ ଅସୁର 'ହାବୁଡ଼େ ପଡ଼ିଲେ ତୁମେ କ'ଣ ପ୍ରାଣ ଧରି ବର୍ତ୍ତିରହି ପାରିବ ହନୁମାନ ! ଅସୁର ଗର୍ଭରେ ପଶିଲେ ସେହିଠାରେ ତୁମର ପ୍ରାଣହାନି ହିଁ ସାର ହେବ । ଅନ୍ୟ ପାଇଁ ପ୍ରାଣନାଶ ଘଟିବ । କିନ୍ତୁ ଅନ୍ୟ ନିମିତ୍ତ କେହି କ'ଣ ପ୍ରାଣ ଦିଏ ! ଆଉ ସେ ଚିନ୍ତା କରନା । ଆସ— ଆଜ ଏଇ ପର୍ବତରେ ଅବସ୍ଥାନ କରିବା ।

ପର !

ମୋତେ ପର କହୁଛନ୍ତି ଆପଣ ! !

ମୋତେ ଆଜ୍ଞା ଦିଅନ୍ତୁ ପ୍ରଭୁ । ଆପଣଙ୍କଠାରୁ ଆଜ୍ଞା ପାଇଲେ ସଙ୍ଗେ ସଙ୍ଗେ ଲଙ୍କା ପୁରକୁ ଉପାଡ଼ି ଭାଙ୍ଗି ଛାରଖାର କରିଦେବି । ସାତ ସମୁଦ୍ର ଜଳ ପିଇ ଶୁଖେଇ ଦେବି । ସହସ୍ର ଦୈତ୍ୟମାନଙ୍କ ମୁଣ୍ଡ ଛିଣ୍ଡାଇ

ଦେବ । ମୋତେ ଖାଲି ଆଜ୍ଞା ଦିଅନ୍ତୁ ପ୍ରଭୁ । ଆପଣଙ୍କଠାରୁ ନିର୍ଦ୍ଦେଶ ପାଇ ମୁଁ ଯାତ୍ରା ଆରମ୍ଭ କରିବି ।

ଭକ୍ତର କଥାରେ ସମ୍ମତ ହେଲେ ଶ୍ରୀରାମଚନ୍ଦ୍ର ।

ଭଗବାନ ଶ୍ରୀରାମଙ୍କ ଠାରୁ ନିର୍ଦ୍ଦିଷ୍ଟ ବାଣୀ ପାଇ ହନୁମାନ ଶ୍ରୀରାମଙ୍କ ଉଦ୍ଦେଶ୍ୟରେ ଦୁଇ ହାତ ଯୋଡ଼ି ସଭକ୍ତିରେ ପ୍ରଣାମ କଲେ ଓ ଏକମୁହାଁ ହୋଇ ବିଲଙ୍କା ଯାତ୍ରା କଲେ ।

ସ୍ୱର୍ଗ ପୃଥ ଅନ୍ତର୍ଯାମୀ ଅସୁରପୁରରେ ଉପସ୍ଥିତ ହେବାବେଳକୁ ଦିନ ପାଞ୍ଚଘଡ଼ି ହୋଇ ସାରିଥିଲା । ବିଲଙ୍କା ରାକ୍ଷସ ସେତେବେଳକୁ ପୂଜା ପାଠାଦି ସାରି ଖାଦ୍ୟ ପାଇଁ ଚାତକ ପରି ଦୂରକୁ ଚାହିଁଥାଏ । କ୍ରମଶଃ ସମୟ ବଢ଼ିବାରେ ଲାଗିଥାଏ ଓ ଅସୁରର କ୍ଷୁଧା ପ୍ରବଳରୁ ପ୍ରବଳତର ହେଉଥାଏ । ଅତ୍ୟଧିକ କ୍ଷୁଧା ହେତୁ କ୍ରୋଧରେ ଅସୁରର ଚକ୍ଷୁଦ୍ୱୟ ଫାଟିଗଲା ଓ ଚର୍କୀ ପରି ବୁଲିବାରେ ଲାଗିଲା । ସେ ବିକଟାଳ ମୂର୍ତ୍ତି ଧାରଣ କଲା । ଅସୁରର ଏପରି ଅବସ୍ଥା ଦେଖି ଅନ୍ୟାନ୍ୟ ସମସ୍ତ ଅସୁର ସେ ସ୍ଥାନ ଛାଡ଼ି ଚାଲିଗଲେ । କ୍ରୋଧରେ ସାତ ଯୋଜନ ପର୍ଯ୍ୟନ୍ତ ବନର ଯେତେ ପଶୁ ପକ୍ଷୀ ଥିଲେ ପ୍ରତାପୀ ଅସୁର ସମସ୍ତଙ୍କୁ ଧରି ପାଟିରେ ପକାଇ ଦେଲା । ଦୂରରେ ଆକାଶମାର୍ଗରେ ଯାଇ ହନୁମାନ ଅସୁରର ଏହି ଅବସ୍ଥା ଦେଖିଥିଲେ । ମାତ୍ର ସେ ମଧ୍ୟ ଅସୁରର ପ୍ରଚଣ୍ଡ କୋପରୁ ରକ୍ଷା ପାଇପାରିଲେ ନାହିଁ । ଦୁଇ ଯୋଜନ ବାହୁ ବିସ୍ତାର କରି ନିଜର କାଣି ଆଙ୍ଗୁଠିରେ ସେ ହନୁମାନଙ୍କୁ ଧରି ନିଜର ଗର୍ଭକୁ ଠେଲିଦେଲା ।

ଅସୁରର ପେଟ ଭିତରେ କିଛି ଥଳକୂଳ ପାଇଲେ ନାହିଁ ହନୁମାନ । ତା ଅନ୍ତନାଡ଼ିଗୁଡ଼ାକ ତାଙ୍କୁ ମେରୁ କଳା ପରି ଦେଖାଗଲା । ସେସବୁ ଦେଖି ସେ ଚାନ୍ଦିଆ ହୋଇଗଲେ । ଉପରେ ନିରୁପାୟ ହୋଇ ସେ ରାମନାମ ଉଚ୍ଚାରଣ କରି କହିଲେ—"ହେ ରଘୁବୀର ରାମଚନ୍ଦ୍ର, ମୋତେ ଏ ବିପତ୍ତିରୁ ରକ୍ଷା କର ।"

ହନୁମାନ ରାମଚନ୍ଦ୍ରଙ୍କର ପ୍ରକୃତ ଭକ୍ତ । ତା'ର ଭକ୍ତିରେ ବଶ ହୋଇଛନ୍ତି ଶ୍ରୀରାମ । ଭକ୍ତ ହନୁମାନ ବିପଦରେ ପଡ଼ି ଡାକୁଛି—ସ୍ଥିର ରହିପାରିଲେ ନାହିଁ ଶ୍ରୀରାମ । ଭକ୍ତର ଆର୍ତ୍ତ ଚିତ୍କାରରେ ଶ୍ରୀରାମଙ୍କର କର୍ଣ୍ଣ-କୁହର କମ୍ପି ଉଠିଲା ।

ନିଜର ପେଟ ଭିତରୁ ବାରମ୍ବାର ରାମୋଚ୍ଚାରଣ ଶବ୍ଦରେ ବଳଙ୍କା ଅସୁର ହଠାତ୍ ତା ପେଟ ଭିତରେ କ'ଣ ହେଉଛି କିଛି ବୁଝିପାରିଲା ନାହିଁ । ଭାବିଲା—ରାମ କ'ଣ ତା'ର ପେଟ ଭିତରେ ପଶିଗଲା କି ? ତା' ମନ ବେଳକୁ ବେଳ ପାପ ଛୁଇଁଲା । ଏହା ଭାବି ବଳଙ୍କା ଅସୁର ଯେତେ ଯାହା ଗିଳିଥିଲା ସବୁ ଉଦ୍‌ଗାର ପକେଇଲା । ଅସୁରର ଏହି ଉଦ୍‌ଗିରଣରେ ହନୁମାନ ଜୀବନ ପାଇ ବାହାରକୁ ରାମନାମ ଧରି ବାହାରି ଆସିଲା ।

ନିଜ ଆଖି ଆଗରେ ଏକ ବାନରକୁ ଦେଖି ବଳଙ୍କା ଅସୁର ହଠାତ୍ କିଛି ବୁଝିପାରିଲା ନାହିଁ । ଟିକିଏ ରହି ସେଇ ବାନରକୁ ସେ ପଚାରିଲା—"କେଉଁ ଦେଶରେ ତୋ'ର ଘରରେ ବାନର, ତୁ କାହାର ସେବକ ?"

ହନୁମାନ କହିଲା—"ମୋର ଘର କିଷ୍କିନ୍ଧ୍ୟା । ମୁଁ ପବନ ପୁତ୍ର ହନୁମାନ । ରାମଭକ୍ତ ଓ ତା'ର ସେବକ । ତୋତେ ମାରିବା ନିମିତ୍ତ ରଘୁପତି ଶ୍ରୀରାମ ଆସିଥିଲେ । ତାଙ୍କର ନିଜ ରାଜ୍ୟକୁ ଫେରିବାର ବିଳମ୍ବ ଦେଖି ତାଙ୍କୁ ଖୋଜିବା ପାଇଁ ମୁଁ ଆସିଥିଲି । ଅଜାଣତରେ ତୋ'ର ଗର୍ଭରେ ପଶିଗଲି ।"

ରାମଭକ୍ତ ହନୁମାନଠାରୁ ଏହା ଶୁଣି ବଳଙ୍କା ଅସୁର ଠୋ ଠୋ ହୋଇ ହସି ଭୀଷଣ ଗର୍ଜନଟାଏ କରି କହିଲା—"ନର, ବାନର କେହି ମୋତେ ମାରିପାରିବେ ନାହିଁ । ରାମର ପୁଣି ଏତେ ଦୁଃସାହସ ! ସ୍ୱୟଂ ଇନ୍ଦ୍ର ଦେବତା ମୋର ପାଦସେବା କରୁଛନ୍ତି, ଯମ ମୋର ବାଡ଼ ରକ୍ଷା କରୁଛି, କୁବେର ରଜକ ହୋଇ ମୋର ଲୁଗାପଟା କାଚୁଛି । ଅନ୍ୟାନ୍ୟ ଦେବତାମାନଙ୍କୁ ମୁଁ ପାଦତଳେ ବାନ୍ଧି ରଖିଛି । ମୋତେ ପୁଣି ମାରିବାକୁ ରାମଚନ୍ଦ୍ର ଆସିଛି !"

ହସିଉଠିଲା ହନୁମାନ ।

ଅସୁର ଆଡ଼େ ଅନେଇ ତାଚ୍ଛଲ୍ୟଭରା କଣ୍ଠରେ କହିଲା—"ତୁ ଛାର ଜୀବ । ସ୍ୱୟଂ ଭଗବାନ ରାମଚନ୍ଦ୍ରଙ୍କର ପ୍ରତିଜ୍ଞା ତୁ କ'ଣ ଜାଣିବୁ । ସେ ହେଉଛନ୍ତି ପରଂବ୍ରହ୍ମ । ଅସୁର ନିଧନ କରି ପୃଥିବୀରୁ ଅନ୍ଧାର ଦୂରୀଭୂତ କରିବା ଓ ଶାନ୍ତି ସ୍ଥାପନ କରିବା ହେଉଛି ତାଙ୍କର ପ୍ରଧାନ କର୍ତ୍ତବ୍ୟ ।

ଅଖାଡ଼ାରେ ସେ ପ୍ରଶୁରାମଙ୍କର ଦର୍ପ ହରଣ କରିଥିଲେ । ତାଡ଼କା ଅସୁରୁଣୀର ଜୀବନ ସେ ବିନାଶ କରିଥିଲେ । ବାଳୀକୁ ମାରି ସେ ସୁଗ୍ରୀବକୁ ରାଜ୍ୟ ପ୍ରଦାନ କରିଥିଲେ । ପୁଣି ଲଙ୍କାକୁ ସମୁଦ୍ର ଗର୍ଭର ଜଳ ଉପରେ ସେତୁ ବାନ୍ଧିଥିଲେ । ସୀତାଙ୍କୁ ଲଙ୍କାରୁ ଉଦ୍ଧାର କରି ସେ ଯୁଗ ଯୁଗ ପାଇଁ କୀର୍ତ୍ତି ରଖିଛନ୍ତି । ସେଇଥି ପାଇଁ ତ ବିଭୀଷଣ ତାଙ୍କର ଶରଣାପନ୍ନ ହେଲେ ଓ ରାମଚନ୍ଦ୍ର ତାଙ୍କୁ ଲଙ୍କାର ରାଜପଦରେ ଅଭିଷିକ୍ତ କଲେ । ଗୁରୁଯୁଗକୁ ଅମର ବର ଦେଲେ ।

ଏବେ ତୋ'ର ପାଳି । ତୋତେ ମାରିବା ପାଇଁ ସେ ତାଙ୍କର ଯାତ୍ରା ଆରମ୍ଭ କରିଛନ୍ତି । ସେ ତୋ'ର ଶିର ଛେଦନ କରିବେ । ଏହା ହିଁ ଶ୍ରୀରାମଙ୍କର ପ୍ରତିଜ୍ଞା । କିନ୍ତୁ ଶ୍ରୀରାମ-ଚନ୍ଦ୍ର ଆଜ୍ଞା ଦେଇଥାନ୍ତେ ତେବେ ମୁଁ ଶଲଙ୍କା ଭୁବନ ଉପାଡ଼ି ଛାରଖାର କରି ଦିଅନ୍ତି । ମାତ୍ର ସେ'ତ ମୋତେ ଆଜ୍ଞା ଦେଇ ନାହାନ୍ତି ।

ହନୁମାନଠାରୁ ଏହା ଶୁଣି ଶଲଙ୍କା ରାଜନ କହିଲା—"ମୁଁ ତୋ'ର ପ୍ରତିଜ୍ଞା ଜାଣେ ବାନର । କିନ୍ତୁ କାହିଁ ତୋ'ର ସେଇ ରାମ । ତୁ ଥରେ ମୋତେ ତୋ'ର ସେଇ ରାମକୁ ଦେଖା ତ ! ଆଖିରେ ଦେଖିଲେ ଯିନା ମୁଁ ତାହା ବିଶ୍ୱାସ କରିବି ।"

ହନୁ କହିଲା—"ତୁ ଯାହା ଖାଇଛୁ ତାକୁ ବାହାର କରିଦେ, ଦେଖିବୁ ତୋ' ଗର୍ଭରେ ଶ୍ରୀରାମ ଅଛନ୍ତି ।"

ସହସ୍ରଶିରକୁ ହନୁମାନର କଥାରେ ଟିକେ ଆଶ୍ଚର୍ଯ୍ୟ ଲାଗିଲା । ସେ ଭାବିଲା—ହନୁ ବୋଧହୁଏ ତାକୁ ଥଟ୍ଟା କରୁଛି । ତଥାପି ସେ ମଜା ଦେଖିବା ପାଇଁ ପାଟି ମେଲିକରି ଯାହା ଖାଇଥିଲା ସବୁ ଉଦ୍‌ଗାର ପକେଇଲା । ଏହି ଉଦ୍‌ଗିରଣରେ ବହୁ ଗୋରୁଗାଈ, ମୃଗାଦି ଜୀବଜନ୍ତୁ-ମାନେ ବାହାରି ଆସିଲେ । ଏସବୁ ଜୀବଜନ୍ତୁଙ୍କୁ ଦେଖି ହନୁମାନ ନିଜର ପିତାମହଙ୍କୁ ସ୍ମରଣ କଲା ଅମୃତ ବୃଷ୍ଟି କରିବା ପାଇଁ । ପିତାମହ ହନୁମାନର ଅନୁରୋଧରେ ସ୍ୱର୍ଗରୁ ଅମୃତ ବୃଷ୍ଟି କଲେ । ଫଳରେ ଯେତେ ଜୀବ ଜନ୍ତୁ ଶଲଙ୍କା ରାକ୍ଷସର ଗର୍ଭରେ ରହି ମୃତ୍ୟୁ ସହିତ ସଂଘର୍ଷ କରୁଥିଲେ ସମସ୍ତେ ଅମୃତ ପାନରେ ସତେଜ ଦେଖାଗଲେ ।

ଆନନ୍ଦିତ ହୋଇ ଆକାଶ ମାର୍ଗରେ ଉଡ଼ିଚାଲିଲା ହନୁମାନ।

ଏଥର ସେ ଭଗବାନ ଶ୍ରୀରାମଙ୍କ ନିକଟକୁ ଯିବାକୁ ଉଦ୍ୟତ ହେଲା।

କିଷ୍କିନ୍ଧା ଯିବା ଉତ୍ତାରେ ଦୂରରୁ ଦେଖିଲା ପର୍ବତରେ ଶ୍ରୀରାମ ବସି ଧନୁର ଶର ସଳଖୁଛନ୍ତି। ତାଙ୍କୁ ଦେଖି ସେ ତାଙ୍କ ଗୋଡ଼ତଳେ ପଡ଼ିଗଲା ଓ ଲଙ୍କା ଅସୁରର ସମସ୍ତ କଥା ଗୋଟି ଗୋଟି ବର୍ଣ୍ଣନା କରିଗଲା। ତା'ର ସହସ୍ର ସୈନ୍ୟସାମନ୍ତଙ୍କ କଥା ମଧ୍ୟ ଉଲ୍ଲେଖ କଲା। ସମସ୍ତ ଘଟଣା ଶୁଣିଲା ପରେ ରାମଚନ୍ଦ୍ର ଭକ୍ତ ହନୁମାନ ଉପରେ ଅତ୍ୟନ୍ତ ଆନନ୍ଦିତ ହେଲେ ଓ ପ୍ରତିଜ୍ଞା କରି କହିଲେ—"ମୁଁ ପ୍ରତିଜ୍ଞାବଦ୍ଧ ହେଉଛି ନିଶ୍ଚୟ ଏହି ଦୈତ୍ୟର ଜୀବନ ବିନାଶ କରିବି।"

ଏହା କହି ସେ ସମୁଦ୍ର ଭିତରେ ଥିବା ମର୍କତ ଶିଳା ଉପରକୁ ଚାଲିଗଲେ। ସେଠାରେ ସନ୍ଧ୍ୟା ନିତ୍ୟ ସାରିବା ପରେ ହନୁମାନ ଆଣିଥିବା ଚଣିର ଫଳମୂଳ ଖାଇ ଲଙ୍କାକୁ ଦୃଷ୍ଟିପାତ କଲେ। ରାମଚନ୍ଦ୍ରଙ୍କ ଦୃଷ୍ଟିରେ ଲଙ୍କାର ଚତୁର୍ଦ୍ଦିଗରେ ଯେପରି କଳାଗୁଣ୍ଡ ଘୋଟିଗଲା।

ଅନ୍ୟ ପକ୍ଷରେ ଲଙ୍କାରେ ଶ୍ରୀରାମଙ୍କ ଅବସ୍ଥାନ କଥା ହନୁମାନ-ଠାରୁ ଶୁଣି ଲଙ୍କା ନୃପତିଙ୍କ ଭିତରେ ଗୁଜବ ପଶିଗଲା। ସେ ଆଉ ବିଳମ୍ବ ନ କରି ନିଜର ମନ୍ତ୍ରୀକୁ ଡାକି କହିଲା—"ହନୁମାନଠାରୁ ଶୁଣିଲି ଏଇ ନଗର ଭିତରେ କେଉଁଠି ଶ୍ରୀରାମ ଅଛି। ତାକୁ ଖୋଜି କାଲି ଭିତରେ ତା'ର ଶିର ଛେଦନ କରି ଓ ମୋର ଶତ୍ରୁ ବିନାଶ କରି ମୋ' ରାଜ୍ୟକୁ ନିଷ୍କଣ୍ଟକ କର।"

ଲଙ୍କା ରାଜନଙ୍କଠାରୁ ଏକଥା ଶୁଣି ମନ୍ତ୍ରୀ କହିଲେ—"ମହା-ଭାଗ! ମୋର ଗୁହାରି ଶୁଣନ୍ତୁ। ଶ୍ରୀରାମ ହେଉଛନ୍ତି ସ୍ୱୟଂ ଭଗବାନ। ତାଙ୍କ ସହିତ ଆଦୌ ଦ୍ୱନ୍ଦ୍ୱ କରନ୍ତୁ ନାହିଁ। ବରଂ ଚାଲନ୍ତୁ ତାଙ୍କର ଶରଣାପନ୍ନ ହେବା। ତାଙ୍କ ସହିତ ସନ୍ଧି କରିବା।"

ମନ୍ତ୍ରୀଠାରୁ ଏପରି ଉପ୍ତାଭୁର କଥା ଶୁଣି ଲଙ୍କା ରାଜନ କହିଲେ—"ଶ୍ରୀରାମକୁ ତୁମେ କ'ଣ ଡରିଗଲ ମନ୍ତ୍ରୀବର! କ୍ଷତ୍ରିୟ ହୋଇ ତା'ର ଶରଣ ନିବା ପାଇଁ ମୋତେ ଉପଦେଶ ଦେଲ!! ମୋତେ

ଆଜ ଧୈର୍ଯ୍ୟହର କରଅ ନାଶ ମନ୍ତ୍ରୀବର । ରାତିପାହି ସକାଳ ହେଲେ ମୁଁ ନିଜେ ଯାଇ ଶ୍ରୀରାମ ସହିତ ଯୁଦ୍ଧକରି ତାକୁ ବିନାଶ କରିବି ।”

ରାତିପାହି ସକାଳ ହେବାରୁ ସମସ୍ତ ସୈନ୍ୟ ଓ ବୀରମାନଙ୍କୁ ଡାକି ହିଲଙ୍କା ନୃପତି ତାଙ୍କ ସମ୍ମୁଖରେ ସମଗ୍ର ରାଜ୍ୟରେ ଘୋଷଣା କରି-ଦେଲେ—“ରାମଚନ୍ଦ୍ର ନାମରେ କିଏ ଜଣେ ବୀର ମୋ' ରାଜ୍ୟକୁ ଆସି ମୋତେ ବିନାଶ କରିବାର ମସୁଧା କରୁଛି । ସେକଥା ଶୁଣି ମୋର ମନ ବ୍ୟଥିତ । ଯେଉଁ ଗଡ଼ ବହୁବର୍ଷ ଧରି ଅଜେୟ ହୋଇ ରହିଥିଲା । ତାହା ହୁଏତ ରାମଚନ୍ଦ୍ର ଜୟକରି ଜିଣିଯିବେ । ସେଥିପାଇଁ ମୁଁ ବ୍ୟତିବ୍ୟସ୍ତ ।

ହିଲଙ୍କା ରାଜନଙ୍କଠାରୁ ଏହା ଶୁଣି ସମସ୍ତ ବୀର ଏକ ସ୍ୱରରେ ପ୍ରତିଜ୍ଞା କଲେ—“ମନରେ କିଛି ଭାବନ୍ତୁ ନାହିଁ ରାଜନ, ଆମେ ସମସ୍ତେ ପ୍ରତିଜ୍ଞା କରୁଛୁ ରାମଚନ୍ଦ୍ରଙ୍କୁ ନିଶ୍ଚୟ ନିଧନ କରିବୁ । କାରଣ ତା'ର ତ ରଥ, ହାତୀ ବା ଘୋଡ଼ା ନାହାନ୍ତି, ସୈନ୍ୟସାମନ୍ତ ବି ନାହାନ୍ତି । ଖାଲି ସେ ନିଜେ । ଏକା ବା କିପରି ଆମର ଏଇ ସମୁଦ୍ର ପରି ସୈନ୍ୟମାନଙ୍କ ସହିତ ଯୁଦ୍ଧ କରିବ ? ତାଙ୍କୁ ନିଶ୍ଚୟ ଆମେ ଆଜ ବିନାଶ କରିବୁ । ଏଥିପାଇଁ ଆଦୌ ଚିନ୍ତା କରନ୍ତୁ ନାହିଁ ମହାଭାଗ, ଆପଣ ନିଶ୍ଚିନ୍ତ ରହନ୍ତୁ ।

ସୈନ୍ୟମାନଙ୍କଠାରୁ ଆଶ୍ୱାସନା ବାଣୀ ଶୁଣି ଆନନ୍ଦରେ ଫାଟି ପଡ଼ିଲା ହିଲଙ୍କା ରାଜନ । ମନ୍ତ୍ରୀର ଶିରରେ ନେଇ ମୁକୁଟ ବାନ୍ଧି କହିଲା— —“ଆଜ ରାଜ୍ୟର ଚତୁର୍ଦ୍ଦିଗରେ ଟମକ, ନିଶାଣ ବଜାଇ ଘୋଷଣା କରିଦିଅ ମନ୍ତ୍ରୀବର, ବୀରବାଦ୍ୟ ବଜାଇ ରଜତ ମାହୁନ୍ତ ସେନାପତି ସହିତ ସୈନ୍ୟ ସଜାଇ ବାହାରି ପଡ଼ । ଯେକୌଣସି ମତେ ମୋର ଶତ୍ରୁକୁ ବଧକରି ରାଜ୍ୟକୁ ଶତ୍ରୁମୁକ୍ତ କର ।

ହିଲଙ୍କା ରାଜନଙ୍କ ନିର୍ଦ୍ଦେଶରେ ଲକ୍ଷ ଲକ୍ଷ ସୈନ୍ୟସାମନ୍ତଙ୍କ ସହ ଯୁଦ୍ଧଯାତ୍ରା ଆରମ୍ଭ ହେଲା । ଟମକ ବାଦ୍ୟରେ ଗଗନ ପବନ ପ୍ରକମ୍ପିତ ହେଲା ।

ଦୂର ପର୍ବତରେ ଥାଇ ଶ୍ରୀରାମଙ୍କ କର୍ଣ୍ଣରେ ଏ ଶବ୍ଦ ବାଜିଲା । ଯୁଦ୍ଧବାଜଣା ତାଙ୍କ କାନରେ ବାଜିବାରୁ ସେ ଅଧିର ହୋଇପଡ଼ି ହନୁମାନଙ୍କୁ

କହିଲେ—"ଶୁଣୁଛ ହନୁମାନ ଏଇ ଟମକର ଶବ୍ଦ । ବୋଧହୁଏ ଏ ଶବ୍ଦ ଲଙ୍କାରୁ ଭାସିଆସୁଛି । ଆଜ ତେବେ କ'ଣ ଲଙ୍କା-ରାଜନ ଯୁଦ୍ଧ ଘୋଷଣା କଲା ନା କ'ଣ ?"

କହୁ କହୁ ସେ ସ୍ନାନ କରିବାକୁ ସମୁଦ୍ର ଭିତରକୁ ପଶିଗଲେ ଓ ପିତୃତର୍ପଣ ସାରି ପୁନର୍ବାର ପର୍ବତ ଉପରକୁ ଉଠିଗଲେ । କୋଦଣ୍ଡ ଧନୁ ଧରି କାଳବିଳମ୍ବ ନ କରି ବାହାରି ପଡ଼ିଲେ ଯୁଦ୍ଧକ୍ଷେତ୍ରକୁ ।

ଏକ ପାର୍ଶ୍ୱରେ ଲଙ୍କାର ସୈନ୍ୟସାମନ୍ତ ଓ ଅପର ପାର୍ଶ୍ୱରେ ଶ୍ରୀରାମ ଏବଂ ହନୁମାନର ରଣ ହୁଙ୍କାରରେ ପୃଥିବୀ ଦମ୍ ଦମ୍ ହୋଇ ଥରିଗଲା । ବସୁନ୍ଧରା କମ୍ପି ଉଠିଲା । ପାତାଳପୁରରେ ଥାଇ ବାସୁକୀର ଆସନ ମଧ୍ୟ ପ୍ରକମ୍ପିତ ହେଲା । ଚତୁର୍ଦ୍ଦିଗ ଆଦ୍ୟ ଆଷାଢ଼ର ମେଘ ଗର୍ଜନ ପରି ଶୁଭିଲା । ଯୁଦ୍ଧର ସେନାପତି, ରାଜତମାନଙ୍କୁ ଚାହିଁ ଲଙ୍କା ନୃପତି କହିଲେ—"ବଡ଼ ଯୋଦ୍ଧା ପୁରୁଷ ଏଇ ରଘୁବୀର । ଲଙ୍କାରେ ପଶି ସେ ରାବଣକୁ ବଧ କରିବ । ତାକୁ ଇତର ବୀର ବୋଲି ଭାବନା ।"

ଲଙ୍କା ରାବଣ ଦେଖିଲା—"ହନୁମନ୍ତର ଗର୍ଜନରେ ଗଗନ ପବନ କମ୍ପୁଛି । ରାମଚନ୍ଦ୍ରଙ୍କର ଧନୁର ଟଙ୍କାରରେ ପୃଥିବୀ ପଡ଼ୁଛି, ଉଠୁଛି, ଅସୁରମାନେ ଚମକି ଉଠୁଛନ୍ତି ।

ଲଙ୍କା ନୃପତିର ମନରେ ଶ୍ରୀରାମଙ୍କ ପ୍ରତି ପ୍ରବଳ ଭୟ ଥିଲା । ତଥାପି ସେ ସୈନ୍ୟମାନଙ୍କୁ ଆଶ୍ୱାସନା ବାଣୀ ଶୁଣାଇ ଶ୍ରୀରାମଙ୍କୁ ଲକ୍ଷ୍ୟ କରି କହିଲା—"ଧନୁର୍ଦ୍ଧର ! କାହିଁକି ଏ ଗଡ଼ରେ ପଶି ମୃତ୍ୟୁକୁ ସ୍ୱାଗତ କରୁଛୁ, ଆମକୁ କ'ଣ ଲଙ୍କାର ରାବଣ ବୋଲି ଭାବିଲୁ ! ଆଜି ତୋ'ର ଯୋଦ୍ଧାପଣ ଦେଖିବ, ଦେଖିବ ତୋ'ର ବୀରତ୍ୱ ।"

ଲଙ୍କା ରାଜନଠାରୁ ଏହି ଦୃଢ଼ବାଣୀ ଶୁଣି ଶ୍ରୀରାମ ସ୍ଥିର ଚିତ୍ତରେ କହିଲେ—"ତୁ ସ୍ଥିର ହୋଇ ଦୈତ୍ୟ, ମୋତେ କପଟ ଚିହ୍ନିବୁ । ମୁଁ ଲଙ୍କାର ରାବଣକୁ ନିଧନ କରିଛି । ବାଳିକି ମାରି ସୁଗ୍ରୀବକୁ ରାଜ୍ୟ ପ୍ରଦାନ କରିଛି । ପର୍ବତକୁ ବୋହିଆଣି ସମୁଦ୍ରର ଗଭୀର ଜଳରେ ବନ୍ଧ ବାନ୍ଧିଛି । ଆଉ ଆଜ—ଆଜି ତୋ ପରି ସହସ୍ରଶିରକୁ ବଧ କରି ଆତ୍ମତୃପ୍ତି ଲଭ କରିବ ।

ତୋତେ ସମସ୍ତଙ୍କୁ ଦର୍ଶନ କରାଇବ । ତୁ ବୋଧହୁଏ ମୋତେ ନିଃସଙ୍ଗ ମନେକରୁଛୁ ଅସୁର । ମୋ ସହିତ ହନୁମାନ ଅଛି । ସେ ଏକାକୀ ସମଗ୍ର ଲଙ୍କାକୁ ଧ୍ୱସ୍ତ ବିଧ୍ୱସ୍ତ କରି ଦେଇଥିଲା । ମୋ ସହିତ ବାସୁକୀ ଅଛନ୍ତି । ସେ ସମଗ୍ର ସଂସାରକୁ ଧାରଣ କରିଛନ୍ତି । ତେଣୁ ମୁଁ ବିଲଙ୍କା ଧ୍ୱଂସ କରି ଏଇ ପୃଥିବୀରେ କଥା ରଖିପାରିବ ।"

ଶ୍ରୀରାମର କଥା ଆଉ ସହ୍ୟ କରିପାରିଲା ନାହିଁ ବିଲଙ୍କା ଅସୁର । ସେ ହଠାତ୍ ଶ୍ରୀରାମଙ୍କ ଆଡ଼େ ଗର୍ଜି ଉଠି ଲୁହାର ଧନୁ ଧରି ଶ୍ରୀରାମଙ୍କ ଆଡ଼େ ପାଞ୍ଚଲକ୍ଷ ବାଣ ବିନ୍ଧିବାରେ ଲାଗିଲା । ତା'ର ବାଣକୁ ଖଣ୍ଡନ କରିବାପାଇଁ କକୁସ୍ଥ ବାଣରେ ଦୃଢ଼ ବିନ୍ଧିଲେ ରଘୁବୀର । ଏତିକିବେଳେ ନିକଟରେ ଯେତେ ସୈନ୍ୟସାମନ୍ତ ଥିଲେ ସମସ୍ତେ ଏକାଥରକେ ଶ୍ରୀରାମ-ଚନ୍ଦ୍ରଙ୍କ ଉପରକୁ ଝାମ୍ପ ଦେଲେ । ଉଭୟ ପକ୍ଷର ସିଂହନାଦରେ ଗଗନ ପବନ ଫାଟିପଡ଼ିଲା । ଖଣ୍ଡମଣ୍ଡଳ ହଗଲଗରେ ମଞ୍ଚ ଅନ୍ଧକାର ହୋଇଗଲା । ଅନ୍ଧକାର ମଧ୍ୟରେ କେହି କାହାକୁ ପାଇଲେ ନାହିଁ । ଆପଣା ପର ଜାଣି ପାରିଲେ ନାହିଁ । ଗୋଟିଏ ପକ୍ଷ ସୈନ୍ୟ ମଧ୍ୟରେ ଚିହ୍ନା ଜଣା ରହିଲା ନାହିଁ । କେହି କାହାର ଖବର ରଖିଲେ ନାହିଁ । ଆପଣା ଆପଣା ଭିତରେ ହଣାହଣି ହେଲେ । ଏତିକିବେଳେ ଗୋଟିଏ ଅସୁର ଗୋଟିଏ ବଜ୍ର ମୁଦ୍‌ଗର ବାଣ ଗୁଣରେ ବସାଇ ଶ୍ରୀରାମଙ୍କ ଆଡ଼େ ବିନ୍ଧିବାକୁ ଲାଗିଲା । ଏହାଦେଖି ହନୁମାନ ଶ୍ରୀରାମଙ୍କୁ ପଛକରି ଅସୁରର ସେହି ଧନୁକୁ ଧରି ମୋଡ଼ି ଭାଙ୍ଗି ଦୈତ୍ୟ ଉପରକୁ ଫିଙ୍ଗିଦେଲା । ସେ ଗୋଟିଏ ବଜ୍ରମୁଷ୍ଟି ଦେଇ ଅସୁରର ବିମାନକୁ ଭାଙ୍ଗି ଚୁରମାର କରିଦେଲା ଓ ମନ୍ତ୍ରୀକି ଭୂମିସାତ୍ କରିଦେଲା । ଏହାପରେ ସେ ଦୈତ୍ୟ ସପ୍ତଶିରକୁ ଧରି ତା କାନ୍ଧ ଉପରେ ଝୁଲି ପଡ଼ି ସାତଟାଯାକ ମୁଣ୍ଡ ଝିଙ୍କିଆଣିଲା ଓ ସାତଟାଯାକ ମୁଣ୍ଡକୁ ଚୂର୍ଣ୍ଣ-ବିଚୂର୍ଣ୍ଣ କରି ପକେଇଲା ।

ଏକ ପାର୍ଶ୍ୱରେ ଶ୍ରୀରାମ ଓ ପ୍ରଭୁ ଭକ୍ତ ହନୁମାନ—ଅନ୍ୟ ପାର୍ଶ୍ୱରେ ବିଲଙ୍କା ରାଜନ ସହିତ ମନ୍ତ୍ରୀ ଓ ଅନ୍ୟାନ୍ୟ ସୈନ୍ୟସାମନ୍ତ । ମାତ୍ର ଶ୍ରୀରାମଙ୍କ ଶରଘାତରେ ଗୋଟି ଗୋଟି ହୋଇ ସମସ୍ତ ଅସୁର ଟଳି ପଡ଼ୁଥାନ୍ତି । ହନୁମାନ ଓ ସପ୍ତଶିର ଅସୁର ମଧ୍ୟରେ ଚାଲିଥାଏ ପ୍ରଚଣ୍ଡ ସଂଘର୍ଷ । ଉଭୟ ଧରାଧରି ହୋଇ ସମୁଦ୍ରରେ ପଡ଼ିଲେ । ଅସୁରର ଦୁଇ

ଭୂଜକୁ କ୍ରୋଧରେ ହନୁମାନ ଭିଡ଼ି ଧରି ମୋଡ଼ୁଥାଏ । ତାକୁ ଟେକି ଉପରକୁ ନେଇ ମୁଥ ମାରୁଥାଏ । ଅସୁର ଘଡ଼କ ଘଡ଼ ଅଚେତନ ହୋଇ ପଡ଼ୁଥାଏ ।

ଦୂରରୁ ଏକଥା ଲକ୍ଷ୍ୟ କରୁଥିଲେ ଶ୍ରୀରାମଚନ୍ଦ୍ର । ସେ ଆଉ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ସେ ଭାବିଲେ ତାଙ୍କ ଭକ୍ତ ବର୍ତ୍ତମାନ ବିପଦର ସମ୍ମୁଖୀନ ହେଉଛି । ସପ୍ତଶିର ହାବୁଡ଼ରେ ପଡ଼ିଛି । ତେଣୁ ସେ ହନୁମାନକୁ ଆଶ୍ୱସ୍ତି ଦେଇ କହିଲେ—"ରହ ହନୁମାନ୍, ମୁଁ କୋଦଣ୍ଡ ବାଣ ପ୍ରୟୋଗ କରୁଛି ।" ଏହା କହି ସେ ଅସୁର ଆଡ଼େ ସହସ୍ର ବାଣ ବିନ୍ଧି ଅସୁରର ସବୁ ବାଣ କାଟି ପକାଇ ଖଣ୍ଡ ଖଣ୍ଡ କରିଦେଲେ । ସପ୍ତଶିର ଅସୁର ସାତଟାଯାକ ମୁଣ୍ଡକୁ ତାଙ୍କର ସେହି ବାଣରେ ଛିଣ୍ଡାଇ ମାଟିରେ ମିଶାଇ ଦେଲେ । ଅସୁର ଘନ ଗର୍ଜନ କରି ମାଟିରେ ମିଶିଗଲା । ଏହା ଦେଖି ପୁରଜନମାନଙ୍କ ମୁଖରେ ହସର ଜୁଆର ଛୁଟିଲା । ଦେବତାମାନେ ସ୍ୱର୍ଗରେ ଥାଇ ଶ୍ରୀରାମଙ୍କ ଉପରକୁ ପୁଷ୍ପ ବୃଷ୍ଟି କଲେ ।



# ଭଜା ଅସ୍ତ୍ର ଯୁଦ୍ଧ

ଶ୍ରୀ ରବୀନ୍ଦ୍ରନାଥ ଦାସ

କପାଳଲିଖନ କିଏ ବା ଆନ କରିବ ? ବିଧି ଯାହା କପାଳରେ ଲେଖିଯାଇଛି, ସୁର, ନର ବା ଅସୁର କାହାକୁ ସେଥିରୁ ତ୍ରାହି ନାହିଁ । ବିଧି ଭାଗ୍ୟଡୋରିରେ ବନ୍ଧା ।—ଭଗବାନ ସ୍ୱୟଂ ପାଖରେ କ୍ରୀଡ଼ନକ ସାଜନ୍ତି, ଏମିତି ଦୃଷ୍ଟାନ୍ତର ବିରଳ ନାହିଁ ।

ସୂର୍ଯ୍ୟ ଉଦୟ ହେଲେ ସୂର୍ଯ୍ୟବଂଶୀୟ ରାଜା ରଘୁକୁଳ ତିଳକ ରାମଚନ୍ଦ୍ର ସିଂହାସନାରୂଢ଼ ହେବେ । ସର୍ବପ୍ରସ୍ତୁତି ପର୍ବର ଶେଷ ହୋଇଛି । ରାତ୍ରିର ଯବନିକା ଉତ୍ତୋଳନ ହେଲେ ମଙ୍ଗଳ ଅଭିଷେକର ଶୁଭକାର୍ଯ୍ୟ ସମ୍ପାଦନ ହେବ । ଖଳନାୟିକା ମନ୍ଥରା ମହାରାଣୀ କୈକେୟୀ କାନରେ କି ମନ୍ତ୍ରଣା ଫୋଡ଼ିଲା କୈକେୟୀ ତାଙ୍କ ପୂର୍ବବରକୁ ଅଡ଼ି ବସିଲେ । "ରାମ ଚଉଦ ବର୍ଷ ବନବାସ ଯିବେ, ଭରତ ରଜା ହେବେ ।" ମହାପ୍ରତାପୀ, ମହାବଳବାନ ନରାଧିପତି ଦଶରଥଙ୍କୁ କି ଅସ୍ତ୍ର ପ୍ରୟୋଗ କଲା ! ହିଂସ୍ରା ରାଣୀ କୈକେୟୀ କେଜାଣି ଦଶରଥ ହାର ମାନିଲେ । ବିଧି ଅଲକ୍ଷ୍ୟରେ [illegible] ମନ୍ଦହାସ୍ୟ କରୁଥିଲେ । ରାମଚନ୍ଦ୍ର ପତ୍ନୀ ସୀତା, ଭ୍ରାତା ଲକ୍ଷ୍ମଣଙ୍କୁ ଧରି ବଣକୁ ବାହାରିଲେ ।

'ହା ରାମ' 'ହା ରାମ' କହି ମହାରାଜା ଦଶରଥ ଦୁଃଖରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଭରତ ମାମୁଁଘରୁ ଫେରି ଏ ସମ୍ବାଦ ପାଇ ଦୁଃଖରେ ମ୍ରିୟମାଣ ହୋଇ ରାମଙ୍କ ପାଦୁକା ପୂଜାକରି ସେବକ ଭାବରେ ରାଜକାର୍ଯ୍ୟ ବୁଝିଲେ । ଭାଗ୍ୟର ବିଡ଼ମ୍ବନାରେ ସବୁ ଓଲଟ ପାଲଟ

ହୋଇଗଲା । କୈକେୟୀ ସିନା ଛଳନା ଅସ୍ତ୍ରରେ ଦଶରଥଙ୍କୁ ପରାଜିତ କଲେ, ହେଲେ ଭାଗ୍ୟକୁ ହରାଇ ପାରିଲେ ନାହିଁ । ତାଙ୍କର ମନୋବାଞ୍ଛା ପୂରଣ ହେଲାନାହିଁ ।

ଭାଗ୍ୟର ନିର୍ଦ୍ଦେଶକୁ ମାନିନେଇ ଜଙ୍ଗଲରେ କୁଡ଼ିଆ ଘରେ ରହିଲେ ପ୍ରଭୁ ରାମଚନ୍ଦ୍ର, ସ୍ତ୍ରୀ ସୀତା ଓ ଭାଇ ଲକ୍ଷ୍ମଣ ସହ । ଫଳ, ମୂଳ ଖାଇଲେ—ଝରଣା ପାଣି ପିଇଲେ, ହେଲେ ଭାଗ୍ୟ ବାଦସାଧିଲା । ପଞ୍ଚବଟିବଣରେ ସ୍ୱର୍ଣ୍ଣମୃଗ ଦେଖି ସୀତା ମୃଗପାଇଁ ଜିଦ୍ ଧରିଲେ । ସ୍ୱର୍ଣ୍ଣମୃଗ ହରିଣ, ଏକଥା ରାମ ବୁଝିଲେବି ସୀତାଙ୍କ ପାଖରେ କ'ଣ ଅସ୍ତ୍ର ଥିଲା, ଶେଷକୁ ପରାଜିତ ହେଲେ ମର୍ଯ୍ୟାଦାବନ୍ତ ପୁରୁଷ ରାମଚନ୍ଦ୍ର । ସେ ମାୟାମୃଗକୁ ଅନୁଧାବନ କଲାବେଳେ ସୀତାଙ୍କୁ ଚୋରାଇ ନେଲା ଲଙ୍କାର ରାଜା ରାବଣ । ଶେଷକୁ ସୀତା ହରଣ, ରାବଣ ମରଣ ଘଟଣାର ଯବନିକା ପାତହେଲା । ରାମଚନ୍ଦ୍ର ପତ୍ନୀ ସୀତା, ଭ୍ରାତା ଲକ୍ଷ୍ମଣ, ପରମଭକ୍ତ ହନୁମାନ ସହ ପୁଷ୍ପକ ରଥରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କଲେ ।

ଏଥର ରାମଚନ୍ଦ୍ରଙ୍କର ରାଜଅଭିଷେକ ହେବ, ଅଯୋଧ୍ୟାପୁରୀ ଆନନ୍ଦରେ ହସି ଉଠୁଚି । ମାହେନ୍ଦ୍ରବେଳା ଉପଗତ । ବଶିଷ୍ଠ ଅଭିଷେକର ସମସ୍ତ ଆୟୋଜନ କରୁଛନ୍ତି । ବ୍ରହ୍ମା, ବୃହସ୍ପତି, ଯମ, ବରୁଣ, କୁବେର, ଅଗ୍ନି, ନୈଋତ ଆଦି ଦଶଦିଗପାଳ ମହାପ୍ରଭୁ ରାମଚନ୍ଦ୍ରଙ୍କର ଅଭିଷେକ ଦେଖିବାପାଇଁ ଠୁଳ ହୋଇଛନ୍ତି । ଏହି ସମୟରେ ଯମ ଦେବତା ଅନର୍ଗଳ ଅଶ୍ରୁ ଗାଳି ଭେ' ଭେ' କାନ୍ଦି ପକାଇଲେ । ଇନ୍ଦ୍ର ପଚାରିଲେ "ତୁମେ ମୃତ୍ୟୁର ଦେବତା ଯମ ହୋଇ କାନ୍ଦୁଚ କାହିଁକି ? ତୁମେ ଯେତେବେଳେ ବନ୍ଧୁ, ସହୋଦରଙ୍କଠାରୁ ପ୍ରିୟଜନଙ୍କୁ ଛଡ଼ାଇ ଆଣ, ସେତେବେଳେ ସେମାନେ ଭୂମିରେ ମୁଣ୍ଡପିଟି କାନ୍ଦନ୍ତି । ତୁମେ ଓଲଟା କାନ୍ଦୁଚ କାହିଁକି ? ଯମ କହିଲେ "ସମସ୍ତଙ୍କ ଉପରେ ମୋତେ ଅଧିକାର ଦେଲ, ହେଲେ ମୁଁ ଲଙ୍କାରାଜା ସହସ୍ରଶିର ରାବଣର ଅଧୀନ—ତା ଘରେ ପାଣିବାହି ଖଟୁଚି । ଧିକ ମୋର ଯମପଣିଆ ।" ଯଦି ପ୍ରଭୁ ରାମଚନ୍ଦ୍ର ସହସ୍ରଶିର ରାବଣକୁ ବଧ ନ କରିବେ, ତା'ହେଲେ ମୋତେ ଯମ ବୋଲି କେହି ଖାତିର କରିବେ ନାହିଁ । "ଶେଷକୁ ରାମଚନ୍ଦ୍ର କପଟ ଲଙ୍କାକୁ ଆସି ସହସ୍ରଶିର

ରାବଣଙ୍କୁ ମାରିବେ, ବ୍ରହ୍ମା ଏକ ଉପାୟ ଚିନ୍ତାକଲେ, ଶେଷକୁ ବ୍ରହ୍ମା ଗଲେ, ଦୁର୍ଗୁଣ ଡାକି କହିଲେ, ତୁମେ ଅଯୋଧ୍ୟାକୁ ଯାଇ ରାମ ଆଉ ସୀତାଙ୍କ କଣ୍ଠରେ ବିରାଜକରି ତାଙ୍କ ଭିତରେ କଳି ଉପୁଆଣ କରିବ, ଯେପରି ସୀତାଦେବୀ ରାମଚନ୍ଦ୍ରଙ୍କୁ ଝିଙ୍କାସିବେ, ତା'ହେଲେ ରାମଚନ୍ଦ୍ର ବଲଙ୍କା ଯାଇ ସହସ୍ରଶିର ରାବଣଙ୍କୁ ବଧ କରିବେ । ଦେବକାର୍ଯ୍ୟ ସମ୍ପାଦନ ହେବ ।"

ଅଭିଷେକ ଆରମ୍ଭ ହେବ । ଦୁନ୍ଦୁଭି ନାଦରେ ଅଯୋଧ୍ୟାନଗରୀ ଚମକି ଉଠୁଛି । ବଶିଷ୍ଠ, ଯାବାଳି, ଯାଜ୍ଞବଲ୍କ୍ୟ, ବାମଦେବ, ଅଙ୍ଗିରା, ଅଷ୍ଟବକ୍ର ମୁନିମାନେ ଏକତ୍ରିତ ହୋଇଛନ୍ତି । ଭରତ, ଶତ୍ରୁଘ୍ନ ଚାମର ଢାଳୁଛନ୍ତି, ଲକ୍ଷ୍ମଣ ଛତ୍ରଧରି ପାଖରେ ଠିଆ ହୋଇଛନ୍ତି । ଦାସ, ଦାସୀ-ମାନେ ସଭାସ୍ଥଳକୁ ବେଢ଼ି ରହିଛନ୍ତି, ଏଇଟା ଗଲା, ଦୁର୍ଗୁଣଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ । ସେମାନେ ତାଙ୍କର କାର୍ଯ୍ୟରେ ଲାଗି ପଡ଼ିଲେ । ରାମଚନ୍ଦ୍ର ବଶିଷ୍ଠ ମହାଋଷିଙ୍କୁ ସେ କିପରି କଷ୍ଟରେ ରାବଣଙ୍କୁ ବଧ କରି ସୀତାଙ୍କୁ ଉଦ୍ଧାର କଲେ ସେହି କଥା କହୁଥାଆନ୍ତି, ସୀତାଙ୍କ କଣ୍ଠରେ ଖଳ ବିରାଜ କରିଥାଆନ୍ତି । ସୀତାଦେବୀ ରାମଚନ୍ଦ୍ରଙ୍କୁ ଉପହାସ କରି କହିଲେ, "କିଛି କାମ ନ କରି ପ୍ରଶଂସାଭାଜନ କେମିତି ହେଉଚ ? ତୁମେ ରାବଣଙ୍କୁ କେତେବେଳେ ମାରିଲ ? ରାମଚନ୍ଦ୍ର କୁବଳୟା ପର୍ବତରେ ରହି କିପରି ରାକ୍ଷସ ବିନାଶ କଲେ, କୁମ୍ଭକର୍ଣ୍ଣ, ମହୀରାବଣ, ରାବଣଙ୍କୁ ବଧ କରି ଅଶୋକବନରୁ କିପରି ସୀତାଙ୍କୁ ଉଦ୍ଧାର କଲେ ତାହା ବର୍ଣ୍ଣନା କରୁ-ଥାଆନ୍ତି । ଜନକ ଦୁହିତା ଜାନକୀ ଏକଥା ଶୁଣି ଉପହାସ କରି କହିଲେ, "ରାବଣ ମୋତେ କଷ୍ଟ ଦେବାରୁ ରାବଣଙ୍କୁ ମୁଁ ମାରିଛି ।" ତୁମେ କାହିଁକି ନିଜ ତୁଣ୍ଡରେ ନିଜ ପ୍ରଶଂସା ମିଛରେ କହି ଚାଲିଚ ?

ମା' ସୀତାଙ୍କର ଏତାଦୃଶ୍ୟ କଠୋର ବାକ୍ୟ ଶୁଣି ରାମଚନ୍ଦ୍ର ରାଗରେ ଥରହର ହେଲେ । ସୀତା କହିଲେ—'ତୁମେ ଯଦି ବଲଙ୍କା ରାଜ୍ୟର ସହସ୍ରଶିର ରାବଣଙ୍କୁ ବଧ କରିପାରିବ, ତା'ହେଲେ ତୁମେ ଜଣେ ଶ୍ରେଷ୍ଠବୀର ବୋଲି ପ୍ରମାଣିତ ହେବ । ଲଙ୍କାଠାରୁ ଶତଗୁଣ ଦୂରରେ ବଲଙ୍କା ରାଜ୍ୟ ଅବସ୍ଥିତ । ସେଠି ସହସ୍ରଶିର ରାବଣ ରାଜୁତି କରୁଚି । ସପ୍ତଶୀର ତା'ର ମନ୍ତ୍ରୀ ଅଟେ । ତ୍ରିଶିର ତା'ର ଭାଇ । ତା'ର ପୁତ୍ର ଶତଶିର ମହା-

ବଳବାନ । ତୁମେ ଯଦି ସହସ୍ରଶିର ରାବଣକୁ ବଧ କରିପାରିବ ତାହେଲେ ତୁମେ ରାବଣକୁ ମାରିଛବୋଲି ଲୋକେ ବିଶ୍ୱାସ କରିବେ ।

ଏକଥା ଶୁଣି ରାମଚନ୍ଦ୍ର ଏକା ଏକା ବିଲଙ୍କା ରାଜ୍ୟରେ ପହଞ୍ଚିଲେ । ତାଙ୍କୁ ପବନ ଆକାଶରେ ଉଡ଼ାଇନେଲା । ସେତେବେଳକୁ ହନୁମାନ ଯଜ୍ଞ ପାଇଁ ଚନ୍ଦନକାଠ ଆଣିବା ନିମନ୍ତେ ଅଯୋଧ୍ୟା ନଗର ବାହାରକୁ ଯାତ୍ରା କରିଥାଏ ।. ବିଲଙ୍କା ରାଜ୍ୟର ପ୍ରଚଣ୍ଡ ପର୍ବତ ଉପରେ ରାମଚନ୍ଦ୍ର ରହିଲେ । ସହସ୍ରଶିର ରାବଣ ରାମଚନ୍ଦ୍ରଙ୍କୁ ଦେଖି ତା'ର ଦୁଇସହସ୍ର ହାତରେ କରତାଳି ଦେବାରୁ ରାମଚନ୍ଦ୍ର ସତୁରି ଯୋଜନ ଦୂରରେ ପଡ଼ି ଚେତା ହରାଇଲେ । ଚେତା ଆସିବାରୁ ଲଜ୍ଜିତ ହୋଇ ତପସ୍ୟା ଆରମ୍ଭ କଲେ । ସୀତାଙ୍କଠାରୁ ହନୁମାନ ଏ ସମସ୍ତ ଖବର ପାଇ ବିଲଙ୍କା ରାଜ୍ୟରେ ରାମଚନ୍ଦ୍ରଙ୍କୁ ଖୋଜି ଖୋଜି ପହଞ୍ଚିଲେ ।

ସହସ୍ରଶିର ରାବଣ ତା'ର ସପ୍ତଶିର ମନ୍ତ୍ରୀଙ୍କୁ ଡାକି ପଚାରିଲା— ରାବଣ ରାମର ସ୍ତ୍ରୀ ସୀତାକୁ ହରଣକରି ଲଙ୍କାକୁ ନେଇ ଆସିଲା, ତେଣୁ ରାମ ରାବଣକୁ ବିନାଶକରି ସୀତାଙ୍କୁ ଉଦ୍ଧାର କଲେ । ସେ ମୋର ରାଜ୍ୟକୁ କାହିଁକି ଆସିଛି ? —ମୁଁ ତାର କିଛି ଦୋଷ କରିନାହିଁ ।' ମନ୍ତ୍ରୀ ସପ୍ତଶିର କହିଲା—'ରାମଚନ୍ଦ୍ର ଅସୁରକୁ ମାରିବାପାଇଁ ମର୍ତ୍ତ୍ୟରେ ଜନ୍ମ ହୋଇଛନ୍ତି । ସେ ଦୁଷ୍ଟଙ୍କୁ ମାରି ମହୀଭାର ଉଶ୍ୱାସ କରିବେ । ଆମେ ରାମଚନ୍ଦ୍ରଙ୍କ ଶରଣ ପଶିଲେ ସେ ଆମର ଅନିଷ୍ଟ କରିବେ ନାହିଁ ।' ଏହାଶୁଣି ସହସ୍ରଶିର ରାବଣ କହିଲା—'ଇନ୍ଦ୍ର ଦେବତା ମୋ ନାଁ ଶୁଣିଲେ ଭୟରେ ଥରହର ହୁଅନ୍ତି । ଯମ ଦେବତା ମୋର ବାଡ଼ରେ ଖଟେ । କୁବେର ମୋର ଲୁଗା ସଫା କରନ୍ତି । ମୁଁ ରାମଙ୍କର ଶରଣ ପଶିବିନାହିଁ ମୁଁ କିଛି ଦୋଷ କରିନାହିଁ ।

ହନୁମାନଙ୍କର ପ୍ରଭୁ ରାମଚନ୍ଦ୍ରଙ୍କ ସହ ସାକ୍ଷାତ ହେଲା । ସହସ୍ରଶିର ରାବଣର ମନ୍ତ୍ରୀ ସପ୍ତଶିର, ପୁତ୍ର ଶତଶିର, ଭାଇ ବିଶିରଙ୍କ ସହ ରାମଚନ୍ଦ୍ରଙ୍କ ପ୍ରବଳ ଯୁଦ୍ଧ ହେଲା । ସେମାନେ ସମସ୍ତେ ମହା ପରାକ୍ରମୀ । ରାମଚନ୍ଦ୍ର ତାଙ୍କର ପରମ ଭକ୍ତ ହନୁମାନ ସହ ବିଲଙ୍କାପୁରରେ ଆତଙ୍କ ସୃଷ୍ଟି କରିବାରେ ଲାଗିଲେ । ଦେବତାମାନେ ପ୍ରଭୁ ରାମଚନ୍ଦ୍ରଙ୍କୁ ସହାୟ ହେଲେ । ପ୍ରଥମେ ମନ୍ତ୍ରୀ ସପ୍ତଶିର ସହ ହନୁମାନର ଘୋର ଯୁଦ୍ଧ ହେଲା । ସପ୍ତଶିର

ହନୁମାନଙ୍କୁ ବାରମ୍ବାର ଆକ୍ରମଣ କରି ଅଥୟ କରିପକାଇଲା । ଶେଷକୁ ରାମଚନ୍ଦ୍ରଙ୍କ ବାଣରେ ତା'ର ସାତଟି ମୁଣ୍ଡ ଛେଦ ହୋଇଗଲା । ରାମଙ୍କ ହାତରେ ସପ୍ତଶିର ନିଧନ ହେଲା । ସହସ୍ରଶିର ରାବଣର ପୁଅ ଶତଶିର ଯୁଦ୍ଧବିଦ୍ୟାରେ ଧୁରନ୍ଧର । ସେ ମଧ୍ୟ ମାୟାବୀ ଅସୁର, ଶତଶିର ସହ ରାମଚନ୍ଦ୍ରଙ୍କର ଘୋର ସଂଗ୍ରାମ ହେଲା । ଶେଷକୁ ପ୍ରଭୁ ରାମଚନ୍ଦ୍ର ତାଙ୍କୁ କୌଣସି ବାଣରେ ପରାସ୍ତ ନକରିପାରି ପାଶୁପତ ବାଣ, ଜ୍ୱାଳାବଳି ବାଣ ପ୍ରୟୋଗ କଲେ । ଶତଶିରର ଏକଶତ ମସ୍ତକ ଭୂଲୁଣ୍ଠିତ ହେଲା । ଶତଶିରର ମୃତ୍ୟୁ ହେଲା । ସେହିପରି ଘୋର ଯୁଦ୍ଧରେ ହନୁମାନ ମନ୍ତ୍ରୀ ତ୍ରିଶିରର ମୁଣ୍ଡକୁ ଖଣ୍ଡଖଣ୍ଡ କରି ପକାଇଲା ।

ପୁଅ, ଭ୍ରାତା, ମନ୍ତ୍ରୀ ବିୟୋଗରେ ସହସ୍ରଶିର ରାବଣ ରାମଙ୍କ ସହ ଘୋର ଯୁଦ୍ଧକଲା, ଯୁଦ୍ଧରେ ଅସୁର ହାରି ରାମଚନ୍ଦ୍ର ପରାସ୍ତ ହେଲେ । ରାମଚନ୍ଦ୍ର ପ୍ରଚଣ୍ଡ ପର୍ବତରେ ବଡ଼ ମନସ୍ତାପରେ ଦିନ କାଟୁଥାନ୍ତି । ଦେବତାମାନେ ପ୍ରଭୁ ରାମଚନ୍ଦ୍ରଙ୍କୁ ଅନୁନୟ କରି କହିଲେ—'ମା ସୀତା-ଦେବୀ, ସହସ୍ରଶିର ରାକ୍ଷସର ମୃତ୍ୟୁର କାରଣ । ସେ ନ ଆସିଲେ କଦାପି ସହସ୍ରଶିରର ମୃତ୍ୟୁ ହେବନାହିଁ । ଏହାଶୁଣି ରାମଚନ୍ଦ୍ର କହିଲେ—'ଜନକ ଦୁଲଣୀ ସୀତା ଯଦି ଲଙ୍କା ନଗରୀକୁ ଆଗମନ କରିବେ, ତେବେ ସହସ୍ରଶିରକୁ ଏକା ମାରିବା ପାଇଁ ମୁଁ ଯେଉଁ ପ୍ରତିଜ୍ଞା କରିଥିଲି, ତାହା ରକ୍ଷା ହେବ କିପରି ? ମୋର ବଞ୍ଚିବା ଧିକ୍, ମୋର ବୀରପଣିଆ ଧିକ୍ । ମୁଁ ଯାଉଛି ଏଥର ଜଙ୍ଗଲରେ ବାସ କରିବି; ଅଯୋଧ୍ୟାକୁ ଆଉ ଫେରିବି ନାହିଁ ।'

ଏହାଶୁଣି ଦେବତାମାନେ କାକୁତି ମିନତି ହୋଇ କହିଲେ—ପ୍ରଭୁ ! ମା ସୀତା ସଭିଙ୍କର ଜନନୀ ସଦୃଶ୍ୟା—ତାଙ୍କୁ ଲଙ୍କା ଆସିବାକୁ ବାରଣ କରନ୍ତୁ ନାହିଁ ।' ଦେବତାମାନେ ବହୁତ କାକୁତି ମିନତି ହେବାରୁ ପ୍ରଭୁ ରାମଚନ୍ଦ୍ର ରାଜିହୋଇ ସୀତାଙ୍କୁ ଆଣିବାକୁ ରଥସହ ଚିତ୍ରସେନ ସାରଥିକୁ ପଠାଇଲେ । ମା' ସୀତା ପ୍ରଭୁ ରାମଚନ୍ଦ୍ର କିପରି ମନସ୍ତାପରେ ଅଛନ୍ତି, ତାହା ଜାଣି ପାରିଥିଲେ । ସେ ଲକ୍ଷ୍ମଣଙ୍କୁ ସାଙ୍ଗରେ ଧରି ଲଙ୍କା ନଗରୀରେ ଉପସ୍ଥିତ ହେଲେ ।

ସେତେବେଳକୁ ସହସ୍ରଶିରକୁ ଯୁଦ୍ଧରେ ଜିଣି ନପାରି ପ୍ରଭୁ ରାମଚନ୍ଦ୍ର ଧନୁ ଫୋପାଡ଼ି ଦେଇ ବିରସ ମନରେ ଚୁପ୍‌ଚାପ ବସିଥାଆନ୍ତି । ତାଙ୍କର ନବଘନରଦକାନ୍ତି କାନ୍ତି ମଳିନ ପଡ଼ି ଯାଇଥାଏ । ହନୁମାନ ଏକା ଏକା ଅସୁରଙ୍କ ସହ ଯୁଦ୍ଧ କରୁଥାଆନ୍ତି । ସୀତା ଦେବୀ ରାମଚନ୍ଦ୍ରଙ୍କୁ ଆଉଥରେ ଧନୁ୍ଧର ଯୁଦ୍ଧ କରିବାକୁ କହିଲେ । ଏଥର ପୁଣି ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା ।

ସହସ୍ରଶିରକୁ ଶକ୍ତିହୀନ କରିବା ପାଇଁ ମା’ ସୀତା ଅପୂର୍ବ ସୁନ୍ଦରୀ ରୂପ ଧାରଣ କଲେ । ହଠାତ୍ ସହସ୍ରଶିର ଦେଖିଲା ଜଣେ ଅପୂର୍ବ ସୁନ୍ଦରୀ ନାରୀ ରାମଙ୍କ ପାଖରେ ଠିଆହୋଇଛି । ସେ ରୂପର ପଟାନ୍ତର ନାହିଁ । ସ୍ୱର୍ଗର ରମ୍ଭା, ଉର୍ବଶୀ, ମେନକା ତା’ର ଦାସୀ ପଣକୁ ସରିହେବେ ନାହିଁ । ଅସୁର ମନରେ କାମପିପାସା ଜାଗ୍ରତ କରାଇ ତାକୁ ହୀନବୀର୍ଯ୍ୟ କରିବା ପାଇଁ ସୀତା ଦେବୀ କାମଦେବଙ୍କ ପଞ୍ଚ ପୁଷ୍ପଶର ନିକ୍ଷେପ କଲେ ।

ଦୈତ୍ୟରାଜ ସହସ୍ରଶିର ସୀତାଙ୍କ ସୌନ୍ଦର୍ଯ୍ୟ ଦେଖି ଅଣାୟତ୍ତ ହୋଇ ପତ୍ନୀ ରୂପରେ ପାଇବା ପାଇଁ ଆକୁଳ ପ୍ରାର୍ଥନା କଲା । ସୀତା କହିଲେ—‘ପ୍ରଥମେ ତୁ ରାମଚନ୍ଦ୍ରଙ୍କୁ ବଧ କର ।’ ଏହା ଶୁଣି ସୀତାଙ୍କୁ ପାଇବା ଆଶାରେ ସହସ୍ରଶିର ରାମଚନ୍ଦ୍ରଙ୍କୁ ଗୋଟିଏ ପରେ ଗୋଟିଏ ଶର ନିକ୍ଷେପ କଲା । ସହସ୍ରଶିର ସୀତାଙ୍କୁ ଦେଖି କନ୍ଦର୍ପ ଜ୍ୱାଳାରେ ପ୍ରପୀଡ଼ିତ ହେବାରୁ ଅଗ୍ନିରେ ଘୃତ ତରଳିଲା ପରି ସେ ଶକ୍ତିହୀନ ହୋଇ ପଡ଼ିଲା । ତା’ ମନରେ କାମବାସନା ଜାଗ୍ରତ ହେବାକୁ ଲାଗିଲା । ସୀତାଦେବୀ ପରର ସ୍ତ୍ରୀ, ଏ କଥାର ଭୁଲିଗଲା । ତା’ର ପୂର୍ବର ବଳବୀର୍ଯ୍ୟ ରହିଲା ନାହିଁ । ରାମଚନ୍ଦ୍ର ପାଶୁପତ ବାଣରେ ତା’ର ଶିର ଛେଦ ପକାଇଲେ । ଲକ୍ଷ୍ମଣ ନାରାଚ ନିକ୍ଷେପ କରି ତା’ର ହସ୍ତ ଛେଦନ କଲେ । ମହାବଳଶାଳୀ, ମହାପରାକ୍ରମୀ ସହସ୍ରଶିର ରାକ୍ଷସ ସୀତାଙ୍କୁ ଦେଖି ଶେଷକୁ ଶକ୍ତିହୀନ, ବୀର୍ଯ୍ୟହୀନ ହୋଇ ମୃତ୍ୟୁବରଣ କଲା । ରାମ ହସ୍ତରେ ତା’ର ନିଧନ ହେଲା ।

ଯେତେବେଳ ପର୍ଯ୍ୟନ୍ତ ସହସ୍ରଶିର ମନରେ ଏହି ଭାବନା ଥିଲା— ମୁଁ ରାମଙ୍କର କୌଣସି ଦୋଷ କରିନାହିଁ । ରାମ କାହିଁକି ମୋ ସହିତ

ଲଢ଼ୁଛନ୍ତି ।' ସେତେଦିନ ପର୍ଯ୍ୟନ୍ତ ରାମ ତାଙ୍କୁ ଯୁଦ୍ଧରେ ହରାଇପାରୁ ନଥିଲେ । ଯେଉଁବେଳେ ସୀତା ରାମଚନ୍ଦ୍ରଙ୍କ ସ୍ତ୍ରୀ ଜାଣି ତା' ମନରେ ପାପଇଚ୍ଛା ଜାଗ୍ରତ ହେଲା, ସେତେବେଳେ ତା'ର ପୁଣ୍ୟର ହ୍ରାସ ଘଟିଲା । ମୃତ୍ୟୁକାଳ ଉପସ୍ଥିତ ହେଲା । ସୀତାଙ୍କୁ ଦେଖିବାରୁ ତା'ର ମୃତ୍ୟୁ ପ୍ରହଞ୍ଚ ଗଲା, ଶେଷରେ ରାମ ହାତରେ ମରିବା ଯାହା ବାକିଥିଲା । ସେହିପରି ସୀତା ହରଣ ରାବଣ ମରଣର କାରଣ ହେଲା । ପର ସ୍ତ୍ରୀକୁ ଅପହରଣ କରିବାରୁ ତା'ର ପୁଣ୍ୟ ନିଃଶେଷ ହୋଇଗଲା । ତା'ର ମୃତ୍ୟୁକାଳ ଆସି ଉପସ୍ଥିତ ହେଲା । ତେଣୁ ରାମଙ୍କ ହାତରେ ତା'ର ପାର୍ଥିବ ଶରୀରର ମୃତ୍ୟୁ କେବଳ ବାକିଥିଲା ।

ମା' ସୀତା ଦେବୀ ସେହିକଥା ପ୍ରଭୁ ରାମଚନ୍ଦ୍ରଙ୍କୁ କହିଥିଲେ— ସୀତା ଦେବୀଙ୍କ ରୂପକୁ ଦେଖି ସେମାନଙ୍କ ମନରେ ପାପ ଆଶା ସଞ୍ଚାର ହେବାରୁ, ସେମାନଙ୍କର ପୁଣ୍ୟ କ୍ଷୟ ହେବାରୁ ସେମାନେ ପ୍ରାୟ ମରି-ସାରିଥିଲେ । ରାକ୍ଷସ ଦୁହିଙ୍କର ଶୌର୍ଯ୍ୟ, ବୀରତ୍ୱର ମୃତ୍ୟୁ ଘଟିଥିଲା । ରାମ ତାଙ୍କର ପାର୍ଥିବ ଶରୀରର ମୃତ୍ୟୁ ଘଟାଇଲେ । ତେଣୁ ମା' ସୀତା ଦେବୀ ବିନା ଅସ୍ତ୍ରରେ ସେମାନଙ୍କୁ ହରାଇ ଦେବାରୁ ରାମ ରାକ୍ଷସ ଦୁଇଙ୍କୁ ଅସ୍ତ୍ରରେ ହରାଇ ଦେଇ ବିନାଶ କରିବାକୁ ସକ୍ଷମ ହେଲେ ।

# ଜାତିଦୈତ୍ୟ ବଧ

ଶ୍ରୀ ରଣଧୀର ଦାସ

ଉତ୍ସବମୁଖର ଅଭିଷେକର କୋଳାହଳ ତଥାପି ସରିନାହିଁ । ଚଉଦ ବର୍ଷ ବନବାସର କ୍ଳାନ୍ତ ଶରୀରରୁ ମରିନାହିଁ । ଶ୍ରୀରାମ ପୁଣି ରାଜ୍ୟ ତ୍ୟାଗୀ ହେବେ ?

ଏ ଦୁଃସମ୍ବାଦଟି ଅଯୋଧ୍ୟାରେ ଗୋଟିଏ ପ୍ରଶ୍ନବାଚୀ ହୋଇ ବନାଗ୍ନି ଭଳି ବ୍ୟାପିଗଲା । ହା-ହା କାରରେ ଅଯୋଧ୍ୟା ନଗରୀର ରାଜପଥ ମୁଖରିତ ହେଲା ।

ବିମାତା କୈକେଇଙ୍କ ଷଡ଼ଯନ୍ତ୍ର ଯିନା ରାମଚନ୍ଦ୍ରଙ୍କୁ ବନବାସୀ କରିଥିଲା, ଏଥର କିନ୍ତୁ ପ୍ରାଣପ୍ରିୟା ପତ୍ନୀ ଜାନକୀଙ୍କର ତାଡ଼ନା ତାଙ୍କୁ ରାଜ୍ୟତ୍ୟାଗୀ କରାଉଛି ।

ଏଭଳି ଅବିଶ୍ୱାସ କଥା କେହି ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହନ୍ତି । ଚଉଦ ବର୍ଷର ବିରହାଗ୍ନିରେ ଜଳି ଜଳି ମିଳନର ଚନ୍ଦନ ଗୁଡ଼ର ଲଗ୍ନ ଏଇତ ସରିନାହିଁ । ଏଭଳି ନିଷ୍ଠୁର ନିର୍ଦ୍ଦେଶ ସୀତା ଦେଲେ ବା କିପରି ?

କଥାପ୍ରସଙ୍ଗରେ ପ୍ରଜାମାନଙ୍କୁ ଅସୁର ରାଜା ରାବଣ ହତ୍ୟାର କାହାଣୀ ରାମଚନ୍ଦ୍ର ଶୁଣାଉଥିଲେ । ହଠାତ୍ ଏ କ'ଣ ହେଲା ? ପତି ସୋହାଗିନୀ ମିଷ୍ଟଭାଷିଣୀ ସୀତା ହଠାତ୍ ଅସନ୍ତୁଷ୍ଟ ଗଳାରେ ପ୍ରତିବାଦ

କଲେ । କିନ୍ତୁ ଥିଲେ ମୁଁ ନଥିଲେ ତୁମେ କ'ଣ ଏକା ରାବଣକୁ ମାରି ପାରିଥାନ୍ତ ? ରାବଣକୁ ମାରିବା ପାଇଁ ତୁମେ ଯେତିକି କଷ୍ଟ ସହିଛ, ତା'ଠାରୁ ଅଧିକ କଷ୍ଟ ମୁଁ ସହିଛି । ଯଦି ତୁମେ ଏତେବଡ଼ ବୀର, ଏକା ଯାଇ ମହୀରାବଣକୁ ବଧକର ତ ଦେଖି ! ଲଙ୍କାର ଦଶଶିର ରାବଣକୁ ମାରି ଗର୍ବ କରନାହିଁ । ବିଲଙ୍କା ନଗରୀରେ ଥିବା ସହସ୍ରଶିର ମହୀରାବଣକୁ ଯଦି ମାରିପାରିବ, ତେବେ ଗର୍ବ କଲେ ଶୋଭା ପାଇବ ।

ଶ୍ରୀରାମଙ୍କର ବୀରତ୍ୱ ପ୍ରତି ଏ ଚୂଡ଼ାନ୍ତ ଆହ୍ୱାନ । ସେ କ'ଣ ସ୍ଥିର ହୋଇ ରହିପାରିବେ ? ରହିପାରିବ କୌଣସି ବୀର ପୁରୁଷ ? ଅତଏବ ଗୁରୁଜନ, ପ୍ରଜାଗଣ ଓ ବନ୍ଧୁ ପରିଜନଙ୍କର ଅଶେଷ ବାରଣ ସତ୍ତ୍ୱେ ଶ୍ରୀରାମ ଏକା ଏକା ମହୀରାବଣକୁ ବଧ କରିବାପାଇଁ ବାହାରି ପଡ଼ିଲେ ।

ବିଲଙ୍କାରେ ପହଞ୍ଚି ଶ୍ରୀରାମ ପ୍ରଚଣ୍ଡ ନାମକ ଏକ ପର୍ବତ ଉପରୁ ସେ ନଗରର ଐଶ୍ୱର୍ଯ୍ୟ ଓ ବୈଭବ ଦେଖି ବିସ୍ମିତ ହେଲେ । ସ୍ୱର୍ଣ୍ଣ ନଗରୀ ଲଙ୍କାଠାରୁ କୋଟିଏ ଗୁଣରେ ବିଲଙ୍କା ଐଶ୍ୱର୍ଯ୍ୟମୟୀ । ସେ ନଗରୀରେ ଆତଯାତ ହେଉଥିବା ରାକ୍ଷସ ରାକ୍ଷସୀ ଏକ ଏକ ବିଶାଳ ପର୍ବତଭଳି ମନେ ହେଉଛନ୍ତି । ସ୍ୱର୍ଗର ଦେବତାଗଣ ବିଲଙ୍କା ନରେଶ ସହସ୍ରଶିରର ଦାସ ପଣେ ଖଟୁଛନ୍ତି । ଧନପତି କୁବେର ତା'ର ରଜକ ରୂପରେ ଓ ଯମରାଜା ବାଡ଼ି ଚାଟି ଖଟଣୀ ରୂପରେ ଖଟୁଛନ୍ତି ।

ଏତେ ଅସ୍ପର୍ଦ୍ଧା !! ଦେବଗଣଙ୍କୁ ଦାସ ପଣେ ରଖିଛି !!

ଗର୍ବଗଞ୍ଜନ ଶ୍ରୀରାମ ଧନୁରେ ଗୁଣ ଚଢ଼ାଇ ଡାକଦେଲେ—ରେ ବିଲଙ୍କାଧୀଶ, ମୁଁ ଦଶରଥ ତନୟ ଶ୍ରୀରାମ । ପର୍ଶୁରାମଙ୍କ ଦର୍ପଦଳନକାରୀ । ମହାବୀର ବାଳି ଓ ରାବଣର ହନ୍ତାକାରୀ ତୋ' ଅହଙ୍କାରକୁ ଧ୍ୱଂସ କରିବାକୁ ଆସିଛି । ପାରୁ ଯଦି ମୋ' ଶରଘାତରୁ ନିଜକୁ ରକ୍ଷାକର ।

ଶ୍ରୀରାମଙ୍କର ଏଭଳି ଆହ୍ୱାନ ଶୁଣି ମହାବଳୀ ସହସ୍ରଶିର ତାଳମାରି ଅଟ୍ଟହାସ କଲା ।

କିନ୍ତୁ ଏ କ'ଣ ? ସେହି ହାତ ତାଳିରୁ ଉତ୍ପନ୍ନ ପବନ ସତେକି ଅଣଚାଶ ଝଡ଼ର ରୂପ ନେଲା ! ! ଶ୍ରୀରାମଙ୍କୁ ଉଡ଼ାଇନେଇ ସତୁରି ଯୋଜନ ଦୂରରେ ଗଣ୍ଡୁକୀ ନଦୀ କୂଳରେ ପକାଇଦେଲା ।

ରଘୁବୀରଙ୍କ ଜୀବନରେ ପରାଜୟର ଏ ଲାଞ୍ଛନା ! ସେ ପୁଣି ଗୋଟାଏ ରାକ୍ଷସଠାରୁ ! ଶ୍ରୀରାମଙ୍କ ମନ ଭିତରେ ପ୍ରତିଶୋଧର ଅଗ୍ନି ଜଳି ଉଠିଲା । ସହସ୍ରଶିରାକୁ ବଧ କରିବା ଲକ୍ଷ୍ୟନେଇ ସେ ଯୋଗାସନରେ ବସିଲେ ।

ଦିନପରେ ଦିନ, ମାସ ପରେ ମାସ ବିତିଗଲା । ଶ୍ରୀରାମଙ୍କର କୌଣସି ସମ୍ବାଦ ନାହିଁ । ପତିଗତପ୍ରାଣା ସୀତା ନିଜକୁ ଅପରାଧିନୀ ମଣିଲେ । କାହିଁକି ଏଭଳି ନିଷ୍ଠୁର କଥା ସେଦିନ ତାଙ୍କ ଓଠରୁ ଖସିଗଲା ? ଦୈବୀ ମାୟା ନୁହେଁ ତ ??

ବ୍ୟାକୁଳ ଚିତ୍ତରେ ହନୁମାନକୁ ପଠାଇଲେ—ଶ୍ରୀରାମଙ୍କୁ ଠାବ କରିବାକୁ ।

କଠିନ ତପସ୍ୟାରୁ ନିମୀଳିତ ଦୃଷ୍ଟି ଖୋଲି ଶ୍ରୀରାମ ଚାହିଁଲେ । ଆଗରେ ଯୋଡ଼ହସ୍ତ ମାରୁତି । ଉଭୟେ ପ୍ରଭୁ ଓ ଦାସ ସହସ୍ରଶିରାକୁ ପରାସ୍ତ କରିବାର ସଂକଳ୍ପ ନେଇ ବିଧିବଦ୍ଧ ଯୋଜନା ପ୍ରସ୍ତୁତ କରିନେଲେ ।

ବିଲଙ୍କା ନଗରେ ଏ ସମ୍ବାଦ ପହଞ୍ଚିବାକୁ ବିଳମ୍ବ ହେଲା ନାହିଁ । ରାଜା ସହସ୍ରଶିରାର ନିର୍ଦ୍ଦେଶ—ନର ଓ ବାନର ଦୁହିଁଙ୍କୁ ହତ୍ୟାକର । ଏଇ ମୁହୂର୍ତ୍ତରେ ।

ମନ୍ତ୍ରୀ ସପ୍ତଶିରା ପ୍ରତିବାଦର ସ୍ୱର ଉଠାଇଥିଲା । ଶାନ୍ତ କଣ୍ଠରେ କହିଥିଲା ମହାରାଜ ! ପ୍ରଭୁ ରାମଚନ୍ଦ୍ରଙ୍କୁ ସାଧାରଣ ମାନବ ଓ ମହାବୀର ହନୁମାନଙ୍କୁ କେବଳ ମର୍କଟ ବୋଲି ମଣନ୍ତୁ ନାହିଁ । ଜଣେ ଐଶୀଶକ୍ତି-ସମ୍ପନ୍ନ ତ ଅନ୍ୟଜଣେ ଈଶ୍ୱର ବିଶ୍ୱାସରେ ବଳୀୟାନ ।

ଅଟ୍ଟହାସରେ ଗଗନ ପବନ ପ୍ରକମ୍ପିତ କରିଥିଲା ସହସ୍ରଶିରା । ଦର୍ପିତ କଣ୍ଠରେ ଘୋଷଣା କରିଥିଲା—ସେ ଦୁହିଁଙ୍କୁ ସ୍ଥିର ନର ଓ ବାନର ବ୍ୟତୀତ ମୁଁ ଅନ୍ୟକିଛି ଭାବେ ନାହିଁ ।

ତୁମର ତଥାକଥିତ ରାମ ମୋ’ କରତାଳିର ପବନରେ ଉଡ଼ି କାହିଁ କେଉଁଠି ପଡ଼ିଥିଲା । ମହାବୀର ବୋଲି ବୋଲାଉଥିବା ବାନର ହନୁମାନ ମୋ’ ମାୟା ସରୋବରର ଜଳ ପାନକରି ମୃତ୍ୟୁ ଲଭିଥିଲା । ଦେବଗଣ ମୋ’ ବିରୁଦ୍ଧରେ ଷଡ଼ଯନ୍ତ୍ର କରି ସେମାନଙ୍କୁ ଜୀବିତ କରିଛନ୍ତି । ପ୍ରଥମେ ଏ ନର ଓ ବାନରଙ୍କୁ ହତ୍ୟାକରି ତା’ପରେ ଦେବଗଣଙ୍କ ମୁଣ୍ଡଗଣ୍ଡି ଅଲଗା କରିବି । ଏହା ମୋର ବଜ୍ର ପ୍ରତିଜ୍ଞା ଓ ନିର୍ଦ୍ଦେଶ ।

ଅଗତ୍ୟା ସପ୍ତଶିରା ଦୈତ୍ୟ ସୈନ୍ୟ ସାମନ୍ତ ନେଇ ଶ୍ରୀରାମ ଓ ହନୁମାନଙ୍କ ସହ ଯୁଦ୍ଧପାଇଁ ପ୍ରସ୍ତୁତ ହେଲା ।

ପ୍ରଚଣ୍ଡ ପର୍ବତ ଉପରୁ ଶ୍ରୀରାମ ଦେଖିଲେ ବିଲଙ୍କା ନଗର ଆଡ଼ୁ ଅସଂଖ୍ୟ ସୈନ୍ୟସାମନ୍ତ ଧରି ତାଙ୍କରି ଆଡ଼କୁ ପ୍ରକାଣ୍ଡକାୟ ରାକ୍ଷସ ଜଣେ ମାଡ଼ିଆସୁଛି । ହନୁମାନ ଚିହ୍ନାଇ ଦେଲେ—ଏ ସହସ୍ରଶିରା ରାକ୍ଷସର ମନ୍ତ୍ରୀ ସପ୍ତଶିରା ।

ଏଭଳି ଯୁଦ୍ଧ ସ୍ୱର୍ଗ ମର୍ତ୍ତ୍ୟଲୋକରେ କେବେ ଘଟି ନଥିଲା । ସପ୍ତଶିରାର ଶକ୍ତି ସହସ୍ର ରାବଣଠାରୁ ଆହୁରି ଅଧିକ । ଭୟଙ୍କର ଯୁଦ୍ଧ ଚାଲିଲା । ଏକ ପକ୍ଷେ ଅଗଣିତ ସୈନ୍ୟସାମନ୍ତ, ରଥୀ, ମହାରଥୀ । ଅନ୍ୟ ପକ୍ଷେ କେବଳ ଶ୍ରୀରାମ ଓ ହନୁମାନ । ମୁଷ୍ଟିଯୁଦ୍ଧ, ମଲ୍ଲଯୁଦ୍ଧ, ଗଦାଯୁଦ୍ଧ ଓ ଖଣ୍ଡାଯୁଦ୍ଧ ସବୁ ଯୁଦ୍ଧରେ ସପ୍ତଶିରାର ବିଜୟ ହେଲା ।

ଶ୍ରୀରାମଙ୍କର ଚିତ୍ତଚଞ୍ଚଳ ହୋଇ ଉଠିଲା । ମନ୍ତ୍ରୀ ସପ୍ତଶିରାର ମୃତ୍ୟୁ ନ ହେଲେ ସହସ୍ରଶିରାକୁ ହତ୍ୟା କରିବା ଶପଥ, ଶପଥରେ ରହିଯିବ । ମହାବଳୀ ହନୁମାନର ବଜ୍ରମୁଷ୍ଟି ମଧ୍ୟ ଅସୁର ଶରୀରକୁ ଶିରିଷ କୁସୁମ ଭଳି ପ୍ରତୀତ ହେଉଛି ।

ଇଷ୍ଟଦେବ ସ୍ମରଣା କରି ରାମଚନ୍ଦ୍ର କୋଦଣ୍ଡରେ ସହସ୍ର ଶର ସଂଯୋଗ କରି ବିନ୍ଧିଲେ । ଏକାଥରେ ସାତଟି ଶିର କଟି ଭୂତଳଶାୟୀ ହେଲା । ରାକ୍ଷସର ବିଶାଳକାୟ ଶରୀରଟା ରକ୍ତାକ୍ତ ଅବସ୍ଥାରେ ମାଟି ଉପରେ ପାହାଡ଼ ପରି ପଡ଼ିରହିଲା ।

ସପ୍ତଶିରର ଚନ୍ଦ୍ରୀ ସୁରେଖୀ ସ୍ୱାମୀ ମୃତ୍ୟୁର ଦୁଃସମ୍ବାଦ ଶୁଣିଲ । ସତେ ବା' 'ତା' ମଥା ଉପରେ ଆକାଶ ଭାଙ୍ଗି ପଡ଼ିଲା । ପାଦତଳୁ ମାଟି ଧସିଗଲା । ତା'ର ଅର୍ତ୍ତକଣ୍ଠର କ୍ରନ୍ଦନ ଗଗନ ପବନ ଅସ୍ଥିର କଲା । ଦଶମାସର ଗର୍ଭଭାର । ତା' ଉପରେ ଏ ଦୈବୀଦଣ୍ଡ ! ସୁରେଖୀର ଦେହ ଓ ମନ ଅବଶ ହୋଇ ପଡ଼ୁଛି । ସ୍ମୃତିରେ ଅନ୍ଧାର ଦିଶୁଛି ।

ସ୍ୱାମୀର ଗୁଣ ସ୍ମରି ସ୍ମରି କାନ୍ଦୁଥିଲା ସୁରେଖୀ ।
—"କାହିଁକି କାନ୍ଦୁଛ ମା' ଜନନୀ ।"
କିଏ ? କାହାର ଏ କୋମଳ କଣ୍ଠଧ୍ୱନିରେ ବଜ୍ର ନିର୍ଘୋଷ ?

ସ୍ୱରଆଡ଼େ ଚାହିଁଲା ସୁରେଖୀ । କେହି କୁଆଡ଼େ ନାହାନ୍ତି । ନିଜକୁ ଚାହିଁଲା । ନାଭିକେନ୍ଦ୍ରରୁ ଓଁକାର ଧ୍ୱନିଭଳି ତା'ର ଗର୍ଭ ଭିତରୁ ସେଇ ନାଦ ଭାସିଆସୁଛି । "କାହିଁକି କାନ୍ଦୁଛ ମା ?"

ନିଜର ସ୍ଫୀତ ଉଦରକୁ ବାମ ପାପୁଲିରେ ଆଦରରେ ସାଉଁଳି ଅଣିଲା ସୁରେଖୀ । କୋହ ବନ୍ଦକରି ଉତ୍ତର ଦେଲା—"ଧନରେ; ତୋ'ର ପିତାଙ୍କ ଅକାଳ ମୃତ୍ୟୁରେ ମୁଁ କ୍ରନ୍ଦନ କରୁଛି ।

ଗର୍ଭସ୍ଥ ସନ୍ତାନ ଗର୍ଜନ କଲା—"ମତେ ଶୀଘ୍ର ତୁମ ଜରାୟୁରୁ ବାହାର କର ମା' । ମୁଁ ପିତୃହନ୍ତାର ପ୍ରାଣନାଶ କରିବି । କୁହ ମା' ମୋ' ପିତାଙ୍କୁ ଯିଏ ମାରିଛି ତା'ର ନାମ କ'ଣ ? ପୃଥିବୀରୁ ସେ ନାମ ମୁଁ ନିଶ୍ଚିହ୍ନ କରାଇ ଦେବି ।

ସୁରେଖୀ ଉତ୍ତର ଦେଲା—"ଦଶରଥ ନନ୍ଦନ ରାମଚନ୍ଦ୍ର ।"

ଗର୍ଭସ୍ଥ ସନ୍ତାନ ବଜ୍ରରଡ଼ି ଦେଲା—ମୁଁ ରାମଚନ୍ଦ୍ରଙ୍କୁ ହତ୍ୟା କରିବି । ତୁ ଶୀଘ୍ର ମତେ ପ୍ରସବ କର ।

ସୁରେଖୀ ତତ୍‌କ୍ଷଣାତ୍ ପ୍ରସବ କଲା । ମନ୍ଦର ପର୍ବତ ଭଳି ନାଳ ନକ୍ଷତ୍ରର ଶରୀର—ନାଭିନାଡ଼ରେ ଛନ୍ଦହୋଇ ବାହାରି ଆସିଲା । ମେଘ

ଘଡ଼ଘଡ଼ ଭଳି ଗର୍ଜନ କଲା—କୁହ ମା' ରାମ କେଉଁଠି ଅଛି ? ଏଇ ମୁହୂର୍ତ୍ତରେ ମୁଁ ତା'ର ପ୍ରାଣନାଶ କରିବ । ଶୀଘ୍ର ମୋର ନାମ ଦିଅ ।

ଏତିକି କହି ନାଭିନାଡ଼କୁ ଅସ୍ଥାରେ ଗୁଡ଼ାଇ ଗାତ୍ରଦର୍ପରେ ସୁରେଖୀର ନବଜାତ ପୁତ୍ର ଠିଆ ହୋଇଗଲା ।

ଆଦରରେ ସୁରେଖୀ ରାକ୍ଷସୀ ପୁତ୍ରକୁ କୋଳକୁ ନେଇ ସ୍ତନ୍ୟପାନ କରାଇଲା । ମା' ବକ୍ଷର ଅମୃତ ପାନକରି ପୁତ୍ର ଆହୁରି ବଳଶାଳୀ ଓ ଭୟଙ୍କର ଦେଖାଗଲା ।

ସୁରେଖୀ ରାକ୍ଷସୀ ନାଭିନାଡ଼ବନ୍ଧା ଶରୀରକୁ ଆଉଁସି ଦେଇ କହିଲା—ଆଜିଠାରୁ ତୋ'ର ନାମ ହେଲା ନାଭିଦୈତ୍ୟ । ଯା'—ପିତୃହନ୍ତାର ପ୍ରତିଶୋଧ ନେ' ।

ବିକଟାଳ ଗର୍ଜନ କରି ନାଭିଦୈତ୍ୟ ସେ ସ୍ଥାନ ପରିତ୍ୟାଗ କଲା । ମାୟାବୀ ଦାନବ ଆକାଶରେ ମେଘଖଣ୍ଡ ପାଲଟି ଯାଇ ଶ୍ରୀରାମଙ୍କ ନିକଟତର ହେଲା ।

ଆହ୍ନିକ ପୂଜା ସମାପନ କରି ଶ୍ରୀରାମ ପର୍ବତରେ ବୁଲୁ ବୁଲୁ ଲକ୍ଷ୍ୟ କଲେ, ଆକାଶରେ କଳାହାଣ୍ଡିଆ ମେଘ ଖଣ୍ଡେ ସୂର୍ଯ୍ୟକୁ ଢାଙ୍କି ପକାଉଛି ।

ହନୁମାନଙ୍କୁ କହିଲେ—ମାରୁତି, ଦେଖ ତ—ବୋଧହୁଏ ମାୟାବୀ ଦୈତ୍ୟ କେହି ଲଙ୍କାରୁ ଏ ଦିଗକୁ ଆସୁଛି ।

ନିରେଖି ଚାହିଁଲେ ହନୁମାନ । "ହଁ ପ୍ରଭୁ, ଆପଣ ସତ୍ୟ କହୁଛନ୍ତି । ଏ'ତ ରାକ୍ଷସ !" ଏତିକି କହୁ କହୁ ମେଘ ଖଣ୍ଡ ପାହାଡ଼ ଉପରେ ଖସିପଡ଼ିଲା । ଶ୍ରୀରାମ ଓ ହନୁମାନଙ୍କର ଆଉ ବୁଝିବାକୁ ବାକି ନଥିଲା ଯେ ମୁଖ ବ୍ୟାଦାନ କରି ରାକ୍ଷସ ମାଡ଼ି ଆସୁଛି ବେଗ ସହିତ ସେମାନଙ୍କୁ ଉଦରସ୍ଥ କରିବ ବୋଲି ।

ରୂପଠାରୁ କଣ୍ଠସ୍ୱରକୁ ଆହୁରି ଭୟଙ୍କର କରି ଅସୁର ଗର୍ଜନ କଲା—"ହେ ରାମ; ତୁ ମୋର ପିତାକୁ ମାରିଛୁ, ମୁଁ ତତେ ଅବିଳମ୍ବେ ଯମପୁର ପଠାଇବି । ମୁଁ ସପ୍ତଶିର ସନ୍ତାନ ନାଭିଦୈତ୍ୟ ।"

ଶ୍ରୀରାମ ଦରହସିତ ଅଧରରେ କହିଲେ—ବ୍ୟସ୍ତ ହୁଅନାହିଁ ବାଳକ, ତୋ' ପିତା ସହ ଅତି ଶୀଘ୍ର ତୋ' ସାକ୍ଷାତର ବ୍ୟବସ୍ଥା ମୁଁ କରୁଛି ।

ଆଉ ନାଭିଦୈତ୍ୟକୁ ସମ୍ଭାଳେ କିଏ ? ଏକାଥରକେ ପାହାଡ଼ସହ ଶ୍ରୀରାମ ଓ ହନୁମାନଙ୍କୁ ଉଦରସ୍ଥ କଲା ।

ନାଭିଦୈତ୍ୟର କାନବାଟେ ହନୁ ତା' ଗର୍ଭରୁ ବାହାରି ଦେଖିଲେ ଶ୍ରୀରାମ ନାହାନ୍ତି । ନଷ୍ଟପୁ ରାକ୍ଷସ ପ୍ରଭୁଙ୍କୁ ବି ଗିଳିଛି । କାଳବିଳମ୍ବ ନ କରି ହନୁମାନ ପୁଣି ଦୈତ୍ୟର ନାଶାଦ୍ୱାର ଦେଇ ତା' ଗର୍ଭ ଭିତରକୁ ପ୍ରବେଶ କଲେ ।

ନାଭିଦୈତ୍ୟର ଗର୍ଭ ଭିତରୁ ଶ୍ରୀରାମଙ୍କୁ ଧରି ହନୁମାନ୍ ପୁଣି ଶ୍ରବଣ ପଥ ଦେଇ ବାହାରି ଆସିଲେ । ଆକାଶ ପଥରେ ଉଡ଼ିବାକୁ ଲାଗିଲେ ।

ନାଭିଦୈତ୍ୟ ଭାବିଲା—ରାମ ଓ ହନୁମାନ ନାହାନ୍ତି । ପର୍ବତ ସହ ଦୁହେଁ ତା' ଗର୍ଭରେ । ହୁଏତ ଅଣନିଃଶ୍ୱାସୀ ହୋଇ ମୃତ୍ୟୁବରଣ କରିସାରିବେଣି ।

ବିଜୟୋଲ୍ଲାସରେ ନାଭିଦୈତ୍ୟ ଅଟ୍ଟହାସ କଲା । ଦେବଗଣଙ୍କୁ ବିନାଶ କରିବାକୁ ସ୍ୱର୍ଗପୁରକୁ ଧାଉଡ଼ି ଦେଲା । ଏଭଳି ଅଭାବିତ ଘଟଣା ପାଇଁ ଦେବଗଣ ପ୍ରସ୍ତୁତ ନଥିଲେ । ଭୟରେ "ଶ୍ରୀରାମ ରକ୍ଷାକର" ବୋଲି ଏକସ୍ୱରରେ ସମସ୍ତେ ପ୍ରାର୍ଥନା କଲେ ।

ଆକାଶ ପଥକୁ ଚାହିଁ ହନୁମାନ ଶ୍ରୀରାମଙ୍କୁ କହିଲେ ପ୍ରଭୁ, ନାଭିଦୈତ୍ୟ ବର୍ତ୍ତମାନ ସ୍ୱର୍ଗ ବିଜୟ କରିବାକୁ ଯାତ୍ରା କରୁଛି ।

ତତ୍‌କ୍ଷଣାତ୍ ଶ୍ରୀରାମ ଧନୁ ହାତରେ ଗୁଣ ଚଢ଼ାଇ ହନୁମାନଙ୍କୁ ସତର୍କ କଲେ—ଦୈତ୍ୟର ପଥରୋଧ କର ହନୁମାନ ।

ଶର ଯାଇ ଆକାଶକୁ ଆଚ୍ଛନ୍ନ କରିଦେଲା । ନାଭିଦୈତ୍ୟ ହତବୁଦ୍ଧି ହୋଇ ଭାବିଲା—ରାମ ଓ ହନୁମାନଙ୍କୁ ତ ମୁଁ ଉଦରସ୍ଥ କଲି । ପୁଣି କିଏ ମତେ ଶର ବିନ୍ଧିଲା ? ଏତିକି ଭାବି ସେ ପଛକୁ ଫେରି ଚାହିଁଲା । ଦେଖିଲା କୋଦଣ୍ଡ ହସ୍ତରେ ସ୍ୱୟଂ ଶ୍ରୀରାମ ଉଭା ହୋଇଛନ୍ତି । ଗଗନ ମାର୍ଗରେ ହନୁମାନ ପକ୍ଷୀଟିଏ ଭଳି ଉଡ଼ିବୁଲୁଛନ୍ତି ।

କ୍ରୋଧରେ ନାଭିଦୈତ୍ୟ ଭୀଷଣକାୟା ଧାରଣ କରି ଶ୍ରୀରାମଙ୍କ ଆଡ଼କୁ ମାଡ଼ିଆସିଲା । ଏହା ଦେଖି ହନୁମାନ ଆହୁରି ଅଧିକ ଭାବରେ ବିରାଟ କାୟା ବିସ୍ତାର କରି ଶ୍ରୀରାମଙ୍କୁ ଆଢୁଆଳ କରି ନାଭିଦୈତ୍ୟକୁ ସମ୍ମୁଖ କଲେ ।

ସମ୍ମୁଖରେ ହନୁମାନଙ୍କୁ ଦେଖି ନାଭିଦୈତ୍ୟ ସତର ଯୋଜନ ଯାଏ କାୟା ବିସ୍ତାର କଲା ଓ ହନୁମାନଙ୍କୁ ଦୁଇ ହାତରେ ଚାପି ଧରିଲା ।

"ଜୟ ଶ୍ରୀରାମ" କହି ମାରୁତି ନିଜ ଶରୀରକୁ ତିରିଶ ଯୋଜନ ଯାଏଁ ବ୍ୟାପ୍ତକରି ଦୈତ୍ୟର ବଜ୍ର ମୁଷ୍ଟିରୁ ଖସି ଆସିବାକୁ ଚେଷ୍ଟାକଲେ । ମାତ୍ର ନାଭିଦୈତ୍ୟ ହନୁମାନଙ୍କୁ ଜାକିଧରି ଶୂନ୍ୟରେ ଉଡ଼ିବାକୁ ଲାଗିଲା । ଏହା ଦେଖି ଦାଶରଥି ନିଜ କୋଦଣ୍ଡରୁ ଲକ୍ଷ ଲକ୍ଷ ଶର ଦୈତ୍ୟର ଶରୀରକୁ ବିନ୍ଧିଲେ । ଆଶ୍ଚର୍ଯ୍ୟ ! ଦୈତ୍ୟର ଶରୀରରେ ବାଜି ଶର ସବୁ ଧୂଳି ହୋଇ ଯାଉଥିଲା । ଶକ୍ତିଶାଳୀ ହାଡ଼ଭଙ୍ଗା ଶରକୁ ଶ୍ରୀରାମ ଏଥର ନାଭିଦୈତ୍ୟର ଶରୀରକୁ ଲକ୍ଷ୍ୟକରି ବିନ୍ଧିଲେ । ଏ ଶରର ଶକ୍ତି ଏତେ ତୀବ୍ର ଥିଲା ଯେ ନାଭିଦୈତ୍ୟ ଦୁଇଦଣ୍ଡଯାଏ ନିସ୍ତେଜ ହୋଇ ପଡ଼ିଗଲା । ଏହି ସୁଯୋଗରେ ହନୁମାନ ତା'ର ବଜ୍ରବାହୁ ଭିତରୁ ମୁକୁଳି ଆସି ରାକ୍ଷସ ଉପରେ ମାଡ଼ିବସିଲେ । ବାମକରରେ ନିକଟସ୍ଥ ପର୍ବତକୁ ଉପାଡ଼ି ଆଣି ଅସୁର ଉପରେ ନିଦ୍ଦଲେ । ପୁନରାୟ ପର୍ବତ ପରେ ପର୍ବତ ଉପାଡ଼ି ନିଜ ଲାଙ୍ଗୁଡ଼ରେ ବାନ୍ଧିଲେ ଓ ଲୋମକେ ଗୋଟିଏ କରି କୋଟିଏ ପର୍ବତ ବାନ୍ଧି ରାକ୍ଷସ ଉପରେ ମାଡ଼ିବସିଲେ । ତାଙ୍କ ଉପରେ ବିଜୟୀ ସ୍ୱୟଂ ଶ୍ରୀରାମ ।

ଏ ଭାରି ଚକ୍ରରୁ ନିଜକୁ ମୁକ୍ତ କରିବା ନାଭିଦୈତ୍ୟ ପକ୍ଷେ ସହଜ ନଥିଲା । ତିନିଦିନ ତିନିରାତି ସେହି ପର୍ବତ ଓ ହନୁମାନଙ୍କ ପର୍ବତାକାର ଶରୀର ଭାର ତଳେ ଚାପି ହୋଇ ସେ ମୂର୍ଚ୍ଛିତ ଅବସ୍ଥାରେ ପଡ଼ିରହିଲା ।

ଚିନ୍ତାଦନ ଚଢ଼ିଗଲଣି । ନାଭି ଯାଇଥିଲା ପିତାର ବୈରୀକୁ ମାରିବା ପାଇଁ । କିନ୍ତୁ ଖବର ଅନ୍ତର ନାହିଁ । ସୁରେଶୀର ମା’ ମନକୁ ପାପ ଛୁଇଁଲା । ମହାବଳୀ ଶ୍ରୀରାମ ଓ ହନୁମାନଙ୍କ ହସ୍ତରେ ଯଦି......। ଆଉ ଆଗକୁ ଭାବିପାରୁ ନଥିଲା । ପାଗଳୀ ପ୍ରାୟ “ସେ ନାଭିରେ, ଧନ ନାଭିରେ” ବୋଲି ଉଚ୍ଚସ୍ୱରରେ ଡାକ ଡାକ ଖୋଜି ବୁଲିଲା ।

ସୁରେଶୀର ଆର୍ତ୍ତନାଦ ମୂର୍ଚ୍ଛିତ ନାଭିଦୈତ୍ୟର କାନରେ ପଡ଼ି ଚୈତନ୍ୟ ଫେରାଇ ଆଣିଲା । ମା’ର ଡାକ ତା’ର କ୍ଲାନ୍ତ ଶରୀରରେ ଶତସିଂହର ଶକ୍ତି ଭରିଦେଲା । କର ଲେଉଟାଇ ଉଠିବା ବେଳରେ ଲକ୍ଷ ଲକ୍ଷ ପର୍ବତ ସହ ହନୁମାନ ଯାଇ ସମୁଦ୍ର ଗର୍ଭରେ କଚାଡ଼ି ପଡ଼ିଲେ ।

ପର୍ବତର ଗଦା ଭଳି ହୁଙ୍କାର ଦେଇ ନାଭିଦୈତ୍ୟ ବାହାରକୁ ବାହାରି ଆସିଲା । ବିକଟାଳ ଶବ୍ଦକରି ଚିତ୍କାର କଲା—ରେ ରାମ, କେଉଁଠାରେ ଅଛୁ, ମୋ’ ଆଗକୁ ଆ ।

ଦନୁଜର ଆହ୍ୱାନରେ ଶ୍ରୀରାମ ଏକା ସଙ୍ଗେ କୋଟି କୋଟି ଶର ସନ୍ଧାନ କଲେ । ମାତ୍ର ମହାବଳୀ ନାଭିଦୈତ୍ୟର ଶରୀରରେ ବାଜି ସବୁ ଶର ଖଣ୍ଡଖଣ୍ଡ ହୋଇ ଭାଙ୍ଗି ତଳେ ପଡ଼ିଲା । ଗୋଟିଏ ପରେ ଗୋଟିଏ ଯେତେ ଶକ୍ତିଶାଳୀ ଶସ୍ତ୍ର ଥିଲା ଶ୍ରୀରାମ ସନ୍ଧାନ କରିଥାନ୍ତି, ମାତ୍ର ନିରର୍ଥକ । ହାବୁଡ଼ା ବାଣ, ପାଶୁପତ ବାଣ, ବଜ୍ରବାଣ, ନଳ ବାଣ, ଜ୍ୱାଳାବଳୀ ବାଣ ଓ ପରଶୁ କୁଠାର ଏ ସମସ୍ତ ଶକ୍ତିଶାଳୀ ଦୈବୀଶର ରାକ୍ଷସର ଅଙ୍ଗ ଭେଦକରି ପାରିଲା ନାହିଁ ।

ଲଜ୍ଜା, କ୍ଷୋଭ ଓ କ୍ଳାନ୍ତିରେ ଶ୍ରୀରାମ କୋଦଣ୍ଡ ଫିଙ୍ଗି ଦେଲେ । ନିଜକୁ ଧିକ୍କାରିଲେ । ଦେବଗଣଙ୍କର୍ ବିଶ୍ୱାସର ମର୍ଯ୍ୟାଦା ସେ ଦେଇ ପାରୁନାହାନ୍ତି ଯେତେବେଳେ,.. ଏ ଧନୁ ଧରି ଆଉ ଲାଭ ବା’ କ’ଣ ? କେଉଁ ମୁହଁରେ ସେ ଅଯୋଧ୍ୟା ଫେରିଯାଇ ସୀତାଙ୍କ ଆହ୍ୱାନର ପ୍ରତ୍ୟୁତ୍ତର ଦେବେ ?

ସ୍ୱର୍ଗରେ ଆତଙ୍କ ଖେଳିଗଲା । ହନୁମାନ ସମୁଦ୍ର ଗର୍ଭରେ । ଶ୍ରୀରାମ ଧନୁତ୍ୟାଗ କରିଛନ୍ତି । ଏତିକିବେଳେ ଯଦି ନାଭିଦୈତ୍ୟ ନିରସ୍ତ୍ର

ଶ୍ରୀରାମଙ୍କୁ ହତ୍ୟା କରେ ! ରାକ୍ଷସମାନଙ୍କ କବଳରୁ ଦେବତାଙ୍କୁ ରକ୍ଷା କରିବ କିଏ ??

ବିଚଳିତ ବ୍ରହ୍ମା ଆତୁର କଣ୍ଠରେ ଡାକ ଦେଲେ ପ୍ରଭୁ, ଶରାସନ ତ୍ୟାଗ କରନ୍ତୁ ନାହିଁ । ନାଭିଦୈତ୍ୟର ମୃତ୍ୟୁଭେଦ ଶୁଣନ୍ତୁ ପ୍ରଭୁ । ତା'ର ନାଭିକେନ୍ଦ୍ରକୁ ଲକ୍ଷ୍ୟ କରି ଶର ନିକ୍ଷେପ କରନ୍ତୁ ।

ବ୍ରହ୍ମାଙ୍କ ନିର୍ଦ୍ଦେଶ ଶୁଣି ଶ୍ରୀରାମ କୃତଜ୍ଞତାପୂର୍ଣ୍ଣ ଗଳାରେ କହିଲେ ପ୍ରଭୁ, ଦୟାପୂର୍ବକ ଆପଣଙ୍କର ବ୍ରହ୍ମାସ୍ତ୍ର ମତେ ପ୍ରଦାନ କରନ୍ତୁ ।

ତତ୍‌କ୍ଷଣାତ୍ ବ୍ରହ୍ମା ବ୍ରହ୍ମଶକ୍ତି ଶ୍ରୀରାମଙ୍କ ଧନୁ ଓ ତୂଣୀର ଉଦ୍ଦେଶ୍ୟରେ ପ୍ରେରଣ କଲେ ।

କାଳବିଳମ୍ବ ନ କରି ଶ୍ରୀରାମ ବ୍ରହ୍ମାଙ୍କୁ ସ୍ମରଣ କରି ଦୈତ୍ୟର ନାଭିକେନ୍ଦ୍ରକୁ ବ୍ରହ୍ମଶକ୍ତି ପ୍ରୟୋଗ କଲେ । ରାକ୍ଷସର ନାଭି ଦୁଇଖଣ୍ଡ ହୋଇ ଛିଣ୍ଡିଗଲା । ଭୟଙ୍କର ଗର୍ଜନ କରି ନାଭିଦୈତ୍ୟର ପର୍ବତ ପ୍ରମାଣ ମୃତ ଶରୀରଟି ସମୁଦ୍ର ଗର୍ଭରେ ନିପତିତ ହେଲା ।

ସ୍ୱସ୍ତିର ନିଃଶ୍ୱାସ ଛାଡ଼ିଲେ ଶ୍ରୀରାମ । ସପ୍ତଶିର ଓ ତା'ର ପୁତ୍ର ନାଭିଦୈତ୍ୟର ବିନାଶ ସହସ୍ରଶିରର ମୃତ୍ୟୁ ପଥରେ ଏକ ଏକ ସୂଚନା ସ୍ତମ୍ଭ । ନିଜ ଭିତରେ ଯଥେଷ୍ଟ ଆତ୍ମପ୍ରତ୍ୟୟ ଫେରି ଆସୁଥିଲା । ଦରହସିତ ଅଧରରେ ପ୍ରଭୁ ହନୁମାନଙ୍କୁ ଚାହିଁଲେ ।

ସେତେବେଳକୁ ହନୁମାନ ଯୋଡ଼ହସ୍ତରେ "ଜୟ ଶ୍ରୀରାମ, ଜୟ ଶ୍ରୀରାମ" କହି କହି ବିହ୍ୱଳ ଭାବେ ରଘୁପତିଙ୍କ ଶ୍ୟାମଳ ସୁନ୍ଦର ମୁଖ ପଦ୍ମକୁ ନିରେଖି ରହିଯାଇଥିଲେ ।

# ପାରଳା ସାହିତ୍ୟ ସଂସଦର କାର୍ଯ୍ୟକାରୀ କମିଟି

ମୁଖ୍ୟ ଉପଦେଷ୍ଟା : ଜଷ୍ଟିସ୍ ଶ୍ରୀ ରଙ୍ଗନାଥ ମିଶ୍ର

ଉପଦେଷ୍ଟା : ଶ୍ରୀ ସହଦେବ ସାହୁ
: ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ
: ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ

ସଭାପତି : ଶ୍ରୀ ବସନ୍ତ କୁମାର ବିଶ୍ୱାଳ

କାର୍ଯ୍ୟକାରୀ ସଭାପତି : ଶ୍ରୀ ଅଭୟାନନ୍ଦ ରଥ

ଗ୍ରନ୍ଥ ସମ୍ପାଦକ : ଡଃ ବିଚିତ୍ରାନନ୍ଦ ମହାନ୍ତି
: ଡଃ ହେମନ୍ତ କୁମାର ଦାସ

ସମ୍ପାଦକ : ଇଞ୍ଜିନିୟର ପ୍ରଭାକର ସ୍ୱାଇଁ

ଯୁଗ୍ମ ସମ୍ପାଦକ : ଶ୍ରୀ କିଶୋର କୁମାର ମହାନ୍ତି
: ଶ୍ରୀ ଆଦିତ୍ୟ ପ୍ରତାପ ଧଳ

କୋଷାଧ୍ୟକ୍ଷ : ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି

ସଭ୍ୟବୃନ୍ଦ : ଡଃ ବନବିହାରୀ ପଣ୍ଡା
: ଶ୍ରୀ ନବୀନକୁମାର ପରିଜା
: ଇଞ୍ଜିନିୟର ଅଜିତ ମୋହନ ମୁଖାର୍ଜୀ
: ଶ୍ରୀ ଗୌରାଙ୍ଗଚରଣ କାନୁନ୍‌ଗୋ
: ଶ୍ରୀ ଗଗନ ଚନ୍ଦ୍ର ଦାସ
: ଶ୍ରୀ ଦୁର୍ଗା ପ୍ରସାଦ ସିଂହ
: ଡାକ୍ତର ନିରଞ୍ଜନ ତ୍ରିପାଠୀ
: ଡାକ୍ତର ଶରଦକୁମାର ଗନ୍ତାୟତ
: ଡାକ୍ତର ନିମାଇଁ ଚରଣ ପରିଜା
: ଡଃ ଜୟନ୍ତ କୁମାର ଦାସ
: ଶ୍ରୀ ଗୋବିନ୍ଦ ଚରଣ ପାଢ଼ୀ
: ଅଧ୍ୟାପିକା ଡଃ ପ୍ରଜ୍ଞା ରାୟ

: ଶ୍ରୀ ଅରୁଣ କୁମାର ପଣ୍ଡା
: ଶ୍ରୀ ରମେଶ ଚନ୍ଦ୍ର ଜେନା
: ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର
: ଶ୍ରୀମତୀ ବିଜୟିନୀ ଦାସ
: ଶ୍ରୀ ମନୋରଞ୍ଜନ ଦାସ
: ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତା
: ଶ୍ରୀ ରବିନାରାୟଣ ସେନାପତି
: ଶ୍ରୀ ଯତୀନ୍ଦ୍ର ମୋହନ ମହାନ୍ତି
: ଅଧ୍ୟାପିକା ଶ୍ରୀମତୀ ଅଗଷ୍ଟି କାନୁନ୍‌ଗୋ

## ସାରଳା ସାହିତ୍ୟ ସଂସଦର ସଭ୍ୟବୃନ୍ଦ

ଜଷ୍ଟିସ୍ ଶ୍ରୀ ରଙ୍ଗନାଥ ମିଶ୍ର
ଶ୍ରୀ ବସନ୍ତ କୁମାର ବିଶ୍ୱାଳ
ଡଃ ପ୍ରଫୁଲ୍ଲ କୁମାର ପତି
ଶ୍ରୀ ସହଦେବ ସାହୁ
ଶ୍ରୀ ଅଭୟାନନ୍ଦ ରଥ
ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ
ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ
ଶ୍ରୀ ଅଶୋକ କୁମାର ମହାପାତ୍ର
ଡଃ ବିଚିତ୍ରାନନ୍ଦ ମହାନ୍ତି
ଡଃ ହେମନ୍ତ କୁମାର ଦାସ
ଶ୍ରୀ ବିଜୟ ଚନ୍ଦ୍ର କାନୁନ୍‌ଗୋ
ଶ୍ରୀ ଦୁର୍ଗାପ୍ରସାଦ ସିଂହ
ଶ୍ରୀ ଗୋବିନ୍ଦ ଚନ୍ଦ୍ର ସେନାପତି
ଶ୍ରୀ ବସନ୍ତ ଚରଣ ସ୍ୱାଇଁ
ଶ୍ରୀ ଗିରୀଶ ଚନ୍ଦ୍ର ପାତ୍ର
ଡାକ୍ତର ନିରଞ୍ଜନ ତ୍ରିପାଠୀ
ଡାକ୍ତର ନିରଦକୁମାର ଗଚ୍ଛାୟତ

ଶ୍ରୀ ରବୀନ୍ଦ୍ର ନାଥ ମହାନ୍ତି
ଶ୍ରୀ ଗଗନ ଚନ୍ଦ୍ର ଦାସ
ଅଧ୍ୟାପିକା ଡଃ ପ୍ରତିଭା ରାୟ
ଶ୍ରୀମତୀ ବିଜୟିନୀ ଦାସ
ଶ୍ରୀ ପ୍ରଫୁଲ୍ଲ କୁମାର ତ୍ରିପାଠୀ
ଡଃ ଶାନ୍ତି ମହାପାତ୍ର (ବଳ)
ଶ୍ରୀ ନାରାୟଣ ମହାପାତ୍ର
ଡଃ ନଟବର ଶତପଥୀ
ଡାକ୍ତର ଗୁରୁପ୍ରସାଦ ମହାନ୍ତି
ଡଃ ଜୟନ୍ତ କୁମାର ଦାସ
ଅଧ୍ୟାପକ ଆଦିତ୍ୟ ପ୍ରତାପ ଧଳ
ଡଃ ବିଜୟାନନ୍ଦ ସିଂହ
ଇଞ୍ଜିନିୟର ଅଜିତ୍‌ମୋହନ ମୁଖାର୍ଜୀ
ପ୍ରଫେସର ଡଃ ଗଙ୍ଗାଧର ବଳ
ଅଧ୍ୟାପକ ଧ୍ରୁବ୍ ଖୁଣ୍ଟିଆ
ଇଞ୍ଜିନିୟର ପ୍ରଭାକର ସ୍ୱାଇଁ
ଶ୍ରୀ ବିଜୟ କୁମାର ପ୍ରଧାନ

ଡଃ ଶଙ୍କରଲାଲ ପୁରୋହିତ
ଶ୍ରୀ ରାଜେନ୍ଦ୍ର କିଶୋର ପଣ୍ଡା
ଶ୍ରୀ ମନୋରଞ୍ଜନ ଦାସ
ଶ୍ରୀ ରବି ନାରାୟଣ ସେନାପତି
ଶ୍ରୀ ନିହାର ରାୟ
ଶ୍ରୀ ବସନ୍ତ ଚରଣ ମହାନ୍ତି
ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି
ଶ୍ରୀ ନବୀନ କୁମାର ପରିଜା
ଶ୍ରୀ ଗୌରାଙ୍ଗଚରଣ କାନୁନ୍‌ଗୋ
ଡାକ୍ତର ନିମାଇଁ ଚରଣ ପରିଜା
ଶ୍ରୀ କିଶୋର କୁମାର ମହାନ୍ତି
ପ୍ରଫେସର ଡଃ ନିତ୍ୟାନନ୍ଦ ଶତପଥୀ
ଶ୍ରୀ ଯତୀନ୍ଦ୍ର ମୋହନ ମହାନ୍ତି
ଶ୍ରୀ ଇନ୍ଦୁଭୂଷଣ କର
ଶ୍ରୀ ଗିରିଜାଭୂଷଣ ପଟ୍ଟନାୟକ
ଶ୍ରୀ ନିତ୍ୟାନନ୍ଦ ଜେନା
ଡଃ ଅର୍ଚ୍ଚନା ନାୟକ
ଡଃ ମହେଶ୍ୱର ମହାନ୍ତି
ଡାକ୍ତର ପ୍ରହ୍ଲାଦ ଚରଣ ସ୍ୱାଇଁ
ଶ୍ରୀ ଅରୁଣ କୁମାର ପଣ୍ଡା
ଶ୍ରୀ ମହେନ୍ଦ୍ରନାଥ ପଟ୍ଟନାୟକ
ଡଃ ରବୀନ୍ଦ୍ରନାଥ ମିଶ୍ର
ଡାକ୍ତର ରମାକାନ୍ତ ନନ୍ଦ
ଶ୍ରୀ ରମେଶ ଚନ୍ଦ୍ର ଭୂୟାଁ
ଶ୍ରୀ ଦେବସ୍ନାନ ଦାସ
ପ୍ରଫେସର ଡଃ ବାସୁଦେବ ସାହୁ
ଶ୍ରୀ କିଶୋର ଚନ୍ଦ୍ର ମହାପାତ୍ର
ଡଃ ପ୍ରସନ୍ନ କୁମାର ସ୍ୱାଇଁ

ଶ୍ରୀ ଗଣେଶ ପ୍ରସାଦ ପରିଜା
ଶ୍ରୀ ରହାସ ରାୟ
ଶ୍ରୀ ଶିଶିର ଦାସ
ଶ୍ରୀ ବସନ୍ତ କୁମାର ରାୟ
ଶ୍ରୀ ମିହାର ରଞ୍ଜନ ମହାପାତ୍ର
ଡଃ ନିତ୍ୟାନନ୍ଦ ନାୟକ
ଇଞ୍ଜିନିୟର ସୁରେଶାନନ୍ଦ ମିଶ୍ର
ଇଞ୍ଜିନିୟର ପ୍ରେମାନନ୍ଦ ଷଣୋୟୀ
ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି
ଡାକ୍ତର ରାଧାଶ୍ୟାମ ଜେନା
ଡାକ୍ତର ବିଶ୍ୱଜିତ୍ ଦାସମହାପାତ୍ର
ଶ୍ରୀ ରାମଚନ୍ଦ୍ର ସ୍ୱାଇଁ
ଡଃ ଜ୍ଞାନଚନ୍ଦ୍ର କର
ଶ୍ରୀ ରବିନାରାୟଣ ସେନାପତି
ଶ୍ରୀ ଜୟରାମ ମହାପାତ୍ର
ଡଃ ବିଜୟ କୁମାର ଶତପଥୀ
ଡଃ ଖଗେନ୍ଦ୍ରନାଥ ମଲ୍ଲିକ
ଶ୍ରୀ ଶାରଦା ପ୍ରସନ୍ନ ନାୟକ
ଶ୍ରୀ ଭଗିରଥି ଜେନା
ଅଧ୍ୟାପିକା ଶ୍ରୀମତୀ ପ୍ରତିଭା ମହାପାତ୍ର
ଇଞ୍ଜିନିୟର ନିତ୍ୟାନନ୍ଦ ରାଉତ
ଶ୍ରୀମତୀ ଉର୍ମିଳା କାନୁନ୍‌ଗୋ
ଅଧ୍ୟାପକ କୃଷ୍ଣଚରଣ ମହାନ୍ତି
ଅଧ୍ୟାପିକା ସୁଲୋଚନା ଦାସ
ଡାକ୍ତର ବସନ୍ତ କୁମାର ଜେନା
ଶ୍ରୀମତୀ ଜ୍ୟୋତ୍ସ୍ନା ପରିଜା
ଶ୍ରୀ ରଘୁନାଥ ବେହେରା
ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକ

ଶ୍ରୀ ଅଲେଖଚନ୍ଦ୍ର ମଲ୍ଲିକ
ଶ୍ରୀ ସୁଶାନ୍ତ କୁମାର ମହାପାତ୍ର
ଶ୍ରୀ ଶରତ୍‌ଚନ୍ଦ୍ର ମହାପାତ୍ର
ଶ୍ରୀ ରମେଶଚନ୍ଦ୍ର ଜେନା
ଶ୍ରୀ ନବୀନ୍ଦ୍ରନାଥ ଦାଶ
ଶ୍ରୀ ରଣଧୀର ଦାସ
ଡଃ ରେଖା ମହାନ୍ତି
ଶ୍ରୀ ସଞ୍ଜୀବଚନ୍ଦ୍ର ହୋତା
ଇଞ୍ଜିନିୟର ମଧୁସୂଦନ ସାମନ୍ତରାୟ
ଶ୍ରୀମତୀ ବୀଣା ମହାପାତ୍ର
ଶ୍ରୀ ରମାକାନ୍ତ ପ୍ରଧାନ
ଶ୍ରୀମତୀ ଅଗସ୍ତି କାନୁନ୍‌ଗୋ
ଶ୍ରୀ ଅମରେଶ ପଟ୍ଟନାୟକ
ଶ୍ରୀ ଅମିତାଭ ସ୍ୱାଇଁ

ଶ୍ରୀମତୀ ସବିତା ପ୍ରଧାନ
ଶ୍ରୀ ନିଶାକର ଦାସ
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଶ୍ରୀ କିଶୋର ମୋହନ ପରିଡ଼ା
ଶ୍ରୀ ଦୁର୍ଗାଚରଣ କୁଅଁର
ଶ୍ରୀ ସୁରେଶଚନ୍ଦ୍ର କର
ଶ୍ରୀ ଚନ୍ଦ୍ରଶେଖର ପ୍ରଧାନ
ଶ୍ରୀ ଅର୍ଜୁନ ଦାଶ
ଅଧ୍ୟାପକ ନିର୍ମଳଚନ୍ଦ୍ର ପଣ୍ଡା
ଶ୍ରୀ ନିତ୍ୟାନନ୍ଦ ମିଶ୍ର
ଅଧ୍ୟାପକ କ୍ଷୀରୋଦ କୁମାର ସାହୁ
ଡଃ ରାଜେନ୍ଦ୍ର ପ୍ରସାଦ ମହାନ୍ତି
ଡଃ ଶରତ୍ କୁମାର ମହାନ୍ତି
ଡଃ ମନୋରଞ୍ଜନ ପ୍ରଧାନ

